

**ଭାରତର ମାନ୍ୟବର ରାଷ୍ଟ୍ରପତି ଶ୍ରୀମତୀ ଦ୍ରୌପଦୀ ମୁର୍ମୁ ରାଜଭବନଠାରେ ମାନ୍ୟବର ରାଜ୍ୟପାଳ ପ୍ରଫେସର ଗଣେଶୀ ଲାଲ ଏବଂ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କ ଉପସ୍ଥିତିରେ ନୂତନ ଅଭିଷେକ ହଲ୍ ଉଦ୍‌ଘାଟନ କରୁଛନ୍ତି ।**





**ଭୁବନେଶ୍ୱର ବିଦ୍ୟା ବିହାରଠାରେ ରମାଦେବୀ ମହିଳା ବିଶ୍ୱବିଦ୍ୟାଳୟର ଦ୍ୱିତୀୟ ସମାବର୍ତ୍ତନ ଉତ୍ସବରେ ଭାରତର ମାନ୍ୟବର ରାଷ୍ଟ୍ରପତି ଶ୍ରୀମତୀ ଦ୍ରୌପଦୀ ମୁର୍ମୁ, ମାନ୍ୟବର ରାଜ୍ୟପାଳ ପ୍ରଫେସର ଗଣେଶୀ ଲାଲ, ମାନ୍ୟବର କେନ୍ଦ୍ରମନ୍ତ୍ରୀ ଶ୍ରୀ ଧର୍ମେନ୍ଦ୍ର ପ୍ରଧାନ, ଉଚ୍ଚଶିକ୍ଷା ମନ୍ତ୍ରୀ ଶ୍ରୀ ରୋହିତ ପୂଜାରୀ, ବିଜ୍ଞାନ ଓ କାରିଗରୀ ମନ୍ତ୍ରୀ ଶ୍ରୀ ଅଶୋକ ଚନ୍ଦ୍ର ପଣ୍ଡା ଉପସ୍ଥିତ ଅଛନ୍ତି ।**

# ଉତ୍କଳ ପ୍ରସଙ୍ଗ

**The Utkal Prasanga**

**February-March- 2023**

୭୯ ଭାଗ    ୭-୮ମ ସଂଖ୍ୟା    ମାଘ-ଚୈତ୍ର    ଫେବୃଆରୀ-ମାର୍ଚ୍ଚ - ୨୦୨୩



---



ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗଦ୍ୱାରା ପ୍ରକାଶିତ ଏବଂ
ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ-୧୦ରେ ମୁଦ୍ରିତ ।

ଠିକଣା : 'ଉତ୍କଳ ପ୍ରସଙ୍ଗ', ରାଜ୍ୟ ସୂଚନା ଓ ଲୋକ ସମ୍ପର୍କ ବିଭାଗ, ଲୋକ ସମ୍ପର୍କ ଭବନ, ଭୁବନେଶ୍ୱର-୭୫୧୦୦୧

ଇ-ମେଲ୍ : uporipr@gmail.com, ୱେବ୍‌ସାଇଟ୍ : https://odisha.gov.in
ଫୋନ୍ : ୦୬୭୪-୨୫୩୦୨୧୧

ପ୍ରତିଖଣ୍ଡ : ଟ. ୫.୦୦

# ସୂଚୀ

## ଫେବୃଆରୀ- ମାର୍ଚ୍ଚ - ୨୦୨୩

# ଶ୍ରଦ୍ଧାଞ୍ଜଳି



ଉତ୍କଳଗୌରବ ମଧୁସୂଦନ ଦାସ
(ତା.୨୮.୦୪.୧୮୪୮ - ତା. ୦୪.୦୨.୧୯୩୪)



ଯୋଗଜନ୍ମା ଆଚାର୍ଯ୍ୟ ହରିହର
(ତା.୨୭.୦୨.୧୮୭୯ - ତା.୨୧.୦୨.୧୯୭୧)





ଶହୀଦ ଲକ୍ଷ୍ମଣ ନାଏକ
(ତା.୨୨.୧୧.୧୮୯୯ - ତା.୨୯.୦୩.୧୯୪୩)



# ଶ୍ରଦ୍ଧାଞ୍ଜଳି



ମହାନ୍ ଜନନାୟକ ବିଜୁ ପଟ୍ଟନାୟକ
(ତା.୦୫.୦୩.୧୯୧୬ - ତା.୧୭.୦୪.୧୯୯୭)

# ' ଶିକ୍ଷା ଆମ ଭିତରେ ଥିବା ସମ୍ଭାବନାକୁ ବୃଦ୍ଧି କରିଥାଏ ' ।

– ମୁଖ୍ୟମନ୍ତ୍ରୀ



ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଜୟପୁରର ବିକ୍ରମଦେବ ସ୍ୱୟଂଶାସିତ କଲେଜର ପ୍ଲାଟିନମ ଜୁବୁଲି ଉତ୍ସବରେ ଯୋଗ ଦେଇ ବିକ୍ରମଦେବ କଲେଜକୁ ବିଶ୍ୱବିଦ୍ୟାଳୟ ମାନ୍ୟତା ପ୍ରଦାନ କରାଗଲା ବୋଲି ଘୋଷଣା କରିଥିଲେ । ମୁଖ୍ୟମନ୍ତ୍ରୀ ତାଙ୍କ ଉଦ୍‌ବୋଧନରେ ଛାତ୍ରଛାତ୍ରୀମାନଙ୍କୁ ଏ ଘୋଷଣା ସଂପର୍କରେ ଉଲ୍ଲେଖ କରି କହିଥିଲେ, 'ଆପଣମାନେ ଖୁସି ତ?' ଛାତ୍ରଛାତ୍ରୀମାନେ ମୁଖ୍ୟମନ୍ତ୍ରୀଙ୍କ ଏହି ଘୋଷଣାକୁ ବିପୁଳ ଉତ୍ସାହ, ଆନନ୍ଦ, ଉଲ୍ଲାସ ଓ କରତାଳି ମଧ୍ୟରେ ସ୍ୱାଗତ କରିଥିଲେ । ଏହି ଘୋଷଣା ପାଇଁ ଛାତ୍ରଛାତ୍ରୀମାନଙ୍କ ମଧ୍ୟରେ ଖୁସିର ଲହରୀ ଖେଳିଯାଇଛି ।

- ବିକ୍ରମଦେବ କଲେଜର ପ୍ଲାଟିନମ ଜୁବୁଲି ଉତ୍ସବ
- ଆନନ୍ଦ, ଉଲ୍ଲାସ ଓ କରତାଳି ମଧ୍ୟରେ ବିଶ୍ୱବିଦ୍ୟାଳୟ ଘୋଷଣାକୁ ଛାତ୍ରଛାତ୍ରୀଙ୍କ ସ୍ୱାଗତ
- କଲେଜରେ ଏକ ଅତ୍ୟାଧୁନିକ ଅଡିଟୋରିଅମ ନିର୍ମାଣ ପାଇଁ ମୁଖ୍ୟମନ୍ତ୍ରୀଙ୍କ ଘୋଷଣା
- ୧୦୦୦ ଆସନ ବିଶିଷ୍ଟ ଅଡିଟୋରିଅମ ପାଇଁ ୮ କୋଟି ଟଙ୍କା ଖର୍ଚ୍ଚ କରାଯିବ
- କୋରାପୁଟ ଜିଲ୍ଲା ପାଇଁ ୧୬୦୦ କୋଟି ଟଙ୍କାର ପ୍ରକଳ୍ପର ଶୁଭାରମ୍ଭ
- ୨୦୦ କୋଟି ଟଙ୍କାର ପ୍ରକଳ୍ପ ଉଦ୍‌ଘାଟିତ, ୧୪୦୦ କୋଟି ଟଙ୍କାର ପ୍ରକଳ୍ପ ପାଇଁ ଭିତ୍ତି ପ୍ରଦାନ
- ସମାଜ ସହ ଯୋଡି ହୋଇ ରହିବାକୁ ଯୁବସମାଜକୁ ମୁଖ୍ୟମନ୍ତ୍ରୀଙ୍କ ପରାମର୍ଶ

ଏହି ଅବସରରେ ମୁଖ୍ୟମନ୍ତ୍ରୀ ବିକ୍ରମଦେବ ବିଶ୍ୱବିଦ୍ୟାଳୟରେ ଏକ ଅତ୍ୟାଧୁନିକ ଅଡିଟୋରିଅମ ନିର୍ମାଣ କରାଯିବ ବୋଲି ଘୋଷଣା କରିଥିଲେ । ଏ ସଂପର୍କରେ ଅଧିକ ସୂଚନା ଦେଇ ମୁଖ୍ୟମନ୍ତ୍ରୀଙ୍କ ସଚିବ (୫-ଟି) ଶ୍ରୀ ଭି.କେ. ପାଣ୍ଡିଆନ କହିଥିଲେ ଯେ ଏହି ଅଡିଟୋରିଅମ ୧୦୦୦ ଆସନ ବିଶିଷ୍ଟ ହେବ ଏବଂ ଏଥିପାଇଁ ୮ କୋଟି ଟଙ୍କା ବିନିଯୋଗ କରାଯିବ ।

ଏହି ଅବସରରେ ମୁଖ୍ୟମନ୍ତ୍ରୀ କହିଥିଲେ ଯେ ଶିକ୍ଷା ଆମ ଭିତରେ ଥିବା ସଂଭାବନାକୁ ବୃଦ୍ଧି କରିଥାଏ । ଯୁବସମାଜ ଉପରେ ତାଙ୍କର ପୂରା ଆସ୍ଥା ରହିଛି ବୋଲି ପ୍ରକାଶ କରି ମୁଖ୍ୟମନ୍ତ୍ରୀ କହିଥିଲେ ଯେ ଆପଣମାନେ ଭଲ ପାଠ ପଢନ୍ତୁ ଏବଂ ସମାଜ ସହିତ ଯୋଡି ହୋଇ ରୁହନ୍ତୁ । ନିଜର ତଥା ନିଜ ପରିବାରର ଏବଂ ସାରା ଓଡିଶାର ସ୍ୱପ୍ନ ପୂରଣ କରିବା ପାଇଁ ଉଦ୍ୟମ ଜାରି ରଖିବାକୁ ସେ ପରାମର୍ଶ ଦେଇଥିଲେ ।

କୋରାପୁଟ ତାଙ୍କ ପାଇଁ ସବୁବେଳେ ସ୍ୱତନ୍ତ୍ର ବୋଲି ପ୍ରକାଶ କରି ମୁଖ୍ୟମନ୍ତ୍ରୀ କହିଥିଲେ ଯେ ଭିତ୍ତିଭୂମିର ବିକାଶ ଜରିଆରେ କୋରାପୁଟର ବିକାଶ ପାଇଁ କାମ କରାଯାଉଛି । ଭିତ୍ତିଭୂମିର ଗୁରୁତ୍ୱ ସଂପର୍କରେ ଉଦାହରଣ ଦେଇ ସେ କହିଲେ ଯେ ଗୋଟିଏ ଗୁରୁପ୍ରିୟା ସେତୁ ଆଜି ସ୍ୱାଭିମାନ ଅଞ୍ଚଳରେ ବିକାଶର ନୂଆ ଧାରା ଆଣିପାରିଛି ।

ଭିତ୍ତିଭୂମି ହିଁ ବିକାଶର ଆଧାର ବୋଲି ସେ ମତବ୍ୟକ୍ତ କରି ସେ କୋରାପୁଟ ପାଇଁ ୧୫୯୬ କୋଟି ଟଙ୍କାର ପ୍ରକଳ୍ପର ଶୁଭାରମ୍ଭ କରିଥିଲେ । ଏଥିରେ ୨୦୭.୮୦ କୋଟି ଟଙ୍କାର ପ୍ରକଳ୍ପ ଉଦ୍‌ଘାଟିତ ହୋଇଥିବା ବେଳେ ୧୩୭୮.୪୦ କୋଟି ଟଙ୍କାର ପ୍ରକଳ୍ପ ପାଇଁ ଭିତ୍ତିପ୍ରସ୍ତର ରଖାଯାଇଥିଲା । ସେତୁ, ସଡକ, ପାନୀୟ ଜଳ, ଜଳସେଚନ, ବିଦ୍ୟୁତ୍‌କରଣ ଓ ପର୍ଯ୍ୟଟନ ଆଦି ପ୍ରକଳ୍ପ କାମ କରାଯାଇଛି ।

ମିଶନ ଶକ୍ତି କାର୍ଯ୍ୟକ୍ରମ ଉପରେ ଆଲୋକପାତ କରି ସେ କହିଥିଲେ ଯେ ମା' ମାନେ ଭଲ କାମ କରି ସାରା ରାଜ୍ୟ ପାଇଁ ସୁନାମ ଆଣିଛନ୍ତି । ସ୍ୱାଧୀନତାର ୭୫ ବର୍ଷ ଅବସରରେ ଜାତୀୟ ପତାକା ପ୍ରସ୍ତୁତ କରି ସେମାନେ ନିଜର ଦକ୍ଷତା ଦେଖାଇଛନ୍ତି ଏବଂ ସେମାନଙ୍କ ଉପରେ ଥିବା ଆମର ବିଶ୍ୱାସକୁ ଆହୁରି ମଜବୁତ କରିଛନ୍ତି । ମା'ମାନଙ୍କୁ ଉଦ୍ୟୋଗୀ ଭାବରେ ଦେଖିବାକୁ ଚାହେଁ ବୋଲି ପ୍ରକାଶ କରି ମୁଖ୍ୟମନ୍ତ୍ରୀ କହିଥିଲେ ଯେ ସବୁ ସ୍ୱୟଂ ସହାୟକ ଗୋଷ୍ଠୀମାନଙ୍କୁ କ୍ଷୁଦ୍ର ଓ ମଧ୍ୟମ ଶିଳ୍ପାନୁଷ୍ଠାନରେ ପରିଣତ କରିବା ପାଇଁ କାମ ଆରମ୍ଭ ହୋଇଛି ଏବଂ ଏଥିପାଇଁ ୫ ଲକ୍ଷ ଟଙ୍କା ପର୍ଯ୍ୟନ୍ତ ଋଣ ବିନା ସୁଧରେ ଦିଆଯାଉଛି । ଆଗାମୀ ୫ ବର୍ଷରେ ୫୦ ହଜାର କୋଟି ଟଙ୍କା ଋଣ ଦିଆଯିବ ବୋଲି ସେ କହିଥିଲେ । ମା'ମାନଙ୍କ ପାଇଁ ବିଜୁ ସ୍ୱାସ୍ଥ୍ୟ କଲ୍ୟାଣ ଯୋଜନା ଅଧୀନରେ ୧୦ ଲକ୍ଷ ଟଙ୍କା ପର୍ଯ୍ୟନ୍ତ ଚିକିତ୍ସା ସୁବିଧା ଦିଆଯାଉଛି ବୋଲି ସେ କହିଥିଲେ ।

ଏହି ଅବସରରେ ଜିଲ୍ଲାର ୧୨୩୫ ମିଶନ ଶକ୍ତି ଗୋଷ୍ଠୀକୁ ୫୦ କୋଟି ଟଙ୍କାର ସୁଧ ବିହୀନ ଋଣ ପ୍ରଦାନ କରାଯାଇଥିଲା । ମୁଖ୍ୟମନ୍ତ୍ରୀ କୋରାପୁଟ ପର୍ଯ୍ୟଟନ ଉପରେ ଆଧାରିତ ଏକ ସ୍ୱତନ୍ତ୍ର ପୋଷ୍ଟାଲ କଭର ଉନ୍ମୋଚିତ କରିଥିଲେ ।

ଏହି କାର୍ଯ୍ୟକ୍ରମରେ ଅନୁସୂଚିତ ଜାତି ଓ ଜନଜାତି ବିକାଶ ମନ୍ତ୍ରୀ ଶ୍ରୀ ଜଗନ୍ନାଥ ସାରକା, ଉଚ୍ଚଶିକ୍ଷା ମନ୍ତ୍ରୀ ଶ୍ରୀ ରୋହିତ ପୂଜାରୀ, ଜୟପୁର ବିଧାୟକ ଶ୍ରୀ ତାରାପ୍ରସାଦ ବାହିନୀପତି, କୋରାପୁଟ ବିଧାୟକ ଶ୍ରୀ ରଘୁରାମ ପେଡାଲ, କୋରାପୁଟ ଜିଲ୍ଲା ପରିଷଦ ଅଧ୍ୟକ୍ଷା ସସ୍ମିତା ମେଲ୍ଲେକା ଏବଂ କୋରାପୁଟ ସ୍ୱତନ୍ତ୍ର ବିକାଶ ପରିଷଦର ଅଧ୍ୟକ୍ଷ ଶ୍ରୀ ଚନ୍ଦ୍ରଶେଖର ମାଝୀ ପ୍ରମୁଖ ସେମାନଙ୍କ ବକ୍ତବ୍ୟ ରଖି ମୁଖ୍ୟମନ୍ତ୍ରୀଙ୍କ ବିଶ୍ୱବିଦ୍ୟାଳୟ ଘୋଷଣାକୁ ସ୍ୱାଗତ କରିଥିଲେ ଏବଂ ଏହାଦ୍ୱାରା କୋରାପୁଟ ଜିଲ୍ଲା ଓ ସମଗ୍ର ଦକ୍ଷିଣ ଓଡିଶାରେ ଉଚ୍ଚଶିକ୍ଷା କ୍ଷେତ୍ରରେ ବିପୁଳ ସୁଯୋଗ ସୃଷ୍ଟି ହେବ ବୋଲି ମତବ୍ୟକ୍ତ କରିଥିଲେ ।



# 'ଟେକ୍ନୋଲୋଜି ହେଉଛି ବିକାଶର ଆଧାର' ।

**- ମୁଖ୍ୟମନ୍ତ୍ରୀ**



ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ସ୍ଥାନୀୟ ବରମୁଣ୍ଡା ପଡିଆଠାରେ ରାଜ୍ୟସ୍ତରୀୟ ବାର୍ଷିକ କୃଷି ମହୋତ୍ସବ 'କୃଷି ଓଡିଶା' ଉଦ୍‌ଘାଟନ କରି ଉପସ୍ଥିତ କୃଷକମାନଙ୍କୁ ମୁଖ୍ୟମନ୍ତ୍ରୀ ଫାର୍ମ ମେକାନାଇଜେସନ ଓ ଫସଲ ବିବିଧତା ଉପରେ ଗୁରୁତ୍ୱ ଆରୋପ କରି ଚାଷୀମାନଙ୍କୁ ନୂଆ ନୂଆ ଟେକ୍ନୋଲୋଜିର ବ୍ୟବହାର କରିବା ସହିତ ଅଧିକ ପରିମାଣରେ ଅଣଧାନ ଅର୍ଥକରୀ ଫସଲ ଚାଷ କରିବା ପାଇଁ ପରାମର୍ଶ ଦେଇଛନ୍ତି ।

ମୁଖ୍ୟମନ୍ତ୍ରୀ କହିଛନ୍ତି ଯେ ଟେକ୍ନୋଲୋଜି ହେଉଛି ବିକାଶର ଆଧାର । କୃଷି କ୍ଷେତ୍ରରେ ମଧ୍ୟ ଟେକ୍ନୋଲୋଜିର ବହୁତ ଆବଶ୍ୟକତା ରହିଛି । ଏ ବର୍ଷ ମେଳାରେ କୃଷି କ୍ଷେତ୍ରରେ ନୂଆ ଟେକ୍ନୋଲୋଜିର ବ୍ୟବହାର ଉପରେ ଗୁରୁତ୍ୱ ଦିଆଯାଇଥିବାରୁ ସେ ଖୁସି ପ୍ରକାଶ କରିଥିଲେ ।

- **କୃଷି ଓଡିଶା-୨୦୨୩ ଉଦ୍‌ଘାଟିତ**
- **କୃଷି ଯାନ୍ତ୍ରିକୀକରଣ, ଚାଷୀମାନଙ୍କ ରୋଜଗାର ବୃଦ୍ଧି ଉପରେ ମୁଖ୍ୟମନ୍ତ୍ରୀଙ୍କ ଗୁରୁତ୍ୱାରୋପ**
- **ନୂଆ ନୂଆ ଟେକ୍ନୋଲୋଜିର ବ୍ୟବହାର କରିବାକୁ ଚାଷୀମାନଙ୍କୁ ମୁଖ୍ୟମନ୍ତ୍ରୀଙ୍କ ପରାମର୍ଶ**

ଚାଷୀମାନେ ସମସ୍ତେ ନୂଆ ନୂଆ ଟେକ୍ନୋଲୋଜି ବିଷୟରେ ଜାଣିବେ, ବ୍ୟବହାର କରିବେ ଏବଂ କୃଷି କ୍ଷେତ୍ରରେ ସଫଳ ହୋଇ ନିଜର ଓ ନିଜ ରାଜ୍ୟର ଉନ୍ନତିରେ ଗୁରୁତ୍ୱପୂର୍ଣ୍ଣ ଯୋଗଦାନ ରଖିବେ ବୋଲି ମୁଖ୍ୟମନ୍ତ୍ରୀ ଆଶାପ୍ରକାଶ କରିଥିଲେ ।

ମୁଖ୍ୟମନ୍ତ୍ରୀ ପୁଣି କହିଥିଲେ ଯେ କୃଷି ଓ କୃଷକମାନଙ୍କ ଉନ୍ନତି ମୋ ସରକାରର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟକ୍ରମ । କୃଷି କ୍ଷେତ୍ରରେ ଓଡିଶା ଆଜି ଏକ ଆଗୁଆ ରାଜ୍ୟ ହୋଇପାରିଛି । ଖାଦ୍ୟରେ ଅଭାବ ଥିବା ଏକ ରାଜ୍ୟରୁ ଆଜି ଆମେ ଖାଦ୍ୟଶସ୍ୟରେ ଏକ ବଳକା ରାଜ୍ୟ ହୋଇ ସାରା ଦେଶର ସାଧାରଣ ବଣ୍ଟନ ବ୍ୟବସ୍ଥାକୁ ଚାଉଳ ଯୋଗାଇ ପାରୁଛୁ ବୋଲି ସେ କହିଥିଲେ । 'କାଳିଆ' ଯୋଜନା ଦ୍ୱାରା ଚାଷୀମାନଙ୍କୁ ରୋଜଗାର ସୁରକ୍ଷା ମିଳିପାରିଛି ବୋଲି ପ୍ରକାଶ କରି ସେ କହିଥିଲେ ଯେ ଫାର୍ମ ମେକାନାଇଜେସନ ଉପରେ ଗୁରୁତ୍ୱ

ଦିଆଯାଇ ଫସଲ ଉତ୍ପାଦକତା ବଢାଇବା ପାଇଁ ଉଦ୍ୟମ ଜାରି ରହିଛି । ପଣସ ମିଶନ, ଛତୁ ମିଶନ ଆଦି ସ୍ୱତନ୍ତ୍ର ମିଶନ ଜରିଆରେ ଚାଷୀଙ୍କ ରୋଜଗାର ସହିତ ପୁଷ୍ଟି ନିରାପତ୍ତା ପାଇଁ ମଧ୍ୟ ଗୁରୁତ୍ୱ ଦିଆଯାଉଛି । ଆମର ମିଲେଟ ମିଶନ ଆଜି ସାରା ଦେଶ ଓ ବିଶ୍ୱର ଦୃଷ୍ଟି ଆକର୍ଷଣ କରିପାରିଛି ବୋଲି ମତଦେଇ ସେ କହିଥିଲେ ଯେ ଏହା ଆମର ମିଶନ ଶକ୍ତି ମା'ମାନଙ୍କର ରୋଜଗାର ବଢାଇବାରେ ମଧ୍ୟ ସହାୟକ ହୋଇପାରିଛି ।

'କୃଷି ଓଡିଶା'ରେ ଉପସ୍ଥିତ ଥିବା WFP, IFAD ଏବଂ FAO ପରି ସଂସ୍ଥାର ପ୍ରତିନିଧିମାନଙ୍କୁ ସ୍ୱାଗତ କରି ମୁଖ୍ୟମନ୍ତ୍ରୀ କୃଷି କ୍ଷେତ୍ରରେ ସେମାନଙ୍କ ନିରନ୍ତର ସହଯୋଗ ପାଇଁ ଧନ୍ୟବାଦ ଅର୍ପଣ କରିଥିଲେ ।

ଏହି ଅବସରରେ କୃଷିମନ୍ତ୍ରୀ ଶ୍ରୀ ରଣେନ୍ଦ୍ର ପ୍ରତାପ ସ୍ୱାଇଁ ନିଜର ଅଭିଭାଷଣ ରଖି କହିଥିଲେ ଯେ ମୁଖ୍ୟମନ୍ତ୍ରୀଙ୍କ ଦିଗ୍‌ଦର୍ଶନରେ କୃଷି ବିଭାଗ ଅନେକ ଯୁଗାନ୍ତକାରୀ ପଦକ୍ଷେପ ନେଇଛି । କୃଷକମାନଙ୍କ ଆୟ ବୃଦ୍ଧିରେ କୃଷି ଆନୁଷଙ୍ଗିକ କାର୍ଯ୍ୟକ୍ରମ ଉପରେ ଗୁରୁତ୍ୱ ଦିଆଯାଇ ଗତ ଦୁଇ ଦଶନ୍ଧି ମଧ୍ୟରେ ଓଡିଶା ମାଛ, ମାଂସ, ଅଣ୍ଡା ଓ ଦୁଗ୍ଧ ଉତ୍ପାଦନରେ ସ୍ୱାବଲମ୍ବୀ ହୋଇପାରିବା ସହିତ ଚାଷୀମାନଙ୍କ ରୋଜଗାର ମଧ୍ୟ ବୃଦ୍ଧି କରାଯାଇପାରିଛି ବୋଲି ସେ କହିଥିଲେ ।

ଓଡିଶା ଦକ୍ଷତା ବିକାଶ କର୍ତ୍ତୃପକ୍ଷର ଅଧ୍ୟକ୍ଷ ଶ୍ରୀ ସୁବ୍ରତୋ ବାଗ୍ଚୀ, ଅତିରିକ୍ତ ମୁଖ୍ୟ ଶାସନ ସଚିବ ଶ୍ରୀମତୀ ଅନୁ ଗର୍ଗ ପ୍ରମୁଖ ବିଭାଗୀୟ କାର୍ଯ୍ୟକ୍ରମ ଉପରେ ଆଲୋକପାତ କରିଥିଲେ । କୃଷି ଓ କୃଷକ ସଶକ୍ତିକରଣ ବିକାଶ ପ୍ରମୁଖ ସଚିବ ଡଃ ଅରବିନ୍ଦ ପାଢୀ ସ୍ୱାଗତ ଭାଷଣ ଦେଇଥିଲେ ଏବଂ ନିର୍ଦ୍ଦେଶକ ଶ୍ରୀ ପ୍ରେମଚନ୍ଦ୍ର ଚୌଧୁରୀ ଧନ୍ୟବାଦ ଅର୍ପଣ କରିଥିଲେ ।



# ପଞ୍ଚାୟତିରାଜ ଏବଂ ପାନୀୟ ଜଳ ବିଭାଗର ବିଗତ ୧୦ ବର୍ଷର ସଫଳତା

ଅର୍ଥନୈତିକ ପ୍ରଗତି ସହ ସାମାଜିକ ନ୍ୟାୟ ପ୍ରତିଷ୍ଠା ହେଉଛି ବିକାଶର ମୂଳ ଆଧାର । ପଞ୍ଚାୟତିରାଜ ଓ ପାନୀୟଜଳ ବିଭାଗ ଏହି ଆଭିମୁଖ୍ୟକୁ ସାକାର କରିବା ଦିଗରେ ଆନ୍ତରିକ ପ୍ରଚେଷ୍ଟା କରିଆସଛି । ଦୀର୍ଘସ୍ଥାୟୀ ସୁରକ୍ଷିତ ଜୀବିକା, ଆୟ ବୃଦ୍ଧିକାରୀ କର୍ମନିଯୁକ୍ତି ସୁଯୋଗ ସୃଷ୍ଟି, ସଶକ୍ତ ତୃଣମୂଳ ଶାସନ ବ୍ୟବସ୍ଥା ଓ ମହିଳାମାନଙ୍କର ସକ୍ରିୟ ଅଂଶଗ୍ରହଣ ଜରିଆରେ ଲୋକମାନଙ୍କର ମୁଣ୍ଡପିଛା ଆୟ ଓ ସେମାନଙ୍କର ଜୀବନଧାରଣର ମାନ ବୃଦ୍ଧି କରିବା ସହ ସମାଜର ଅବହେଳିତ ତଥା ଦୁର୍ବଳ ଶ୍ରେଣୀର ଲୋକମାନଙ୍କର ଆବଶ୍ୟକତାକୁ ପୂରଣ କରିବା ତଥା ଦୀର୍ଘସ୍ଥାୟୀ, କ୍ଷିପ୍ରତର ଓ ସମନ୍ୱିତ ବିକାଶ ପଞ୍ଚାୟତିରାଜର ମୂଳ ଲକ୍ଷ୍ୟ । ଗୋଷ୍ଠୀ ଉନ୍ନୟନ ହେଉଛି ଏକ ପ୍ରକ୍ରିୟା ଯେଉଁଥିରେ ଲୋକମାନଙ୍କର ସାମାଜିକ ଓ ଅର୍ଥନୈତିକ, ମନସ୍ତାତ୍ତ୍ୱିକ ଅଭିବୃଦ୍ଧି ତଥା କଲ୍ୟାଣ



ନିମନ୍ତେ ସେମାନଙ୍କ ସକ୍ରିୟ ଭାଗିଦାରୀକୁ ଗୁରୁତ୍ୱ ପ୍ରଦାନ କରାଯାଇଥାଏ । ଗ୍ରାମାଞ୍ଚଳ ଲୋକଙ୍କ ଆୟବୃଦ୍ଧି କର୍ମନିଯୁକ୍ତି ସୃଷ୍ଟି ଓ ବିଭିନ୍ନ ସମ୍ବଳର ସୁବିନିଯୋଗକୁ ସୁନିଶ୍ଚିତ ହୋଇ ସେମାନଙ୍କୁ ଆତ୍ମନିର୍ଭରଶୀଳ କରାଇବା ହେଉଛି ସୁଶାସନର ଆଭିମୁଖ୍ୟ । ପଞ୍ଚାୟତିରାଜ ଅନୁଷ୍ଠାନ ସମ୍ବିଧାନର ପ୍ରମୁଖ ଅଙ୍ଗଭାବେ ଗ୍ରାମୀଣ ବିଭାଗ ସଂପର୍କିତ ବିଭିନ୍ନ ଯୋଜନାର କାର୍ଯ୍ୟାନ୍ୱୟକ ତଥା ତଦାରଖରେ ସ୍ଥାନୀୟ ଲୋମାନଙ୍କର ସଂପୃକ୍ତି କେବଳ ସୁନିଶ୍ଚିତ କରେନାହିଁ ବରଂ ସମାଜରେ ଥିବା ଅବହେଳିତ ତଥା ଦୁର୍ବଳ ଶ୍ରେଣୀର ଲୋକମାନଙ୍କର ସାମାଜିକ ଏବଂ ଅର୍ଥନୈତିକ ସ୍ଥିତିର ବିକାଶ କରିବା ସହିତ ସେମାନଙ୍କୁ ସଶକ୍ତ କରିବା ଦିଗରେ ଯଥେଷ୍ଟ ସହାୟକ ହୋଇଥାଏ । ଗ୍ରାମାଞ୍ଚଳରେ ଥିବା ଦାରିଦ୍ର୍ୟ ହ୍ରାସ କରିବା ସହ ତୃଣମୂଳ ସ୍ତରରେ ଯୋଜନା ପ୍ରସ୍ତୁତିରେ ସକ୍ରିୟ ଅଂଶଗ୍ରହଣ କରାଇ ସରକାରଙ୍କ ଦ୍ୱାରା କାର୍ଯ୍ୟକାରୀ ହେଉଥିବା ବିଭିନ୍ନ ଦାରିଦ୍ର୍ୟ ଦୂରୀକରଣ କାର୍ଯ୍ୟକ୍ରମ ମାଧ୍ୟମରେ ଲୋକମାନଙ୍କର ଅର୍ଥନୈତିକ ସାମାଜିକ ଓ ସାମଗ୍ରିକ ବିକାଶ କରିବାରେ ଏହି ବିଭାଗର ପ୍ରମୁଖ ଭୂମିକା ରହିଛି । ଗ୍ରାମାଞ୍ଚଳ ଗରିବ ଲୋକଙ୍କ ଆୟର ସ୍ତରକୁ ବୃଦ୍ଧି କରାଯାଇ ସେମାନଙ୍କ ପରିବାରର ଜୀବନଧାରଣ ନିମନ୍ତେ ସର୍ବନିମ୍ନ ଆୟର ବୃଦ୍ଧି କରାଇବା ହେଉଛି ଏହାର ପ୍ରମୁଖ ଉଦ୍ଦେଶ୍ୟ । ଏଥିନିମନ୍ତେ ସେମାନଙ୍କ ପାଇଁ

ଆନୁଷ୍ଠାନିକ ଆର୍ଥିକ ସହାୟତା ମାଧ୍ୟମରେ ଅତିରିକ୍ତ ନିଯୁକ୍ତିର ସୁଯୋଗ କିମ୍ବା ଆୟ ବୃଦ୍ଧିକାରୀ ସଂପତ୍ତି ସୃଷ୍ଟି କରାଯାଇଛି ।

**ମହାତ୍ମା ଗାନ୍ଧୀ ଗ୍ରାମୀଣ ନିଶ୍ଚିତ କର୍ମନିଯୁକ୍ତି ଯୋଜନା : (ଏମ୍.ଜି.ଏନ୍.ଆର୍.ଇ.ଜି.ଏସ୍)**

ଗ୍ରାମାଞ୍ଚଳରେ ବସବାସ କରୁଥିବା ଦୁଃସ୍ଥ ଗରିବ ଲୋକଙ୍କ ଜୀବିକାକୁ ସୁଦୃଢ କରିବା ନିମନ୍ତେ ଏମ୍.ଜି.ଏନ୍.ଆର୍.ଇ.ଜି.ଏସ୍ ଏକ ପ୍ରମୁଖ ପଦକ୍ଷେପ । ଅଧିକ ଉପାର୍ଜନକ୍ଷମ/କର୍ମନିଯୁକ୍ତି ସୁଯୋଗ ସୃଷ୍ଟି ସହିତ ଗରିବ ଲୋକଙ୍କ ପାଇଁ ନିର୍ଦ୍ଦିଷ୍ଟ ମାନର ଦୀର୍ଘସ୍ଥାୟୀ ଉତ୍ପାଦନକ୍ଷମ ସଂପତ୍ତି ସୃଷ୍ଟି ଏହି ଯୋଜନା ସୁନିଶ୍ଚିତ କରିଥାଏ । ଏହି **ଏମ୍.ଜି.ଏନ୍.ଆର୍.ଇ.ଜି.ଏସ୍** ଯୋଜନାର ମୂଳ ଲକ୍ଷ୍ୟ ହେଲା ଗ୍ରାମାଞ୍ଚଳରେ ବସବାସ କରୁଥିବା ଗରିବ ଓ ଅସହାୟ ଲୋକମାନଙ୍କ ଜୀବିକାକୁ ସୁଦୃଢ଼ କରିବା ସହିତ ଗ୍ରାମାଞ୍ଚଳର ପ୍ରତ୍ୟେକ ପରିବାରର ବୟସ୍କ ଏବଂ ଇଚ୍ଛୁକ ସଦସ୍ୟଙ୍କୁ ଗୋଟିଏ ଆର୍ଥିକ ବର୍ଷରେ ୧୦୦ ଦିନ ପର୍ଯ୍ୟନ୍ତ ଅଣକୁଶଳୀ କାର୍ଯ୍ୟ ଏହି ଯୋଜନା ଯୋଗାଇ ଦେବା ।

ସମାଜର ଦୁର୍ବଳ ଶ୍ରେଣୀ ଯଥା ଅନୁସୂଚିତ ଜାତି, ଜନଜାତି, କ୍ଷୁଦ୍ର ଓ ନାମମାତ୍ର ଚାଷୀଙ୍କୁ ସେମାନଙ୍କ ଅଧିକାର ସାବ୍ୟସ୍ତ କରିବାର କ୍ଷମତା ପ୍ରଦାନ, ସ୍ୱତ୍ୱାଧିକାର ପ୍ରଦାନ ଯଥା : (୧) ନୂତନ ଜବ୍‌କାର୍ଡ଼ ପାଇବା ଅଧିକାର (୨) ୧୫ ଦିନ ମଧ୍ୟରେ କାର୍ଯ୍ୟ ଯୋଗାଇ ଦେବାର ଦାବି ମୁତାବକ କର୍ମନିଯୁକ୍ତି ସୁଯୋଗ ସୃଷ୍ଟି ଅଥବା ବେରୋଜଗାରୀ ଭତ୍ତା ପ୍ରଦାନ (୩) ମଷ୍ଟର ରୋଲ (କାର୍ଯ୍ୟାଦେଶ) ସୃଷ୍ଟିର ୧୫ ଦିନ ମଧ୍ୟରେ ହିତାଧିକାରୀଙ୍କ ଜମାଖାତାରେ ସିଧାସଳଖ ମଜୁରି ପଇଠ ଅଥବା ବିଳମ୍ବ କ୍ଷେତ୍ରରେ କ୍ଷତିପୂରଣ ଭରଣା ୪) ଅଭିଯୋଗ ଦାଖଲ ଓ ଏହାର ପ୍ରତିବିଧାନ ଆଦି ।

**ବିଗତ ୧୦ ବର୍ଷର ସଫଳତା**

| **ସୂଚକ** | **ସଫଳତା (୨୦୧୨-୧୩ ରୁ ୨୦୨୨-୨୩ ବର୍ଷ ପର୍ଯ୍ୟନ୍ତ)** |
|---|---|
| ମୋଟ ଶ୍ରମଦିବସ କର୍ମନିଯୁକ୍ତି ପ୍ରଦାନ (ଲକ୍ଷ ଟଙ୍କାରେ) | ୧୧୮୧୩.୬୬ |
| ଅନୁସୂଚିତ ଜାତି ଶ୍ରମଦିବସ (ଲକ୍ଷ ଟଙ୍କାରେ) | ୧୬୯୫.୩୮ |
| ଅନୁସୂଚିତ ଜନଜାତି ଶ୍ରମଦିବସ (ଲକ୍ଷ ଟଙ୍କାରେ) | ୪୧୪୬.୯୮ |
| ମହିଳା ଶ୍ରମଦିବସ (ଲକ୍ଷ ଟଙ୍କାରେ) | ୪୬୯୭.୨୧ |
| ସମୁଦାୟ ଖର୍ଚ୍ଚ (କୋଟିରେ) | ୩୧୧୮୧.୦୩ |
| ମଜୁରି ଖର୍ଚ୍ଚ (କୋଟିରେ) | ୨୨୩୬୦.୬୭ |
| ୧୦୦ କର୍ମଦିବସ ପ୍ରଦାନ କରାଯାଇଥିବା ପରିବାର ସଂଖ୍ୟା | ୧୯୪୭୧୮୦ |
| କାର୍ଯ୍ୟ ସମ୍ପାଦନର ଆରମ୍ଭରୁ ଶେଷ ହେବା ପର୍ଯ୍ୟନ୍ତ | ୩୨୩୭୨୨୪ |

୧. କୋଭିଡ଼-୧୯ ମହାମାରୀ ସ୍ଥିତିରେ ରାଜ୍ୟରେ ୨୦୨୦-୨୧ ଆର୍ଥିକ ବର୍ଷରେ ଅକଥନୀୟ କ୍ଷତି ଘଟିଥିଲା । ଦୁଃସ୍ଥ ଗରିବ ଏବଂ ସମାଜର ଆର୍ଥିକ ଗରିବ ଶ୍ରେଣୀର ଲୋମାନଙ୍କୁ ଏମ.ଜି.ଏନ.ଆର୍.ଇ.ଜି.ଏ ମାଧ୍ୟମରେ କର୍ମନିଯୁକ୍ତି ପ୍ରଦାନ କରାଯାଉଥିଲା ଏବଂ ମୋଟ ୨୦.୮୧ କୋଟି ଶ୍ରମ ଦିବସ ସୃଷ୍ଟି କରାଯାଇଥିଲା ଯାହାକି ଉଲ୍ଲେଖଯୋଗ୍ୟ ସଫଳତା । ଏଥିରେ ୪.୧୭ ଲକ୍ଷ ପରିବାରକୁ ୧୦୦ ଦିନରେ କର୍ମନିଯୁକ୍ତି ମିଳିଥିଲା ।

୨. କୋଭିଡ଼ ପରବର୍ତ୍ତୀ ପର୍ଯ୍ୟାୟରେ ମଧ୍ୟ ଏମ.ଜି.ଏନ.ଆର୍.ଇ.ଜି.ଏ ମହତ୍ୱପୂର୍ଣ୍ଣ ଭୂମିକା ନୀର୍ବାହ କରିଥିଲା । ଗରିବ ପରିବାରମାନଙ୍କ ଜୀବିକା ସୁଦୃଢ଼ କରିବା ଲକ୍ଷ୍ୟରେ ୨୦୨୧-୨୨ ଆର୍ଥିକ ବର୍ଷରେ ପର୍ଯ୍ୟାପ୍ତ କର୍ମନିଯୁକ୍ତି ସୁଯୋଗ ଯୋଗାଇ ଦିଆଯାଇଥିଲା । ଉକ୍ତ ବର୍ଷରେ ୧୯.୭୮ କୋଟି ଶ୍ରମ ଦିବସ କର୍ମନିଯୁକ୍ତି କ୍ଷେତ୍ରରେ ସୃଷ୍ଟି କରାଯାଇଥିଲା । ୪.୫୭ ଲକ୍ଷ ପରିବାରର ୧୦୦ ଦିନର କାର୍ଯ୍ୟ ଯୋଗାଇ ଦିଆଯାଇଥିଲା ।




୩. ଗରିବ ଜନସାଧାରଣଙ୍କ ନିମନ୍ତେ କୋଭିଡ଼-୧୯ରେ କ୍ଷତିଭରଣା ରାଜ୍ୟ ସରକାରଙ୍କ ପ୍ୟାକେଜ ସ୍ୱରୂପ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଏମ.ଜି.ଏନ.ଆର୍.ଇ.ଜି.ଏସ୍‌ରେ ନିୟୋଜିତ ଲୋକମାନଙ୍କୁ ୩୫୨ କୋଟି ଟଙ୍କା ଆର୍ଥିକ ରାଶିର ପ୍ରୋତ୍ସାହନ ବଣ୍ଟନ କରିଥିଲେ । ଉକ୍ତ ପ୍ୟାକେଜ୍ ଜରିଆରେ ଏମ.ଜି.ଏନ.ଆର୍.ଇ.ଜି.ଏ.ରେ କାର୍ଯ୍ୟ କରିଥିବା ସମୁଦାୟ ୩୨ ଲକ୍ଷ ଲୋକ ଉପକୃତ ହୋଇଥିଲେ । ଦୈନିକ ମଜୁରି ସହିତ କାର୍ଯ୍ୟ କରୁଥିବା ଲୋକମାନଙ୍କୁ ୨୦୨୧ ବର୍ଷ ଅପ୍ରେଲ, ମଇ ଏବଂ ଜୁନ ମାସ ନିମନ୍ତେ ଅଧିକ ୫୦ ଟଙ୍କା ପ୍ରଦାନ କରାଯାଇଥିଲା । ଯେଉଁ ଲୋକମାନେ ୩ ମାସ ଧରି ଅପ୍ରେଲରୁ ଜୁନ୍ ମାସ ପର୍ଯ୍ୟାପ୍ତ କାର୍ଯ୍ୟ କରିଥିଲେ ସେମାନଙ୍କୁ ତାଙ୍କର ଦୈନିକ ମଜୁରି ସହିତ ଅଧିକ ୫୦ ଟଙ୍କା ପ୍ରଦାନ କରାଯାଇଥିଲା । ହିତାଧିକାରୀଙ୍କ ଜମା ଖାତାରେ ଏହା ପଇଠ କରାଯାଇଥିଲା । ସମୁଦାୟ ୩୨ ଲକ୍ଷ ଶ୍ରମିକଙ୍କୁ ୩୫୨ କୋଟି ଟଙ୍କା ପ୍ରଦାନ କରାଯାଇଥିଲା ।

**ବିବିଧ ପଦକ୍ଷେପ -**

୪ଟି ଜିଲ୍ଲାର ଯଥା- ବରଗଡ଼ (୪ଟି ବ୍ଲକ୍), ବଲାଙ୍ଗୀର (୬ଟି ବ୍ଲକ), କଳାହାଣ୍ଡି (୫ଟି ବ୍ଲକ୍), ନୂଆପଡ଼ା (୫ଟି ବ୍ଲକ୍) ର ଏବଂ ୨୦ଟି ଦାଦନ ପ୍ରବଣ ବ୍ଲକ୍‌ଗୁଡିକର ଦାଦନ ସମସ୍ୟାର ସମାଧାନ ନିମନ୍ତେ ରାଜ୍ୟ ସରକାର ରାଜ୍ୟର ନିଜସ୍ୱ ଯୋଜନା ଭାବେ ଏମ.ଜି.ଏନ.ଆର୍.ଇ.ଜି.ଏସ୍‌କୁ ରାଜ୍ୟ ସହଯୋଗ ଧାରାରେ ଅଧିକ ମଜୁରି ପ୍ରଦାନ ଉଦ୍ଦେଶ୍ୟରେ ନୂତନ ଯୋଜନା ପ୍ରଣୟନ କରି ଅତିରିକ୍ତ ୨୦୦ ଦିନର କାର୍ଯ୍ୟ ଯୋଗାଣ ପାଇଁ ସ୍ୱତନ୍ତ୍ର ପଦକ୍ଷେପ ଗ୍ରହଣ କରିଛନ୍ତି । ୨୦୧୯-୨୦ ବର୍ଷରୁ ଉକ୍ତ ପଦକ୍ଷେପ ଗ୍ରହଣ କରାଯାଇ ଗରିବ ଏବଂ ଅସହାୟମାନଙ୍କ ପ୍ରୋତ୍ସାହନ ନିମନ୍ତେ ବେଶ୍ ଫଳପ୍ରଦ ହୋଇଥିଲା । ନିମ୍ନରେ ଏହା ସୂଚିତ :

## ସୂଚକ କର୍ମ ସହଯୋଗ ସମୟ କର୍ମ ସହଯୋଗ ପୂର୍ବରୁ

| Indicator | Intervention Period | | | | Before Intervention | | |
|---|---|---|---|---|---|---|---|
| | FY: 2022-23 So far | FY: 2021-22 | FY: 2020-21 | FY: 2019-20 | FY: 2018-19 | FY: 2017-18 | FY: 2016-17 |
| Persondays Generated (in Lakh) | 146.36 | 199.71 | 219 | 94.33 | 55.4 | 63.34 | 54.7 |
| No. of HH Provided Employment (in Lakh) | 2.52 | 2.98 | 3.38 | 2.04 | 1.59 | 1.63 | 1.46 |
| No. of Persons Employed (in Lakh) | 4.78 | 5.65 | 6.45 | 3.52 | 2.72 | 3.1 | 2.84 |
| Average Days of Employment per HH | 58 | 67 | 65 | 46 | 35 | 39 | 37 |
| HH completed 100 days | 45174 | 67263 | 74403 | 16185 | 3009 | 7044 | 3110 |
| HH completed 200 days | 4190 | 13205 | 12624 | 136 | 0 | 0 | 0 |
| HH completed 300 days | 101 | 517 | 195 | 0 | 0 | 0 | 0 |
| Total Expenditure (Rs. in Cr) | 440.12 | 628.22 | 685.81 | 228.76 | 140.76 | 160.55 | 143.191 |
| Expenditure on Wage (Rs. in Cr) | 387.68 | 512.21 | 614.39 | 175.63 | 94.12 | 117.84 | 94.23 |

### ପୁରସ୍କାର/ଜାତୀୟ ସ୍ତରରେ ସଫଳତା

ସରକାରଙ୍କ ପ୍ରମୁଖ ଯୋଜନାଗୁଡ଼ିକ ଯଥା ଏମ୍.ଜି.ଏନ୍.ଆର୍.ଇ.ଜି.ଏସ୍ ଯୋଜନାର ସଫଳ ରୂପାୟନ ଦିଗରେ ଅନେକ ବର୍ଷ ଧରି ଓଡ଼ିଶା କେନ୍ଦ୍ର ପକ୍ଷରୁ ବହୁବାର ପୁରସ୍କୃତ ହୋଇଛି ।



ଏମ୍.ଜି.ଏନ୍.ଆର୍.ଇ.ଜି.ଏସ୍ ଯୋଜନାରେ ଉଲ୍ଲେଖଥିବା ସ୍ୱଚ୍ଛତା ଉତ୍ତରଦାୟିତ୍ୱଭିତ୍ତିକ ତତ୍ତ୍ୱ ରାଜ୍ୟ ସରକାରଙ୍କ ପାଇଁ ଉତ୍ପ୍ରେରକ ସଦୃଶ ଏବଂ ଏହି ଆଧାରରେ ରାଜ୍ୟର ସୁଶାସନ କ୍ଷେତ୍ରରେ ଅଭିନବ ପଦକ୍ଷେପ ଗ୍ରହଣ ଦିଗରେ ଏହା ଅନୁରୂପ ଭାବେ ଅନୁସୃତ ହେଉଛି । ରାଜ୍ୟ ସରକାର ସୁଶାସନ ନିମନ୍ତେ ସ୍ୱଚ୍ଛତାକୁ ସର୍ବୋଚ୍ଚ ଗୁରୁତ୍ୱ ଦେଇଆସିଛନ୍ତି ।

ଏମ୍.ଜି.ଏନ୍.ଆର୍.ଇ.ଜି.ଏସ୍ ପ୍ରଣୟନ କ୍ଷେତ୍ରରେ ୨୦୧୮ ମସିହାରେ 'ସ୍ୱଚ୍ଛତା ଏବଂ ଉତ୍ତରଦାୟିତ୍ୱ' ବର୍ଗରେ ଓଡ଼ିଶା ଜାତୀୟ ପୁରସ୍କାର ହାସଲ କରିଥିଲା ।

### ରାଜ୍ୟକୁ ମିଳିଥିବା ପୁରସ୍କାର ତାଲିକା

| ବର୍ଷ | ପୁରସ୍କାର ବର୍ଗ | ପୁରସ୍କାରପ୍ରାପ୍ତ | ର୍ୟାଙ୍କ୍ |
|---|---|---|---|
| ୨୦୧୦-୧୧ | ଜିଲ୍ଲା ସ୍ତରରେ ଏମ୍.ଜି.ଏନ୍.ଆର୍.ଇ.ଜି.ଏ.ରେ ଦାଖଲ ହୋଇଥିବା ଟୋଲ୍ ଫ୍ରିରେ ଅଭିଯୋଗ | ଗଞ୍ଜାମ | ୧ମ |
| | ଜିଲ୍ଲା ସ୍ତରରେ ଶ୍ରମ ଦିବସ ସୃଷ୍ଟି | ଗଞ୍ଜାମ | ୨ୟ |

| | | | |
|---|---|---|---|
| ୨୦୧୧-୧୨ | ଜିଲ୍ଲା ସ୍ତରରେ ସୁଶାସନ | ଗଞ୍ଜାମ | ୧ମ |
| ୨୦୧୩-୧୪ | ସମନ୍ୱୟ | ମୟୂରଭଞ୍ଜ | ୩ୟ |
| ୨୦୧୫-୧୬ | ଜିଲ୍ଲା ସ୍ତରରେ ଏମ୍.ଜି.ଏନ୍.ଆର୍.ଇ.ଜି.ଏ. ସଫଳ ରୂପାୟନ | କୋରାପୁଟ | ୧୧ତମ |
| ୨୦୧୮-୧୯ | ସ୍ୱଚ୍ଛତା ଏବଂ ଉତ୍ତରଦାୟିତ୍ୱ | ଓଡ଼ିଶା | ୩ୟ |
| | ଜିଲ୍ଲା ସ୍ତରରେ ଏମ୍.ଜି.ଏନ୍.ଆର୍.ଇ.ଜି.ଏ. ସଫଳ ରୂପାୟନ | କନ୍ଧମାଳ ଓ ରାୟଗଡ଼ା | ୯ମ ଓ ୧୦ମ |
| | ଭୂ-ଏମ୍.ଜି.ଏନ୍.ଆର୍.ଇ.ଜି.ଏ | ବୌଦ୍ଧ | ୩ୟ |
| | ଶ୍ରେଷ୍ଠ ଗ୍ରାମପଞ୍ଚାୟତ | ଗଞ୍ଜାମ ଜିଲ୍ଲାସ୍ଥିତ ପୋଲସରା ବ୍ଲକର ହାତୀଓତା | ୭ମ |
| ୨୦୧୯-୨୦ | ଏମ୍.ଜି.ଏନ୍.ଆର୍.ଇ.ଜି.ଏ. ସଫଳ ରୂପାୟନ | କୋରାପୁଟ | ୬ଷ୍ଠ |
| | ବ୍ଲକରେ ନିୟମିତ ଭାବେ ମଜୁରି ପ୍ରଦାନ | କଟକର କଣ୍ଟାପଡ଼ା ବ୍ଲକ | ୨ୟ |
| | ଶ୍ରେଷ୍ଠ ଗ୍ରାମପଞ୍ଚାୟତ | କୋରାପୁଟସ୍ଥିତ ନନ୍ଦପୁର ବ୍ଲକର କଷଣ୍ଡି | ୨ୟ |

**ଓଡ଼ିଶା ଗ୍ରାମ୍ୟ ଉନ୍ନୟନ ଓ ବିପଣନ ସମିତି (ଓରମାସ)**

୧୯୯୧ ମସିହାରେ ଓରମାସ ପ୍ରତିଷ୍ଠା ହୋଇଥିଲା ଏବଂ ୧୯୯୪ରୁ ରାଜ୍ୟରେ କାର୍ଯ୍ୟକ୍ଷମ ହୋଇଥିଲା । ଗ୍ରାମାଞ୍ଚଳ ଲୋକମାନଙ୍କ ଜୀବିକା ନିର୍ବାହ ପନ୍ଥା ଏବଂ ବିପଣନ ସହାୟତା କ୍ଷେତ୍ରରେ ଓରମାସର ଅଭିଜ୍ଞତା ରହିଆସିଛି । ଅନ୍ୟୂନ ୪,୫୦୦ କୋଟି ଟଙ୍କାର ଗ୍ରାମ୍ୟ ଉତ୍ପାଦର ବିପଣନ କ୍ଷେତ୍ରରେ ଓରମାସର ପ୍ରମୁଖ ଭୂମିକା ରହିଛି ଯେଉଁଥିରେକି ୭.୬୦ ଲକ୍ଷ ପରିବାରଙ୍କ କଷ୍ଟସାଧ ଶ୍ରମ ନିହିତ ।

**ଦୀନଦୟାଲ୍ ଉପାଧ୍ୟାୟ ଗ୍ରାମୀଣ କୌଶଲ୍ୟ ଯୋଜନା ( ଡ଼ିଡ଼ିୟୁ-ଜିକେଓ୍ବାଇ)**

ଓରମାସ ପକ୍ଷରୁ କାର୍ଯ୍ୟକାରୀ ହେଉଥିବା ଦୀନଦୟାଲ୍ ଉପାଧ୍ୟାୟ ଗ୍ରାମୀଣ କୌଶଲ୍ୟ ଯୋଜନା ମାଧ୍ୟମରେ ଗରିବ ଯୁବକ ଯୁବତୀମାନଙ୍କୁ ପ୍ରଶିକ୍ଷଣ ଦିଆଯାଉଛି । ଗ୍ରାମାଞ୍ଚଳର ଗରିବ ବେକାର ଯୁବକ ଯୁବତୀମାନଙ୍କୁ ସେମାନଙ୍କ ଦକ୍ଷତା ବିକାଶ ଦିଗରେ ପ୍ରଶିକ୍ଷଣ ପ୍ରଦାନ କରାଯାଇ ଆତ୍ମନିର୍ଭରଶୀଳ ତଥା ସେମାନଙ୍କ ପାଇଁ ନିଯୁକ୍ତି ସୁଯୋଗ ସୃଷ୍ଟି ଦ୍ୱାରା ଦାରିଦ୍ର୍ୟ ଦୂରୀକରଣ କରାଯାଇପାରୁଛି ।

ଜାତୀୟ ଗ୍ରାମୀଣ ଜୀବିକା ମିଶନ (ଏନ୍.ଆର୍.ଏଲ୍.ଏମ୍)ର ଏକ ଅଂଶ ବିଶେଷ ଭାବେ ଡ଼ିଡ଼ିୟୁ-ଜିକେଓ୍ବାଇ ଗ୍ରାମାଞ୍ଚଳ ଗରିବ ଲୋକମାନଙ୍କ ରୋଜଗାର ବୃଦ୍ଧିର ଲକ୍ଷ୍ୟ ରଖିବା ସହ ଗ୍ରାମୀଣ ଯୁବ ଗୋଷ୍ଠୀଙ୍କ ବୃତ୍ତି ପ୍ରତି ଦୃଷ୍ଟି ଦେଇଥାଏ । ଏହା ଏକ ଅନନ୍ୟ ସାର୍ବଜନୀନ ବେସରକାରୀ ଭାଗିଦାରୀ (ପି.ପି.ପି) ଯେଉଥିରେକି ଭାରତ ସରକାରଙ୍କ ଗ୍ରାମ୍ୟ ଉନ୍ନୟନ ମନ୍ତ୍ରାଳୟ ସହ ସମ୍ପୃକ୍ତ ରାଜ୍ୟ ସରକାରଙ୍କ ପକ୍ଷରୁ ପ୍ରକଳ୍ପ ପରିଚାଳନା ସଂସ୍ଥା (ପି.ଆଇ.ଏ.)ମାନଙ୍କ ପାଇଁ ଅର୍ଥ ବ୍ୟବସ୍ଥା ହୋଇଛି ।

**ଦକ୍ଷତା ବିକାଶ କାର୍ଯ୍ୟକ୍ରମର ସଫଳ ରୂପାୟନ କ୍ଷେତ୍ରରେ ଓରମାସର ସଫଳତା**

୧) ରାଜ୍ୟରେ ଦକ୍ଷତା ବିକାଶ କାର୍ଯ୍ୟକ୍ରମର ସଫଳ ରୂପାୟନ କ୍ଷେତ୍ରରେ ଭାରତ ସରକାରଙ୍କ ଗ୍ରାମ୍ୟ ଉନ୍ନୟନ ମନ୍ତ୍ରାଳୟ ପକ୍ଷରୁ  ଲଗାତାର (୨୦୧୬-୧୭,୨୦୧୭-୧୮ ଓ ୨୦୧୮-୧୯) ୩ ବର୍ଷ ଧରି ଦକ୍ଷତା ବିକାଶ କାର୍ଯ୍ୟକ୍ରମ କ୍ଷେତ୍ରରେ ଶ୍ରେଷ୍ଠ ରାଜ୍ୟ ଭାବେ ଓଡ଼ିଶାକୁ ପୁରସ୍କୃତ କରାଯାଇଛି ।

୨) ଇଉରୋପ ଭାରତ ଫାଉଣ୍ଡେସନ୍ ଫର୍ ଏକ୍ସେଲେନ୍ସ (ଇ.ଆଇ.ଏଫ.ଇ) ପକ୍ଷରୁ ଗ୍ରାମୀଣ ଦକ୍ଷତା ବିକାଶ କ୍ଷେତ୍ରରେ ଓଡ଼ିଶା ଶ୍ରେଷ୍ଠ ରାଜ୍ୟର ମାନ୍ୟତା ପାଇଛି ।

୩) ଡି.ଡି.ୟୁ-ଜି.କେ.ଓ୍ବାଇ ପ୍ରଣୟନ କ୍ଷେତ୍ରରେ ଓରମାସର ଉଲ୍ଲେଖନୀୟ ପଦକ୍ଷେପ ନିମନ୍ତେ କେନ୍ଦ୍ର ସରକାରଙ୍କ ଗ୍ରାମ୍ୟ ଉନ୍ନୟନ ମନ୍ତ୍ରାଳୟ ଭୂୟସୀ ପ୍ରଶଂସା କରିଛନ୍ତି ଏବଂ ଅନ୍ୟ ରାଜ୍ୟ ଏହା ଅନୁକରଣ କରିବା ନିମନ୍ତେ  ପରାମର୍ଶ ଦେଇଛନ୍ତି ।

୪) ଓରମାସ କାର୍ଯ୍ୟକ୍ଷମ ହେବା ପରଠାରୁ ୨.୧୨ ଲକ୍ଷରୁ ଉର୍ଦ୍ଧ୍ୱ ଯୁବକ ଯୁବତୀଙ୍କୁ ତାଲିମ ପ୍ରଦାନ କରାଯିବା ସହ ବିଭିନ୍ନ ଅନୁଷ୍ଠାନରେ ୧.୪୫ ଲକ୍ଷ ଜଣକୁ କର୍ମନିଯୁକ୍ତି ଯୋଗାଇ ପାରିଛି । ଦେଶର ସାମଗ୍ରିକ ସଫଳତା କ୍ଷେତ୍ରରେ ଓଡ଼ିଶାର ୧୬ ପ୍ରତିଶତ ଅବଦାନ ରହିଛି ।

୫) ତାଲିମ ପ୍ରଦାନ ପରେ ତାଲିମପ୍ରାପ୍ତ ଯୁବଗୋଷ୍ଠୀଙ୍କୁ ୯୫ ପ୍ରତିଶତ ଆକଳନ ଓ ୯୭ ପ୍ରତିଶତ ସାର୍ଟିଫିକେଟ୍ ପ୍ରଦାନ କ୍ଷେତ୍ରରେ, ସମଗ୍ର ଦେଶରେ ଆମ ରାଜ୍ୟ ଆଗୁଆ ।

୬) କ. ରାଜ୍ୟରେ ୪.୧୭ ଲକ୍ଷରୁ ଉର୍ଦ୍ଧ୍ୱ ବ୍ୟକ୍ତିଙ୍କୁ ଓରମାସ କର୍ମନିଯୁକ୍ତି ଯୋଗାଇଛି ।

ଖ. ବ୍ଲକ ସ୍ତରରେ ଓରମାସ ପକ୍ଷରୁ ୯୦୯ଟି ଭ୍ରାମ୍ୟମାଣ କାଉନ୍ସେଲିଂ ଶିବିର ଆୟୋଜିତ ।

ଗ. ୬୩୭୨ ଗ୍ରାମପଞ୍ଚାୟତ ସ୍ତରୀୟ ପ୍ରି-କାଉନ୍ସେଲିଂ ଶିବିର ଓରମାସ ପକ୍ଷରୁ ଆୟୋଜିତ ।

୭) ଓରମାସ ପକ୍ଷରୁ ୫ ଦାଦନ ସହାୟତା କେନ୍ଦ୍ର (ଏମ୍.ଏସ୍.ସି) ବେଙ୍ଗାଲୁରୁ, ଭିୱାଡ଼ି, ତିରୁପୁର, ହାଇଦ୍ରାବାଦ ଓ ଭୁବନେଶ୍ୱରଠାରେ ଖୋଲାଯାଇଛି । ତନ୍ମଧ୍ୟରୁ ୩ଟି ଏମ୍.ଏସ୍.ସି ବର୍ତ୍ତମାନ କାର୍ଯ୍ୟକ୍ଷମ ।

୮) ତାଲିମ ପ୍ରଦାନକାରୀଙ୍କ ଦକ୍ଷତା ବିକାଶ ନିମନ୍ତେ ଓରମାସ କେତେକ ସଂସ୍ଥା ସହ ଅନୁବନ୍ଧିତ ।

୯) ଶିଳ୍ପ ସଂସ୍ଥାମାନଙ୍କୁ ନିୟୋଜିତ କରିବା ପାଇଁ ଓରମାସ ୩ଟି ସି.ଇ.ଓ.ମାନଙ୍କ ବୈଠକ ଆୟୋଜନ କରିଥିଲା ।









**ଓରମାସ ପକ୍ଷରୁ ଜୀବିକା ନିର୍ବାହ କ୍ଷେତ୍ରରେ ବିବିଧ ପଦକ୍ଷେପ ଗ୍ରହଣ**

ଏନ୍.ଆର୍.ଏଲ୍.ଏମ୍ ଅଧୀନରେ ଜୀବିକା ନିର୍ବାହ ସମ୍ବନ୍ଧିତ ବିଭିନ୍ନ କାର୍ଯ୍ୟକ୍ରମ ସମ୍ପାଦନ ପାଇଁ ଓରମାସ ନୋଡାଲ୍ ସଂସ୍ଥା ଭାବେ କାର୍ଯ୍ୟ କରୁଛି । ଗତ ୫ ବର୍ଷ ମଧ୍ୟରେ ଓରମାସ ୭.୬୦ ଲକ୍ଷ ପରିବାର ବିଶିଷ୍ଟ ୩୮୧୨ ଜଣ ଉତ୍ପାଦକ ଗୋଷ୍ଠୀଙ୍କୁ ପ୍ରୋତ୍ସାହିତ କରିଆସିଛି ।



**ଗ୍ରାମୀଣ ରାଜମିସ୍ତ୍ରୀ ତାଲିମ କାର୍ଯ୍ୟକ୍ରମ**

ଗ୍ରାମାଞ୍ଚଳରେ ଓରମାସ ପକ୍ଷରୁ ୨୬ ପ୍ରକଳ୍ପ ପରିଚାଳନା ସଂସ୍ଥା (ପି.ଆଇ.ଏ) ଜରିଆରେ ନଭେମ୍ବର ୨୦୧୯ ଠାରୁ ଗ୍ରାମାଞ୍ଚଳର ଗରିବ ଲୋକମାନଙ୍କୁ କର୍ମନିଯୁକ୍ତି ଯୋଗାଇବା ନିମନ୍ତେ ରାଜମିସ୍ତ୍ରୀ ତାଲିମ କାର୍ଯ୍ୟକ୍ରମ ଚାଲୁରହିଛି । ଏହି କାର୍ଯ୍ୟକ୍ରମ ଜରିଆରେ ରାଜମିସ୍ତ୍ରୀ ସୃଷ୍ଟି ସହ ଗୃହ ନିର୍ମାଣ ଯୋଜନାରେ ସେମାନଙ୍କୁ ନିୟୋଜିତ କରିବା ଏହି କାର୍ଯ୍ୟକ୍ରମର ମୁଖ୍ୟ ଅଭିପ୍ରାୟ । ଏହି କ୍ରମରେ, ଗ୍ରାମାଞ୍ଚଳର (ଉଭୟ ମହିଳା ଏବଂ ପୁରୁଷ) ୩୧,୯୪୫ ଜଣଙ୍କୁ ତାଲିମ ପ୍ରଦାନ କରାଯାଇଛି ଏବଂ ସେମାନଙ୍କ ମଧ୍ୟରୁ ୨୫,୫୯୬ ଜଣ କେନ୍ଦ୍ର ପକ୍ଷରୁ ସ୍ୱୀକୃତିପ୍ରାପ୍ତ ହୋଇଛନ୍ତି ।

### ଓରମାସ ପକ୍ଷରୁ ବିପଣନ କାର୍ଯ୍ୟକ୍ରମ

ପ୍ରଦର୍ଶନୀ ଜରିଆରେ ଗ୍ରାମୀଣ କାରିଗର ଦ୍ୱାରା ଉତ୍ପାଦିତ ସାମଗ୍ରୀର ବଜାର ସୁବିଧା ଯୋଗାଇବା ନିମନ୍ତେ ଆୟୋଜିତ ପ୍ରଦର୍ଶନୀ ବିଶେଷ ଗୁରୁତ୍ୱ ବହନ କରେ । ବିଭିନ୍ନ ବର୍ଗର ଗ୍ରାହକଙ୍କ ମଧ୍ୟରେ ଏହି ଉତ୍ପାଦ ସବୁ ସେମାନଙ୍କ ପରିଚୟ ସୃଷ୍ଟି କରିବାରେ ସମର୍ଥ ହୋଇଥାଏ । ଗ୍ରାମୀଣ ଉଦ୍ୟୋଗ ଚିହ୍ନଟ, ଜୀବିକା ସୁବିଧା ସହ ସହରାଞ୍ଚଳ ଓ ଅର୍ଦ୍ଧ ସହରାଞ୍ଚଳରେ ବଜାର ସଂଯୋଗୀକରଣ ପାଇଁ ଏହା ମଧ୍ୟ ବେଶ୍ ସହାୟକ ହୋଇଥାଏ । ଏହି ପ୍ରଦର୍ଶନୀ ସେମାନଙ୍କ ସାମଗ୍ରୀଗୁଡ଼ିକୁ ସିଧାସଳଖ ସହରରେ ଥିବା ବଡ଼ ବଡ଼ ବଜାରରେ ବିକ୍ରୀ, ଗ୍ରାହକଙ୍କ ମତ ଆଦାନ ପ୍ରଦାନ ଆଦିର ସୁଯୋଗ ଗ୍ରାମୀଣ ଉତ୍ପାଦକ ଗୋଷ୍ଠୀଙ୍କୁ ଯୋଗାଇଥାଏ ।



ଓରମାସ ପକ୍ଷରୁ ରାଜ୍ୟରେ ବିଗତ ୨୫ ବର୍ଷ ଧରି ପ୍ରଦର୍ଶନୀ ଆୟୋଜିତ ହୋଇଆସୁଛି । ଗ୍ରାମାଞ୍ଚଳର ଗରିବ ଲୋକମାନଙ୍କର ଗ୍ରାମୀଣ ଉତ୍ପାଦ ଏହା ଦ୍ୱାରା ପ୍ରଦର୍ଶିତ ହେବା ସଙ୍ଗେ ସଙ୍ଗେ ବିକ୍ରୀବଟା ପାଇଁ ମଧ୍ୟ ବ୍ୟାପକ ସୁଯୋଗ ସୃଷ୍ଟି ହେଉଛି । ପ୍ରଦର୍ଶନୀ ଆୟୋଜନ କରିବା ସହ ଓରମାସ ରାଜ୍ୟର ସ୍ୱୟଂ ସହାୟକ ଗୋଷ୍ଠୀ ଏବଂ ଉତ୍ପାଦକ ମଣ୍ଡଳୀଙ୍କୁ କେନ୍ଦ୍ର ପକ୍ଷରୁ ଆୟୋଜିତ ପ୍ରଦର୍ଶନୀରେ ଅଂଶଗ୍ରହଣ ନିମନ୍ତେ ମଧ୍ୟ ପ୍ରୋତ୍ସାହନ ଯୋଗାଇଥାଏ । ଅନ୍ୟୂନ ୨୨୪ଟି ପ୍ରଦଶନୀ ୨୦୨୨ ଆର୍ଥିକ ବର୍ଷ ସୁଦ୍ଧା ଆୟୋଜିତ ହୋଇଥିଲା, ଯେଉଁଥିରେ ୩୬,୯୩୯ ସଂଖ୍ୟକ ସ୍ୱୟଂ ସହାୟକ ଗୋଷ୍ଠୀ/ ଉତ୍ପାଦନକାରୀ ସଂସ୍ଥା ଅଂଶଗ୍ରହଣ କରି ୪୩,୦୭୪ ଲକ୍ଷ ଟଙ୍କାର ଲାଭାଂଶ ପାଇଛନ୍ତି ।



ଉତ୍ପାଦକାରୀ ମଣ୍ଡଳୀ ଜରିଆରେ ଓରମାସ ପନିପରିବାର ବିପଣନ ବ୍ୟବସ୍ଥା କରି କୋଭିଡ ସମୟର ଲକ୍‌ଡାଉନ୍ ବେଳେ ୧୯ଟି ଜିଲ୍ଲାର ଉତ୍ପାଦକାରୀ ଗୋଷ୍ଠୀଙ୍କ ଜୀବିକା ନିର୍ବାହ କ୍ଷେତ୍ରରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଛି । ଏହା ବ୍ୟତୀତ ଫେସ୍ ମାସ୍କ, ଆମ୍ବ ଚାଷୀଙ୍କୁ ସହଯୋଗ ଆଦି ଦିଗରେ ମଧ୍ୟ ବିଶେଷ ପଦକ୍ଷେପ ଗ୍ରହଣ କରାଯାଇଛି । କର୍ପୋରେଟ୍ ଅନୁବନ୍ଧିତ ଜରିଆରେ ଓରମାସ ବିପଣନ ଏବଂ ବିକ୍ରୀବଟାରେ ସହଯୋଗ ଯୋଗାଇ ଦେଉଛି ।

## ଗ୍ରାମୀଣ ଉତ୍ପାଦର ବିକ୍ରୀ ନିମନ୍ତେ ବାଣିଜ୍ୟିକ ଚୁକ୍ତିନାମା

### ଖୁଚୁରା ବଜାରରେ ଆମ୍ବ ବିକ୍ରୀ

୨୦୧୯-୨୦ରୁ ୨୦୨୧-୨୨ (ଡିସେମ୍ବର ମାସ)ରେ ରାଜଧାନୀ ଭୁବନେଶ୍ୱରରେ ରାଜ୍ୟସ୍ତରୀୟ ଆମ୍ବମେଳା ଆୟୋଜିତ ହୋଇଥିଲା । ଏହି ମେଳାରେ ରାଜ୍ୟର ୧୦ଟି ଜିଲ୍ଲାରୁ ଆମ୍ବଚାଷୀ ସେମାନଙ୍କ ଆମ୍ବ ବିକ୍ରୀ ଓ ପ୍ରଦର୍ଶନ କରିବାର ସୁଯୋଗ ପାଇଥିଲେ । ଏହି ମେଳାରେ ମୋଟ ୩୮,୧୫୮ କେଜି ଆମ୍ବ ବିକ୍ରୀ ହୋଇଥିବା କେବଳ ୨୧,୪୫,୭୫୦ ଟଙ୍କାର କାରବାର ହୋଇଥିଲା । ଚାଷୀମାନେ ସେମାନଙ୍କ ଉତ୍ପାଦିତ ଆମ୍ବକୁ ସ୍ୱଳ୍ପ ମୂଲ୍ୟରେ ଗ୍ରାମରେ ବା ସ୍ଥାନୀୟ ଜୋରରେ ବିକ୍ରୀ କରିଥା'ନ୍ତି । ଏହି ସ୍ଥିତିରେ ସୁଧାର ଆଣିବା ପାଇଁ ଓରମାସ ଦ୍ୱାରା ବିଭିନ୍ନ ଜିଲ୍ଲା ମୁଖ୍ୟାଳୟ ଓ ଜନଗହଳିପୂର୍ଣ୍ଣ ସ୍ଥାନରେ ଅସ୍ଥାୟୀ ଆମ୍ବ ବଜାର ଆରମ୍ଭ କରାଯାଇଥିଲା । ବଜାର ଧୂପକାଠି, ଆମ୍ବ, ଡାଲି ଜାତୀୟ ଶସ୍ୟ, ସବାଇ ଫୁଲଝାଡୁ, ପନିପରିବା, ରବର ଏବଂ ଲଘୁ ବନଜାତ ଦ୍ରବ୍ୟ ସମୂହର ବିକ୍ରୀବଟା ନିମନ୍ତେ ବିଭିନ୍ନ ସଂସ୍ଥା ଓ ଫାର୍ମଗୁଡ଼ିକୁ ସହାୟତା ପ୍ରଦାନ କରୁଅଛି ।



ଗତ ୧୦ ବର୍ଷ ମଧରେ ଓରମାସ ଅଗରବତୀ ରିଲାଏନ୍ସ ମଦର ଡେରୀଙ୍କ ନାମୀ ସଂସ୍ଥାମାନଙ୍କ ସହ ଅନୁବନ୍ଧିତ ରହି ବିପଣନ ସହାୟତା ଯୋଗାଇ ଆସୁଛି । ସପୁରୀ ଫଳର ସଫଳ ବିକ୍ରୀବଟା ଦିଗରେ ଗଜପତି ଓ ରାୟଗଡ଼ା ଜିଲ୍ଲାରେ ୧୮୦ ସଭ୍ୟଙ୍କୁ ନେଇ ଓରମାସ ସଫଳତା ପ୍ରଦର୍ଶନ କରିଛି । ୩୦ ଟନ୍ ସପୁରୀର ବିପଣନ ବିକ୍ରୟ ବ୍ୟବସ୍ଥା କରିଛି ।

ଟେରାକୋଟା କ୍ଷେତ୍ରରେ ୧୪ ଜିଲ୍ଲାରେ ୮୭୦ ଶିଳ୍ପୀ କାରିଗର ଓରମାସ୍ ଦ୍ୱାରା ଉପକୃତ ହୋଇଛନ୍ତି । ଏତଦ୍ ବ୍ୟତୀତ ଓରମାସ ପକ୍ଷରୁ ତରଭୁଜ, ଫୁଲ ଝାଡୁ, ମହୁ, ଅଦା ଆଦିର ବଜାର ସୁବିଧା ଦିଗରେ ଉଲ୍ଲେଖନୀୟ ସଫଳତା ପରିଲକ୍ଷିତ ହୋଇଛି ।

### ଗ୍ରାମ୍ୟ ପାନୀୟ ଜଳଯୋଗାଣ

ଗ୍ରାମାଞ୍ଚଳରେ ବସବାସ କରୁଥିବା ସମସ୍ତ ପରିବାର ପାଇଁ ନିରାପଦ, ସ୍ୱଚ୍ଛ ଏବଂ ପର୍ଯ୍ୟାପ୍ତ ପାନୀୟ ଜଳ ବ୍ୟବସ୍ଥା ଦାୟିତ୍ୱ ପଞ୍ଚାୟତିରାଜ ଓ ପାନୀୟ ଜଳ ବିଭାଗ ଉପରେ ନ୍ୟସ୍ତ । ଅଗ୍ରାଧିକାର ଭିତ୍ତିରେ ଗ୍ରାମ୍ୟ ଜଳ ଯୋଗାଣ ଓ ପରିମଳ ସଂସ୍ଥା ଜରିଆରେ ରାଜ୍ୟର ସମସ୍ତ ଗ୍ରାମ ଓ ପଡ଼ାଗ୍ରାମକୁ ସଫଳତାର ସହିତ ସ୍ୱଚ୍ଛ ଓ ନିରାପଦ ପାନୀୟ ଜଳ ଯୋଗାଇ



ଦିଆଯାଉଛି । ଜଳକ୍ଲିଷ୍ଟ/ଜଳ ଗୁଣବତ୍ତା ପ୍ରଭାବିତ ଅଞ୍ଚଳର ପ୍ରତ୍ୟେକ ପରିବାରକୁ ଟ୍ୟାପ୍ ଯୋଗେ ନିରାପଦ ପାନୀୟ ଜଳ ଯୋଗାଇଦେବା ନିମନ୍ତେ ରାଜ୍ୟ ସରକାର ପ୍ରତିବଦ୍ଧ ।

ରାଜ୍ୟ ସରକାରଙ୍କ ନିଜସ୍ୱ ବ୍ୟବସ୍ଥାରେ ପରିଚାଳିତ ଗ୍ରାମ୍ୟ ପାନୀୟ ଜଳ ଯୋଗାଣ ଯୋଜନା 'ବସୁଧା' ୨୦୧୭-୧୮ରେ ପ୍ରଣୟନ କରାଯାଇଥିଲା । ୬୦୦ କୋଟି ଟଙ୍କା ବଜେଟ୍ ଖର୍ଚ୍ଚ ଆକଳନରେ ଆରମ୍ଭ ହୋଇଥିବା ଉକ୍ତ ଯୋଜନାର କଳେବର କ୍ରମଶଃ ୨୦୨୨-୨୩ ଆର୍ଥିକ ବର୍ଷରେ ୮୫୦କୋଟି ଟଙ୍କାକୁ ବୃଦ୍ଧି ପାଇଛି ।



ଡି.ଏମ୍.ଏଫ୍, ଓ.ଏମ୍.ବି.ଏ.ଡି.ସି, ଅର୍ଥ କମିଶନ, ଆର୍.ଆଇ.ଡି.ଏଫ୍, ଜେ.ଜେ.ଏମ୍ ପାଣ୍ଠି ବିନିଯୋଗରେ ଚଳିତ ଆର୍ଥିକ ବର୍ଷରେ ୮,୮୫୦ କୋଟି ଟଙ୍କା ବଜେଟ୍‌ର ଏହି ପାନୀୟ ଜଳ ଯୋଗାଣ ସୁବିଧାର ଲକ୍ଷ୍ୟ ରଖାଯାଇଛି ।

ବିଗତ ୩ ବର୍ଷ ମଧ୍ୟରେ ଏହି କ୍ଷେତ୍ରରେ ଉଲ୍ଲେଖନୀୟ ଉନ୍ନତି ପରିଲକ୍ଷିତ ହୋଇଛି, ଯେଉଁଥିରେକି ୫୦,୯୩,୨୯୭ କୋଟି ଟଙ୍କା ମୂଲ୍ୟର ପ୍ରକଳ୍ପ ଅନୁମୋଦିତ ହୋଇଛି ।

୪୪,୦୦୦ କୋଟି ଟଙ୍କା ମୂଲ୍ୟ ଖର୍ଚ୍ଚ ବିଶିଷ୍ଟ ୫୫୦୦ ସଂଖ୍ୟକ ପ୍ରକଳ୍ପର କାର୍ଯ୍ୟାରମ୍ଭ ହୋଇଛି ।

୩୪,୫୦୦ କୋଟି ଟଙ୍କା ମୂଲ୍ୟର ଅନ୍ୟୂନ ୨୦୭ଟି ବୃହତ ପାନୀୟ ଜଳ ଯୋଗାଣ ପ୍ରକଳ୍ପ ପାଇଁ ଲକ୍ଷ୍ୟ ଧାର୍ଯ୍ୟ ହୋଇଥିବା ବେଳେ ତନ୍ମଧ୍ୟରୁ ୨୮,୧୫୪ କୋଟି ଟଙ୍କା ମୂଲ୍ୟର ୧୬୮ଟି ବୃହତ୍ ପ୍ରକଳ୍ପ କାର୍ଯ୍ୟ ହାତକୁ ନିଆଯାଇଛି ।

* ଗ୍ରାମ୍ୟ ପାନୀୟ ଜଳଯୋଗାଣ ଅଧୀନରେ ୫୫.୨୮ ପ୍ରତିଶତ ଗ୍ରାମୀଣ ପରିବାରଙ୍କ ଗୃହକୁ ବିଶୁଦ୍ଧ ପାନୀୟ ଜଳ ଟ୍ୟାପ୍ ଯୋଗେ ସଂଯୋଗୀକରଣ କରାଯାଇଛି ।

* ପ୍ରାକୃତିକ ବିପର୍ଯ୍ୟୟ ଯଥା ତିତିଲି, ଫନି ସମୟରେ ଯୁଦ୍ଧକାଳୀନ ଭିତ୍ତିରେ ତଥା ରେକର୍ଡ଼ ସମୟ ମଧ୍ୟରେ ପାନୀୟ ଜଳ ଯୋଗାଣ ବ୍ୟବସ୍ଥା ସ୍ୱାଭାବିକ କରାଯିବା ସହ ସେଥିରେ ସୁଧାର ଅଣାଯାଇପାରିଥିଲା ।

* ପାନୀୟ ଜଳ ଯୋଗାଣ କ୍ଷେତ୍ରରେ ଗ୍ରାମ୍ୟ ପାନୀୟ ଜଳଯୋଗାଣ ବିପର୍ଯ୍ୟୟ ପ୍ରତିରୋଧକାରୀ ବ୍ୟବସ୍ଥା ବିଶେଷ ଭାବେ ଗ୍ରହଣ କରାଯାଇଛି ।

* ସମଗ୍ର ଦେଶରେ ପ୍ରଥମ ଥର ଲାଗି ନାଗରିକମାନଙ୍କ ସୁବିଧା ପାଇଁ ସେମାନଙ୍କ ସମସ୍ୟାର ସମାଧାନ ଦିଗରେ ପାନୀୟ ଜଳଯୋଗାଣ କ୍ଷେତ୍ରରେ ସହାୟତା ନିମନ୍ତେ ୧୯୧୬ ସମର୍ପିତ ହେଲ୍ପ୍‌ଲାଇନ୍ ଟୋଲ୍ ଫ୍ରି ନମ୍ବର କାର୍ଯ୍ୟ କରୁଛି ।

* ପାନୀୟ ଜଳର ଗୁଣବତ୍ତା ପରୀକ୍ଷଣ କରାଯାଉଛି । ଏଥିପାଇଁ ୭୭ଟି ପାନୀୟ ଜଳ ପରୀକ୍ଷାଗାର ରାଜ୍ୟରେ ପ୍ରତିଷ୍ଠା ହୋଇଛି । ରାସାୟନିକ ଏବଂ ବ୍ୟାକ୍ଟେରିଆ ପରୀକ୍ଷଣ ଦିଗରେ ମହିଳା ସ୍ୱେଚ୍ଛାସେବୀ

ଅନୁଷ୍ଠାନମାନଙ୍କର ମଧ୍ୟ ସହଯୋଗ ରହିଛି । ପାନୀୟ ଜଳ ଗୁଣବତ୍ତା ପରୀକ୍ଷଣ ଦିଗରେ ଗୋଷ୍ଠୀ ସମ୍ବଳ ସଭ୍ୟମାନଙ୍କୁ ତାଲିମ ପ୍ରଦାନ କରାଯାଉଛି ।

**ଆମ ଗାଁ ଆମ ବିକାଶ**





ଆମ ଗାଁ ଆମ ବିକାଶ କାର୍ଯ୍ୟକ୍ରମ ରାଜ୍ୟ ସରକାରଙ୍କ ଦ୍ୱାରା ପ୍ରଣୀତ କରାଯାଇ ସ୍ଥାନୀୟ ଅଞ୍ଚଳରେ ଗୁରୁତ୍ୱ ବହନ କରୁଥିବା ଅତ୍ୟାବଶ୍ୟକ ପ୍ରକଳ୍ପ ଉପରେ ବିଶେଷ ଧ୍ୟାନ ଦିଆଯାଇଥାଏ । ଏହି ଯୋଜନା ଗ୍ରାମାଞ୍ଚଳର ବିଭିନ୍ନ ଭିତ୍ତିଭୂମି ବିକାଶ କ୍ଷେତ୍ର ଯଥା ମରାମତି ଆଧୁନିକୀକରଣ ଆଦି ପ୍ରତି ମଧ୍ୟ ଯଥେଷ୍ଟ ଯତ୍ନବାନ । ବିଭିନ୍ନ ପ୍ରକଳ୍ପର ଚୟନ ଆଦିରେ ସ୍ଥାନୀୟ ଅଞ୍ଚଳର ଲୋକ, ଗୋଷ୍ଠୀ, ଅନୁଷ୍ଠାନ, ଜନ ପ୍ରତିନିଧି ଏବଂ ଅନ୍ୟାନ୍ୟ ଭାଗିଦାରୀ ଅନୁଷ୍ଠାନ ଅଂଶଗ୍ରହଣ କରି ସିଧାସଳଖ ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କ ସହ ଭିଡିଓ କନଫରେନ୍ସିଂ ଜରିଆରେ ଏହି ପ୍ରକଳ୍ପଗୁଡ଼ିକର ଅନୁମୋଦନ ହୋଇଥାଏ ।

୩୧୪ ବ୍ଲକ୍‌ର ୬,୭୯୪ ଗ୍ରାମପଞ୍ଚାୟତ ଯାହାର ସଂଖ୍ୟା ୧,୫୫୪.୬୯ କୋଟି ଟଙ୍କା ମୂଲ୍ୟର ସମୁଦାୟ ୬୨,୦୩୫ ପ୍ରକଳ୍ପ ଅନୁମୋଦିତ ହୋଇଛି ।

ଉକ୍ତ ଯୋଜନାରେ ଏଯାବତ୍ ୧,୩୩୩.୩୫ କୋଟି ଟଙ୍କା ମୂଲ୍ୟର ୫୩,୧୧୬ ପ୍ରକଳ୍ପ କାର୍ଯ୍ୟ ସମାପନ ହୋଇଛି ।

**ରାଜ୍ୟ ଗ୍ରାମ୍ୟ ଉନ୍ନୟନ ଓ ପଞ୍ଚାୟତିରାଜ ପ୍ରତିଷ୍ଠାନ (ଏସ୍.ଆଇ.ଆର୍.ଡି)**

ଓଡ଼ିଶା ସରକାରଙ୍କ ପଞ୍ଚାୟତିରାଜ ଓ ପାନୀୟ ଜଳ ବିଭାଗର ପ୍ରମୁଖ ପ୍ରଶିକ୍ଷଣ ପ୍ରତିଷ୍ଠାନ ରୂପେ ରାଜ୍ୟ ଗ୍ରାମ୍ୟ ଉନ୍ନୟନ ଓ ପଞ୍ଚାୟତିରାଜ ପ୍ରତିଷ୍ଠାନ କାର୍ଯ୍ୟ କରୁଛି । ଏହି ପ୍ରତିଷ୍ଠାନର ପ୍ରଶାସନିକ ନିୟନ୍ତ୍ରଣରେ ଭୁବନେଶ୍ୱର, କେନ୍ଦୁଝର ଓ କଳାହାଣ୍ଡିଠାରେ ୩ଟି ସମ୍ପ୍ରସାରଣ ପ୍ରଶିକ୍ଷଣ କେନ୍ଦ୍ର ଓ ୧୫ଟି ଜିଲ୍ଲା ପଞ୍ଚାୟତ ସାଧନ କେନ୍ଦ୍ର କାର୍ଯ୍ୟକରୁଛି । ତ୍ରିସ୍ତରୀୟ ପଞ୍ଚାୟତିରାଜ ପ୍ରତିନିଧି ଓ କର୍ମକର୍ତ୍ତାଙ୍କ ଦକ୍ଷତା ବିକାଶ ନିମନ୍ତେ ଏହା ପ୍ରମୁଖ ସଂସ୍ଥା ଭାବେ କାର୍ଯ୍ୟ କରୁଛି । ପୁନଶ୍ଚ ବିଭିନ୍ନ ଯୋଜନା ଓ କାର୍ଯ୍ୟକ୍ରମର ଫଳପ୍ରଦ କାର୍ଯ୍ୟାନ୍ୱୟନକୁ ତ୍ୱରାନ୍ୱିତ କରିବା ନିମନ୍ତେ ଗୁରୁତ୍ୱପୂର୍ଣ୍ଣ ଅଂଶୀଦାରଙ୍କ ମଧ୍ୟରେ ସଚେତନତା ଲକ୍ଷ୍ୟ କରି ରାଜ୍ୟ ଗ୍ରାମ୍ୟ ଉନ୍ନୟନ P.R

ପ୍ରତିଷ୍ଠାନ ବିଭିନ୍ନ ଯୋଜନାର ଗବେଷଣା, ମୂଲ୍ୟାୟନ ତଥା ବିଭିନ୍ନ ପ୍ରସଙ୍ଗ ଓ ସମସ୍ୟାକୁ ନେଇ ପୁସ୍ତିକା ସମାଚାର ପତ୍ରିକା, ପ୍ରଚାରପତ୍ର ତଥା ବୃତ୍ତଚିତ୍ର ଆଦି ପ୍ରସ୍ତୁତ କରିଛି । ଦକ୍ଷତା ବିକାଶ ଓ ପ୍ରଶିକ୍ଷଣ ନିମନ୍ତେ ମୁଖ୍ୟତଃ P.R ମନ୍ତ୍ରାଳୟ ଓ ଗ୍ରାମୀଣ ବିକାଶ ମନ୍ତ୍ରାଳୟ ରାଜ୍ୟ ଗ୍ରାମ୍ୟ ଉନ୍ନୟନ ଓ P.R ପ୍ରତିଷ୍ଠାନକୁ ଅର୍ଥ ପ୍ରଦାନ କରିଥାନ୍ତି । ଏହା ବ୍ୟତୀତ ଓଡ଼ିଶା ସରକାରଙ୍କ ପଞ୍ଚାୟତିରାଜ ଓ ପାନୀୟ ଜଳ ବିଭାଗ ଅଧୀନରେ କାର୍ଯ୍ୟକାରୀ ହେଉଥିବା ଯୋଜନା ସମ୍ବନ୍ଧରେ ପ୍ରଶିକ୍ଷଣ କାର୍ଯ୍ୟକ୍ରମମାନ ମଧ୍ୟ ରାଜ୍ୟ ଗ୍ରାମ୍ୟ ଉନ୍ନୟନ ଓ P.R ପ୍ରଶିକ୍ଷଣ ଆୟୋଜନ କରିଥାଏ ।



### SIRD & P.Rଙ୍କ ଦ୍ୱାରା ସୂଚନା, ଶିକ୍ଷା ଓ ଯୋଗାଯୋଗ କାର୍ଯ୍ୟକ୍ରମ (I EC)

ତୃଣମୂଳ ସ୍ତରରେ ଶାସନ ବ୍ୟବସ୍ଥା ସଶକ୍ତ କରିବା ପାଇଁ ରାଜ୍ୟ ଗ୍ରାମ୍ୟ ଉନ୍ନୟନ ଓ P.R ପ୍ରତିଷ୍ଠାନ ପକ୍ଷରୁ ବିସ୍ତୃତ ସୂଚନା, ଶିକ୍ଷା ଓ ଯୋଗାଯୋଗ ଯୋଜନାର ଅଂଶସ୍ୱରୂପ ବିଭିନ୍ନ IEC ପଦକ୍ଷେପ କାର୍ଯ୍ୟକାରୀ ହୋଇଛି ।

ତ୍ରିସ୍ତରୀୟ ପଞ୍ଚାୟତର ନିର୍ବାଚନ ପ୍ରତିନିଧି ଏବଂ ଅଧିକାରୀମାନଙ୍କ ସୂଚନା ନିମନ୍ତେ ନୀତିଗତ ନିୟମାବଳୀ ଆଦି ଥିବା କୋଭିଡ଼ ପରିଚାଳନା ସଂପର୍କିତ କରୋନା ସଂପର୍କରେ (ସଚେତନତା ବର୍ଣ୍ଣମାଳା) ପ୍ରସ୍ତୁତ ଏବଂ ପ୍ରକାଶ କରାଯାଇ ଜନସମାଗମ ଥିବା ସ୍ଥାନରେ ପ୍ରଦର୍ଶିତ ହୋଇଥିଲା ।

କୋଭିଡ଼ କେୟାର ହୋମ୍ ପରିଚାଳନା ସଂପର୍କିତ ପୋଷ୍ଟର ଜନସାଧାରଣଙ୍କ ଅବଗତି ନିମନ୍ତେ ପ୍ରସ୍ତୁତ ଓ ପ୍ରକାଶ କରାଯାଇ ଜିଲ୍ଲା, ବ୍ଲକ୍, ଓ ଗ୍ରାମପଞ୍ଚାୟତ ସ୍ତରରେ ବଣ୍ଟନ ।

ଏତଦ୍ ବ୍ୟତୀତ ପଞ୍ଚାୟତ ମାର୍ଗଦର୍ଶିକା ଗ୍ରାମପଞ୍ଚାୟି ଦ୍ୱାରା କୋଭିଡ଼ ପରିଚାଳନା ସମ୍ପର୍କିତ କାର୍ଯ୍ୟକ୍ରମଗୁଡ଼ିକର ଭିଡିଓ  ପଞ୍ଚାୟତର ନିର୍ବାଚିତ ପ୍ରତିନିଧି ଓ କର୍ମକର୍ତ୍ତାଙ୍କ ନିମନ୍ତେ ସମ୍ବଳ ପୁସ୍ତିକା ।

ବିଭିନ୍ନ ଗ୍ରାମୀଣ ବିକାଶ ତଥା ଜନକଲ୍ୟାଣକାରୀ ଯୋଜନା ସମ୍ବନ୍ଧୀୟ ପ୍ରଶ୍ନ ଉତ୍ତର ପୁସ୍ତିକା ପ୍ରସ୍ତୁତ କରାଯାଇଛି, ଯାହା ନିର୍ବାଚିତ ପଞ୍ଚାୟତ ଜନ ପ୍ରତିନିଧି ଓ କର୍ମକର୍ତ୍ତାଙ୍କ ହିତ ସାଧନ କରୁଛି ।







# RURAL HOUSING

- 31.41 Lakh Houses Completed since the F.Y 2014-15
- 27 Lakh Families Got House Repair Grant of Rs. 810 Crore
- 8 Lakh Beneficiaries Paid Incentive of Rs. 1340 Crore
- Sanction of New 9.59 Lakh Houses by 31-12-2022



Panchayati Raj & Drinking Water Department



# ସମ୍ପାଦକୀୟ



ଓଡିଆ ସ୍ୱାଭିମାନର ପ୍ରତୀକ ବିଜୁ ପଟ୍ଟନାୟକ । ସେ ନବ ଉତ୍କଳର ନିଆରା ବିନ୍ଧାଣି । ତାଙ୍କର ଦେଶ ପ୍ରେମ, ବଳିଷ୍ଠ ନେତୃତ୍ୱ, ଓଡିଶା ପ୍ରତି ତ୍ୟାଗପୂତ ଅବଦାନ, ନିଷ୍ଠା, ଆନ୍ତରିକତା ଏବଂ ସର୍ବୋପରି ତାଙ୍କର ଦୁଃସାହସିକତା କେବଳ ଓଡିଶା କି ଭାରତ ନୁହେଁ, ବିଶ୍ୱରେ ତାଙ୍କୁ ଏକ ଚର୍ଚ୍ଚିତ ଏବଂ ବିରଳ ବ୍ୟକ୍ତିତ୍ୱ ଭାବରେ ପରିଚିତ କରାଇଛି । ତାଙ୍କର ଆଦର୍ଶକୁ ଅନୁକରଣ କରିବା ଆମ ସମସ୍ତଙ୍କ ପାଇଁ ଏକ ଆହ୍ୱାନ ।

ବିଜୁବାବୁ ଭାରତର ପ୍ରଥମ ନେତା ଯିଏ ତୃଣମୂଳ ସ୍ତରର ଗଣତନ୍ତ୍ର ଏବଂ ପଞ୍ଚାୟତିରାଜ ବ୍ୟବସ୍ଥାରେ ମହିଳାଙ୍କ ଅଂଶଗ୍ରହଣ ଦିଗରେ ଅତ୍ୟନ୍ତ ସାହସିକ ତଥା ବାସ୍ତବବାଦୀ ପଦକ୍ଷେପ ନେଇଥିଲେ । ତାଙ୍କ ମତରେ ପଞ୍ଚାୟତିରାଜ ହିଁ ଭାରତୀୟ ଗଣତନ୍ତ୍ରର ଆଧାର ଏବଂ ତାକୁ ଜୀବନ୍ତ କରିବା ପାଇଁ ସେ ନିଷ୍ଠାର ସହ ପ୍ରୟାସ କରିଥିଲେ । ସେ ପ୍ରତ୍ୟେକ ସରପଞ୍ଚଙ୍କୁ ନିଜ ପଞ୍ଚାୟତର ମୁଖ୍ୟମନ୍ତ୍ରୀ ଭାବେ ଅଭିହିତ କରିଥିଲେ । ତାଙ୍କ ନୀତି ଥିଲା ପର୍ଯ୍ୟାୟକ୍ରମେ ଅଧିକରୁ ଅଧିକ କାର୍ଯ୍ୟ ପ୍ରଦାନ କରିବା ଏବଂ ବିଭିନ୍ନ ଉନ୍ନୟନମୂଳକ କାର୍ଯ୍ୟ, ଯୋଜନା ଏବଂ କାର୍ଯ୍ୟକ୍ରମର ରୂପାୟନ ନିମନ୍ତେ ପ୍ରଭାବଶାଳୀ ଲୋକପ୍ରିୟ ଅନୁଷ୍ଠାନ ବିକଶିତ କରିବା ପାଇଁ ତ୍ରିସ୍ତରୀୟ ପ୍ରଶାସନ ବ୍ୟବସ୍ଥାକୁ ସମ୍ପୂର୍ଣ୍ଣ ସହଯୋଗ କରିବା ।

୧୯୯୨ ମସିହା ଜୁଲାଇ ୨୭ ତାରିଖରେ ଆୟୋଜିତ ବିନୋଦ କାନୁନଗୋ ସ୍ମାରକୀ ସଭାରେ 'ମୋ ସ୍ୱପ୍ନର ଓଡ଼ିଶା' ଶୀର୍ଷକ ବକ୍ତୃତା ପ୍ରଦାନ କରି ସେ କହିଥିଲେ, ''ଆସନ୍ତାକାଲିର ଓଡ଼ିଶାର ସ୍ୱପ୍ନରେ, ମୁଁ ମହିଳାମାନଙ୍କ ପ୍ରତି ଅତ୍ୟାଚାର ବିଷୟରେ କିଛି ବି ଶୁଣିବାକୁ ପସନ୍ଦ କରିବି ନାହିଁ, ମୁଁ ଏମିତି ଏକ ଦିନର ସ୍ୱପ୍ନ ଦେଖୁଛି ଯେତେବେଳେ ମହିଳାମାନେ ପୁରୁଷଙ୍କ ସହ ସମାନ ଭୂମିକା ଗ୍ରହଣ କରିବେ, ସେମାନେ ପୁରୁଷଙ୍କ ସହ ସମାନ କ୍ଷମତା ପ୍ରୟୋଗ କରିବେ ଏବଂ ସମାନ ସୁବିଧା ଉପଭୋଗ କରିବେ । ଆସନ୍ତାକାଲି ଏକବିଂଶ ଶତାବ୍ଦୀର ଏହା ମୋର ସ୍ୱପ୍ନ ହେବା ଉଚିତ ।'' ବିଜୁ ବାବୁ ଭଲ ଭାବରେ ଜାଣିଥିଲେ ଯେ, ନାରୀ ଅଧିକାର ଉପରେ ସଚେତନତା ସ୍ତର ବୃଦ୍ଧି କରିବାରେ ଶିକ୍ଷାର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ଏକଦା ସେ କହିଥିଲେ, ''ମୁଁ ସର୍ବଦା କହିଆସିଛି ଯେ ଆମେ ଆମର ମା' ଓ ଭଉଣୀମାନଙ୍କ ସାମାଜିକ ସ୍ଥିତିରେ ଉନ୍ନତି ନ ଆଣିବା ପର୍ଯ୍ୟନ୍ତ ବିକାଶର କୌଣସି ମୂଲ୍ୟ ରହିବ ନାହିଁ, ନୂତନ ପଞ୍ଚାୟତିରାଜ ବ୍ୟବସ୍ଥାରେ ମୁଁ ସେମାନଙ୍କ ପାଇଁ ସଂରକ୍ଷିତ ୩୩% ଆସନର ପ୍ରାବଧାନ କରିଛି । ଯେଉଁ ମା' ଭଉଣୀମାନେ ଏତେ ଦକ୍ଷତାର ସହ ପରିବାର ଚଳାଉଛନ୍ତି ସେମାନେ ସମାନ ଦକ୍ଷତା ସହ ପଞ୍ଚାୟତ ସମିତି ଓ ଜିଲ୍ଲା ପରିଷଦ ପରିଚାଳନା କରିବେ ବୋଲି ମୋର ଦୃଢ଼ ବିଶ୍ୱାସ ରହିଛି । ସେ ଅନୁଭବ କରିଥିଲେ ଯେ, ଏକ ରାଜ୍ୟର ଶାସନ କେବଳ ଅମଲାତନ୍ତ୍ର କିମ୍ବା ଲୋକଙ୍କ ପ୍ରତିନିଧିତ୍ୱ ଉପରେ ନିର୍ଭର କରେ ନାହିଁ ବରଂ ଏହା ଲୋକଙ୍କ ସାମୂହିକ ଅଂଶଗ୍ରହଣ ଉପରେ ଆଧାରିତ ହେବା ଉଚିତ ।

ତା.୫.୩.୧୯୯୦ରୁ ତା.୧୫.୩.୧୯୯୫ ରିଖ ପର୍ଯ୍ୟନ୍ତ ତାଙ୍କର ମୁଖ୍ୟମନ୍ତ୍ରିତ୍ୱର ଦ୍ୱିତୀୟ କାର୍ଯ୍ୟକାଳରେ ତାଙ୍କ ପ୍ରଗତିଶୀଳ ନେତୃତ୍ୱରେ ପଞ୍ଚାୟତିରାଜ ଆନ୍ଦୋଳନ ଜୋର ଧରିଥିଲା । ପଞ୍ଚାୟତିରାଜ ବ୍ୟବସ୍ଥା ଏବଂ ପରବର୍ତ୍ତୀ ସମୟରେ

ଓଡ଼ିଶା ଜିଲ୍ଲା ପରିଷଦ ଆଇନ ୧୯୯୧ ପ୍ରଣୟନ ଓ ଗ୍ରାମପଞ୍ଚାୟତ ସମିତିର ତିନୋଟି ସ୍ତରରେ ମହିଳାଙ୍କ ପାଇଁ ୩୩ ପ୍ରତିଶତ ଆସନ ସଂରକ୍ଷଣ ପାଇଁ ସେ ବୈପ୍ଳବିକ ପଦକ୍ଷେପ ନେଇଥିଲେ ।

୧୯୯୨ ମସିହାର ସଂଶୋଧନ ଆଇନ ଓଡ଼ିଶା ବିଧାନସଭାରେ ପାରିତ ହୋଇଥିଲା, ଯେଉଁଥିରେ ଅନୁସୂଚିତ ଜାତି ଓ ଜନଜାତି ମହିଳାଙ୍କ ସମେତ ମହିଳାଙ୍କ ପାଇଁ ୩୩% ଆସନ ସଂରକ୍ଷଣ ବ୍ୟବସ୍ଥା ଥିଲା । ଜିଲ୍ଲା ପରିଷଦର ଏକ ତୃତୀୟାଂଶ ଯେପରି କେବଳ ମହିଳା ଅଧକ୍ଷା ରହିବେ, ସେଥିପାଇଁ ବ୍ୟବସ୍ଥା କରାଯାଇଥିଲା । ପଞ୍ଚାୟତ ସମିତି ଓ ଗ୍ରାମପଞ୍ଚାୟତ କ୍ଷେତ୍ରରେ ଦୁଇ ପଦାଧିକାରୀଙ୍କ ମଧ୍ୟରୁ ଜଣେ ଯଥା- ସମିତି କ୍ଷେତ୍ରରେ ଅଧକ୍ଷା କିମ୍ବା ଉପାଧକ୍ଷା ଏବଂ ଗ୍ରାମପଞ୍ଚାୟତ କ୍ଷେତ୍ରରେ ସରପଞ୍ଚ କିମ୍ବା ନାଏବ-ସରପଞ୍ଚ ଜଣେ ମହିଳା ହେବାର ଆବଶ୍ୟକତା ପୂରଣ ହୋଇଥିଲା । ଗଣତନ୍ତ୍ର ପ୍ରତି ଓ ପଞ୍ଚାୟତିରାଜ ଅନୁଷ୍ଠାନ ପ୍ରତି ତାଙ୍କର ଗଭୀର ଭଲ ପାଇବା ଗଣତାନ୍ତ୍ରିକ ମନୋବୃତ୍ତିର ଏକ ଜ୍ୱଳନ୍ତ ଉଦାହରଣ । ସମାନତାର ସାମ୍ବିଧାନିକ ସ୍ୱପ୍ନକୁ ସାକାର କରିବା ପାଇଁ ଏହି ପଦକ୍ଷେପ ନିଆଯାଇଥିଲା । ଏହାର କିଛି ବର୍ଷ ପରେ ଅନ୍ୟ ରାଜ୍ୟମାନେ ଏହାକୁ ଅନୁସରଣ କରିଥିଲେ । ତାଙ୍କର ମହାନ ପୁତ୍ର ତଥା ଦୁଇ ଦଶନ୍ଧିରୁ ଅଧିକ ସମୟ ଧରି ଓଡ଼ିଶାର ଅପ୍ରତିଦ୍ୱନ୍ଦ୍ୱୀ ନେତା ଭାବେ ସର୍ବବିଦିତ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକଙ୍କ ନେତୃତ୍ୱରେ ୨୦୧୧ରେ ପଞ୍ଚାୟତିରାଜ ଅନୁଷ୍ଠାନ ଏବଂ ସହରାଞ୍ଚଳ ସ୍ୱାୟତ୍ତ ସଂସ୍ଥାରେ ମହିଳାଙ୍କ ପାଇଁ ସଂରକ୍ଷଣ ହାର ୩୩% ରୁ ୫୦%କୁ ବୃଦ୍ଧି କରାଗଲା ଏବଂ ୨୦୧୯ରେ ଗଣତାନ୍ତ୍ରିକ ନେତୃତ୍ୱର ସର୍ବୋଚ୍ଚ ସ୍ତରରେ ପ୍ରତିନିଧିତ୍ୱକୁ ଅନ୍ତର୍ଭୁକ୍ତ କରିବା ପାଇଁ ଦଳ ତରଫରୁ ୩୩ ପ୍ରତିଶତ ଟିକେଟ ଦିଆଗଲା ।

ବ୍ୟକ୍ତି ତଥା ନାଗରିକଙ୍କ ଅଧିକ ଅଂଶଗ୍ରହଣ ଦ୍ୱାରା ଭାରତୀୟ ଗଣତନ୍ତ୍ରକୁ ଉନ୍ନତ ରୂପ ଦିଆଯାଇପାରିବ ବୋଲି ବିଜୁବାବୁ ଏବଂ ନବୀନ ବାବୁଙ୍କର ଦୃଢ ବିଶ୍ୱାସ । ଏହା ତାଙ୍କର କାର୍ଯ୍ୟଧାରାରୁ ପ୍ରମାଣିତ । ଏକ ସଶକ୍ତ ସମାଜ, ସ୍ଥାନୀୟ ସ୍ତରରେ, ସ୍ଥାନୀୟ ନେତୃତ୍ୱ ମାଧ୍ୟମରେ ସମସ୍ୟାକୁ ଅଧିକ ଭଲ ଭାବରେ ପରିଚାଳନା ଏବଂ ସମାଧାନ କରିଥାଏ । ଏଥିପାଇଁ ବିଜୁବାବୁ ଓଡ଼ିଶାର ରାଜନୈତିକ ଜୀବନକୁ ଗଢ଼ିତୋଳିବା ପାଇଁ ସର୍ବଦା ଦକ୍ଷ, ପ୍ରତିଭା ସମ୍ପନ୍ନ ଏବଂ ଜନସାଧାରଣଙ୍କ ସୁଖ ଦୁଃଖରେ ସାମିଲ ବ୍ୟକ୍ତିବିଶେଷଙ୍କୁ ଖୋଜିଖୋଜି ଦଳରେ ସାମିଲ କରୁଥିଲେ ଏବଂ ଆଜି ନବୀନ ବାବୁ ମଧ ଲୋକଙ୍କ ସାଙ୍ଗରେ ଥିବା, ଲୋକଙ୍କ ପାଇଁ କାମ କରୁଥିବା ଏବଂ ଲୋକଙ୍କୁ ଭଲ ପାଉଥିବା ବ୍ୟକ୍ତିମାନଙ୍କୁ ସମ୍ମାନର ସହିତ ଦଳରେ ସାମିଲ କରୁଛନ୍ତି ।

ଗାଁରେ ଅଛି ଭାରତର ଆତ୍ମା । ଭାରତର ଶାସନ ପଞ୍ଚାୟତମାନଙ୍କରେ ବ୍ୟବସ୍ଥିତ । ଦେଶ ଶାସନରେ ପ୍ରତ୍ୟେକ ଲୋକଙ୍କ ଯୋଗଦାନକୁ ସୁନିଶ୍ଚିତ କରିବା ପାଇଁ ପଞ୍ଚାୟତିରାଜ ବ୍ୟବସ୍ଥାର ବିକଳ୍ପ ନାହିଁ । ଦେଶ ସୁଦୃଢ ତୃଣମୂଳ ସ୍ତରରୁ ଏବଂ ପ୍ରତ୍ୟେକ ବ୍ୟକ୍ତିର ଯୋଗଦାନ ଓ ଗୋଷ୍ଠୀର ପ୍ରତିବଦ୍ଧତାରୁ ହୋଇଥାଏ । କୌଣସି ସଂଘୀୟ ଶାସନର ପରିପନ୍ଥୀ ଶକ୍ତି ଭାରତ ପରି ବିବିଧତାରେ ପରିପୂର୍ଣ୍ଣ ଦେଶ ପାଇଁ ଅନୁକୂଳ ନୁହେଁ । ବିଜୁବାବୁଙ୍କ ଏହି ଦୂରଦୃଷ୍ଟି, ମହାତ୍ମା ଗାନ୍ଧୀଙ୍କର ସ୍ୱପ୍ନର ଭାରତର କଳ୍ପନା ସମଦୃଷ୍ଟିର, ଏଥିରେ ଦ୍ୱିମତ ନାହିଁ । ଆମେ, ବିଶେଷ କରି ମହିଳାମାନେ, ସେହି ମହାନ ନେତାଙ୍କ ସ୍ମୃତି, ଦୂରଦୃଷ୍ଟି, ଭାବନା ଏବଂ ପ୍ରତିବଦ୍ଧତାକୁ ପ୍ରଣାମ ଜଣାଉଛୁ । ଓଡ଼ିଶାବାସୀ ତାଙ୍କ ଜନ୍ମଦିନ ମାର୍ଚ୍ଚ ୫ ତାରିଖକୁ ଗର୍ବ ଓ ଉଲ୍ଲାସର ସହିତ ପଞ୍ଚାୟତିରାଜ ଦିବସ ଓ ଲୋକସେବା ଦିବସ ଭାବେ ପାଳନ କରିଆସୁଛନ୍ତି । ମହାନ ଜନନାୟକ ଭାବରେ ଲୋକଙ୍କ ହୃଦୟରେ ସେ ଅଛନ୍ତି ଏବଂ ରହିଥିବେ ମଧ ଯୁଗ ଯୁଗ ଧରି । ବିଜୁ ଆଦର୍ଶରେ କାମ କରିବା ଓଡିଶାବାସୀଙ୍କ ପାଇଁ ଏକ ଆହ୍ୱାନ ତଥା ବରଦାନ ସଦୃଶ ।



**ସମ୍ପାଦିକା**

(କସ୍ତୁରୀ ମହାପାତ୍ର)

# ଓଡ଼ିଶା ବିଧାନସଭାରେ ମାନ୍ୟବର ରାଜ୍ୟପାଳ ପ୍ରଫେସର ଗଣେଶୀ ଲାଲଙ୍କ ଅଭିଭାଷଣ

ମାନ୍ୟବର ବାଚସ୍ପତି ମହୋଦୟ ଓ ମାନ୍ୟବର ସଦସ୍ୟବୃନ୍ଦ,

ଷୋଡ଼ଶ ଓଡ଼ିଶା ବିଧାନସଭାର ଦ୍ୱାଦଶ ଅଧିବେଶନକୁ ମୁଁ ଆପଣମାନଙ୍କୁ ସମସ୍ତଙ୍କୁ ସ୍ୱାଗତ କରୁଛି । ଏହି ପବିତ୍ର ଗୃହର ସମସ୍ତ ମାନ୍ୟବର ସଦସ୍ୟ ଏବଂ ଓଡ଼ିଶାବାସୀଙ୍କୁ ମୁଁ ନବବର୍ଷର ହାର୍ଦ୍ଦିକ ଶୁଭେଚ୍ଛା ଜଣାଉଛି ।

୨. ଆସୀନ ସଦସ୍ୟ ଓ ପୂର୍ବତନ ମନ୍ତ୍ରୀ ସ୍ୱର୍ଗତ ବିଜୟ ରଞ୍ଜନ ସିଂ ବରିହା, ପୂର୍ବତନ ମନ୍ତ୍ରୀ ସ୍ୱର୍ଗତ ଗୋଲକ ବିହାରୀ ନାଏକ, ପୂର୍ବତନ ରାଷ୍ଟ୍ରମନ୍ତ୍ରୀ ସ୍ୱର୍ଗତ ରିପୁନାଥ ସେଠ, ଆସୀନ ସଦସ୍ୟ ସ୍ୱର୍ଗତ ବିଷ୍ଣୁ ଚରଣ ସେଠୀ, ପୂର୍ବତନ ସଦସ୍ୟ ସ୍ୱର୍ଗତ ସୁରେନ୍ଦ୍ର ନାଥ କହଁର, ସ୍ୱର୍ଗତ ରାଜେନ୍ଦ୍ର ପ୍ରସାଦ ସିଂ, ସ୍ୱର୍ଗତ କପିଳ ନାରାୟଣ ତିଓ୍ୱାରୀ, ସ୍ୱର୍ଗତ ଗୋପନାରାୟଣ ଦାସ ଓ ସ୍ୱର୍ଗତ ଆଦିକନ୍ଦ ସେଠୀଙ୍କ ବିୟୋଗରେ ଏହି ପବିତ୍ର ଗୃହ ଗଭୀର ଶୋକ ପ୍ରକାଶ କରିଅଛି । ମୁଁ ସମସ୍ତ ମାନ୍ୟବର ସଦସ୍ୟମାନଙ୍କୁ ଆସୀନ ସଦସ୍ୟ ଓ ମାନ୍ୟବର ମନ୍ତ୍ରୀ ସ୍ୱର୍ଗତ ନବ କିଶୋର ଦାସ, ପୂର୍ବତନ ସଦସ୍ୟ ସ୍ୱର୍ଗତ ଗଙ୍ଗାଧର ଦାସ ଏବଂ ସ୍ୱର୍ଗତ ଅର୍ଜୁନ ଚରଣ ଦାସଙ୍କୁ ଶ୍ରଦ୍ଧାଞ୍ଜଳି ଅର୍ପଣ କରିବା ପାଇଁ ମୋ ସହିତ ଯୋଗଦେବା ନିମନ୍ତେ ଅନୁରୋଧ କରୁଛି । ପରଲୋକଗତ ଏହି ଅବିସ୍ମରଣୀୟ ବ୍ୟକ୍ତିବିଶେଷ ମାନଙ୍କର ଶୋକସନ୍ତପ୍ତ ପରିବାରବର୍ଗଙ୍କ ଉଦ୍ଦେଶ୍ୟରେ ଏହି ଗୃହ ଆନ୍ତରିକ ସମବେଦନା ଜ୍ଞାପନ କରୁଛି ।

୩. ମୋ ସରକାର ଉଭୟ ଜାତୀୟ ଓ ଅନ୍ତର୍ଜାତୀୟ ସ୍ତରରେ ନିଜର ସଠିକ୍ ନିରୂପିତ ସ୍ଥାନରେ ରହିଥିବା ଏକ ଆକାଂକ୍ଷିତ, ସଶକ୍ତ ଏବଂ ଚଳଚଞ୍ଚଳ ଓଡ଼ିଶା ନିର୍ମାଣର ଅଭିଳାଷକୁ ସଦାସର୍ବଦା ସର୍ବୋଚ୍ଚ ପ୍ରାଥମିକତା ଦେଇ ଆସୁଛନ୍ତି । ବିଭିନ୍ନ ଲୋକାଭିମୁଖୀ କାର୍ଯ୍ୟ ପାଇଁ ମିଳିଥିବା ଅକୁଣ୍ଠ ଜନସହଯୋଗ ଓ ସମର୍ଥନ ଲାଭ କରି ଓଡ଼ିଶା ଏବେ ଏକ ରୂପାନ୍ତରିତ ଅଭିବୃଦ୍ଧି ପଥରେ ଅଗ୍ରସର ହେଉଛି । ଆମେ କ୍ରମାଗତ ଭାବେ ପୁରୁଷ ହକି ବିଶ୍ୱକପର ଦୁଇଟି ସଂସ୍କରଣକୁ ସଫଳତାର ସହ ଆୟୋଜନ କରିବା ସହିତ ରେକର୍ଡ ୧୫ ମାସ ମଧ୍ୟରେ ବିଶ୍ୱର ସର୍ବବୃହତ୍ ଦର୍ଶକ କ୍ଷମତା ବିଶିଷ୍ଟ ହକି ଷ୍ଟାଡିୟମ, ବିର୍ସା ମୁଣ୍ଡା ହକି ଷ୍ଟାଡ଼ିୟମ ରାଉରକେଲାରେ ନିର୍ମାଣ କରିଛୁ ଏବଂ ସ୍କିଲ୍ଡ–ଇନ୍–ଓଡ଼ିଶାକୁ ଜାତୀୟ ଓ ଅନ୍ତର୍ଜାତୀୟ ସ୍ୱୀକୃତି ପ୍ରାପ୍ତ ବ୍ରାଣ୍ଡ ଭାବେ ବିକଶିତ କରିଛୁ । ଓଡ଼ିଶାରେ ଆଇ.ବି.ଏମର କ୍ଲାଏଣ୍ଟ ଇନୋଭେସନ୍ ସେଣ୍ଟର ଏବଂ ଡେଲ୍ଏଟ୍ ଟେକ୍ ଟ୍ୟାଲେଣ୍ଟ ହବ୍ ଭଳି ବିଶ୍ୱସ୍ତରୀୟ କମ୍ପାନୀ ଖୋଲିବା ଫଳରେ ଆମେ ଭାରତର ଟେକ୍ନୋଲୋଜି ରିସୋର୍ସ ହବ୍‌ରେ ପରିଣତ ହୋଇଛୁ । ବିଜୁ ସ୍ୱାସ୍ଥ୍ୟ କଲ୍ୟାଣ ଯୋଜନା ଏବେ ଓଡ଼ିଶାବାସୀଙ୍କୁ ସାର୍ବଜନୀନ ସ୍ୱାସ୍ଥ୍ୟ ସୁବିଧା ପ୍ରଦାନ କରୁଛି । '5T' ଏବଂ 'ମୋ ସରକାର' ଉପକ୍ରମ ବୃତ୍ତିଗତ ଶାସନ ବ୍ୟବସ୍ଥାକୁ ସୁଦୃଢ଼ କରିଛି,

ଜନସାଧାରଣଙ୍କ ମତାମତ ଆଧାରରେ ପ୍ରଶାସନିକ ବ୍ୟବସ୍ଥାରେ ଉନ୍ନତି ଆଣିଛି ଏବଂ ଆମ ଲୋକାଭିମୁଖୀ ପ୍ରଶାସନିକ ଆଭିମୁଖ୍ୟ ଲୋକଙ୍କୁ ସରକାରଙ୍କ ନିକଟତର କରିଛି । ବିପର୍ଯ୍ୟୟ ପରିଚାଳନା, ମହିଳା ସଶକ୍ତିକରଣ, ଖାଦ୍ୟ ସୁରକ୍ଷା, ବିଦ୍ୟାଳୟ ରୂପାନ୍ତରଣ ହେଉ ଅବା ଗୁଣାତ୍ମକ ସ୍ୱାସ୍ଥ୍ୟ ସେବା ମୋ ସରକାର ଏକାଧିକ କ୍ଷେତ୍ରରେ ନୂତନ ପ୍ରଶାସନିକ ମାନଦଣ୍ଡ ସ୍ଥାପନ କରିବାରେ ସକ୍ଷମ ହୋଇଛି । ମୋ ସରକାରଙ୍କ ପ୍ରଶାସନିକ ଆଭିମୁଖ୍ୟ ଏବେ ଲୋକାଭିମୁଖୀ ଏବଂ ଗରିବ କଲ୍ୟାଣକାରୀ । ଇନ୍‌ଭେଷ୍ଟ-ଇନ୍-ଓଡ଼ିଶା ପାଇଁ ଅନୁକୂଳ ପୁଞ୍ଜିନିବେଶ ବାତାବରଣ ସୃଷ୍ଟି କରି ଓଡ଼ିଶାର ଅଭିବୃଦ୍ଧି ଗାଥାକୁ ପ୍ରତିଫଳିତ କରୁଥିବା 'ମେକ୍ ଇନ୍ ଓଡ଼ିଶା କନକ୍ଲେଭ୍'ର ତୃତୀୟ ସଂସ୍କରଣକୁ ସଫଳତାର ସହ ଆୟୋଜନ କରିବା ଏବଂ ଲଗାତାର ଭାବେ ଦୁଇଟି ହକି ବିଶ୍ୱକପ୍ ଆୟୋଜନ କରି ବିଶ୍ୱସ୍ତରୀୟ କ୍ରୀଡ଼ା ପ୍ରତିଯୋଗିତା ଆୟୋଜନ କରିବା ଦକ୍ଷତା ପ୍ରଦର୍ଶନ କରିଥିବାରୁ ମୁଁ ମୋ ସରକାରଙ୍କୁ ଭୂୟସୀ ପ୍ରଶଂସା କରୁଛି ।

୪. ମୋ ସରକାର ରାଜ୍ୟରେ ଶିଳ୍ପ କ୍ଷେତ୍ରର ବିକାଶକୁ ଗୁରୁତ୍ୱ ଏବଂ ଅଗ୍ରାଧିକାର ଦେଇ ଓଡ଼ିଶାକୁ 'ପୂର୍ବ ଭାରତର ଶିଳ୍ପ କ୍ଷେତ୍ର'ରେ ପରିଣତ କରିବା ଲକ୍ଷ୍ୟରେ ଆସନ୍ତା ୫ ବର୍ଷ ପାଇଁ ଶିଳ୍ପ ନୀତି ସଂକଳ୍ପ ୨୦୨୨ ଅନୁମୋଦନ କରିଛନ୍ତି । ନିବେଶକମାନଙ୍କ ପାଇଁ ଓଡ଼ିଶାରେ ସର୍ବୋତ୍ତମ ନିବେଶ ସୁବିଧା, ପ୍ରୋତ୍ସାହନ ଏବଂ ଅନ୍ୟ ରାଜ୍ୟମାନଙ୍କ ତୁଳନାରେ ଏକ ସ୍ୱତନ୍ତ୍ର ପ୍ରତିଯୋଗିତାମୂଳକ ସୁଯୋଗ ରହିଛି । ନିକଟରେ ଭାରତ ସରକାରଙ୍କ ଦ୍ୱାରା ପ୍ରକାଶିତ 'ଇଜ୍ ଅଫ୍ ଡୁଇଙ୍ଗ୍ ବିଜିନେସ୍' ରେଟିଂରେ ଓଡ଼ିଶାକୁ 'ଲକ୍ଷ୍ୟ ହାସଲକାରୀ ରାଜ୍ୟ'ର ମାନ୍ୟତା ମିଳିଛି । ଅସୀମିତ ପ୍ରାକୃତିକ ସମ୍ବଳ, ପ୍ରଶିକ୍ଷିତ ମାନବ ସମ୍ବଳ, ପ୍ରଗତିଶୀଳ ନୀତି, ଫଳାଫଳ ଆଗ୍ରହୀ ଏକ ଦୃଢ ପ୍ରଶାସନିକ ବ୍ୟବସ୍ଥା ଏବଂ ବ୍ୟବସାୟ ଅନୁକୂଳ ପରିବେଶ ସହିତ ଓଡ଼ିଶା ଦେଶର ଏକ ଅଗ୍ରଣୀ ପୁଞ୍ଜିନିବେଶ ଲକ୍ଷ୍ୟସ୍ଥଳ ଭାବେ ଉଭା ହୋଇଛି ।

୫. ରାଜ୍ୟର ପ୍ରମୁଖ ନିବେଶକ ସମ୍ମିଳନୀ 'ମେକ୍ ଇନ୍ ଓଡ଼ିଶା କନକ୍ଲେଭ୍, ୨୦୨୨'ର ତୃତୀୟ ସଂସ୍କରଣରେ ବିପୁଳ ପୁଞ୍ଜିନିବେଶ ସମ୍ଭାବନା ଓ ଶିଳ୍ପ ଦକ୍ଷତା ପ୍ରଦର୍ଶିତ ହୋଇଥିଲା । ଏଥିରେ ୧୦ ଲକ୍ଷ କୋଟିରୁ ଅଧିକ ପୁଞ୍ଜି ନିବେଶ ପାଇଁ ପ୍ରତିଶ୍ରୁତି ମିଳିଥିବା ବେଳେ ୧୦ଲକ୍ଷରୁ ଅଧିକ ନିଯୁକ୍ତି ସମ୍ଭାବନା ସୃଷ୍ଟି ହୋଇଛି । ଏହି ଭବ୍ୟ ସମାରୋହରେ ୧୧ଟି ଦେଶ, ଶତାଧିକ ଅନ୍ତର୍ଜାତୀୟ ପ୍ରତିନିଧି, ୩ଟି ଅଂଶୀଦାର ଦେଶ ଜାପାନ, ଜର୍ମାନୀ ଓ ନରୱେ ଏବଂ ଶିଳ୍ପପତିମାନେ ଅଂଶଗ୍ରହଣ କରିଥିଲେ ।

୬. ଉତ୍କୃଷ୍ଟ ପ୍ରଦର୍ଶନ କେନ୍ଦ୍ର ଓ ବିଶ୍ୱସ୍ତରୀୟ କ୍ରୀଡ଼ା ଭିତ୍ତିଭୂମି ପ୍ରତିଷ୍ଠା ସହ ଓଡ଼ିଶା ଏବେ ଏକ ଅନ୍ତର୍ଜାତୀୟ କ୍ରୀଡ଼ା ସ୍ଥଳୀ ଭାବେ ଉଭା ହୋଇଛି । ୨୦୨୨ରେ ଭୁବନେଶ୍ୱର ୧୭ ବର୍ଷରୁ କମ୍ ଫିଫା ମହିଳା ବିଶ୍ୱକପ୍ ଇଣ୍ଡିଆ, ୨୦୨୨ର ସହ-ଆୟୋଜକ ଥିଲା । ଏହା ରାଜ୍ୟରେ ଫୁଟବଲ ଖେଳକୁ ଏକ ବଡ଼ ପ୍ରୋତ୍ସାହନ ଦେଇଛି । ପିଲାଙ୍କ ମଧ୍ୟରେ ଫୁଟବଲକୁ ପ୍ରୋତ୍ସାହିତ କରିବା ପାଇଁ ୪୩ ହଜାରରୁ ଅଧିକ ଫୁଟବଲ ସାରା ରାଜ୍ୟରେ ସ୍କୁଲ ଛାତ୍ରଛାତ୍ରୀଙ୍କୁ ବଣ୍ଟନ କରାଯାଇଥିଲା ।

୭. ଲଗାତାର ଦୁଇଥର ଏଫ୍.ଆଇ.ଏଚ୍ ପୁରୁଷ ହକି ବିଶ୍ୱକପ୍ ସଫଳତାର ସହ ଆୟୋଜନ କରିଥିବାରୁ ମୁଁ ମୋ ସରକାରଙ୍କୁ ଅଭିନନ୍ଦନ ଜଣାଉଛି । ଉଭୟ ଭୁବନେଶ୍ୱର ଓ ରାଉରକେଲାରେ ଆୟୋଜିତ ପୁରୁଷ ହକି ବିଶ୍ୱକପର ଚଳିତ ସଂସ୍କରଣରେ ବିଭିନ୍ନ ଭିତ୍ତିଭୂମି ସୁବିଧା ସହ ପୂର୍ଣ୍ଣ ୨୦ହଜାର ଦର୍ଶକ ବସିବା ସୁବିଧା ସହିତ ବିଶ୍ୱର ସର୍ବବୃହତ୍ ବିର୍ସା ମୁଣ୍ଡା ହକି ଷ୍ଟାଡିୟମ ରେକର୍ଡ ୧୫ ମାସ ମଧ୍ୟରେ ନିର୍ମାଣ କରାଯାଇଛି । ହକିର ଏହି ପ୍ରମୁଖ କ୍ଷେତ୍ରର ଭିତ୍ତିଭୂମିକୁ ଆହୁରି ସୁଦୃଢ଼ କରିବା ଏବଂ ତୃଣମୂଳ ସ୍ତରରୁ ପ୍ରତିଭାଙ୍କୁ ପ୍ରୋତ୍ସାହିତ କରିବା ପାଇଁ ସିନ୍ଥେଟିକ ଟର୍ଫ ସୁବିଧା ସହିତ ୨୦ଟି

ହକି ପ୍ରଶିକ୍ଷଣ କେନ୍ଦ୍ର ନିର୍ମାଣ କରାଯାଉଛି । ଆଗାମୀ ସମୟରେ ଶ୍ରେଷ୍ଠ କ୍ରୀଡାବିତ୍ ସୃଷ୍ଟି କରିବା ଏବଂ ରାଜ୍ୟରେ ବିଭିନ୍ନ କ୍ରୀଡ଼ାକୁ ବହୁଳ ଭାବେ ପ୍ରୋତ୍ସାହିତ କରିବା ଦିଗରେ ମୋ ସରକାରଙ୍କ ପ୍ରୟାସ ରାଜ୍ୟର କ୍ରୀଡ଼ା ଭିତ୍ତିଭୂମିରେ ବ୍ୟାପକ ପରିବର୍ତ୍ତନ ଆଣିଛି । ନିଜ ପ୍ରିୟ କ୍ରୀଡ଼ାକୁ ଉପଭୋଗ କରିବା ସହିତ ଓଡିଶାର ଆତିଥେୟତା ସହିତ ନିଜ ରହଣିକୁ ସ୍ମରଣୀୟ କରିବା ପାଇଁ ସାରା ବିଶ୍ୱରୁ ଖେଳାଳି ଓ ପର୍ଯ୍ୟଟକମାନେ ଆମ ରାଜ୍ୟକୁ ବହୁ ସଂଖ୍ୟାରେ ଆସୁଥିବାର ହୃଦୟସ୍ପର୍ଶୀ ଦୃଶ୍ୟ ଅତ୍ୟନ୍ତ ଆନନ୍ଦଦାୟକ ।

୮. ମୋ ସରକାର ଓଡ଼ିଶା ପର୍ଯ୍ୟଟନ ନୀତି ୨୦୨୨ ପ୍ରଣୟନ କରିଛନ୍ତି । ଏହି ନୀତିରେ ସହଣୀୟ ତଥା ଦାୟିତ୍ୱସମ୍ପନ୍ନ ପର୍ଯ୍ୟଟନକୁ ପ୍ରୋତ୍ସାହିତ କରାଯାଇଛି, ଯେଉଁଥିରେ ବିଶେଷ ରୁଚି ପର୍ଯ୍ୟଟନ, ସୁଦୃଢ ପର୍ଯ୍ୟଟନ ଭିତ୍ତିଭୂମି ଏବଂ ଅଜ୍ଞାତ ପର୍ଯ୍ୟଟନ ସ୍ଥଳୀର ବିକାଶ ଏବଂ ପର୍ଯ୍ୟଟନ କ୍ଷେତ୍ରର ଦ୍ରୁତ ଅଭିବୃଦ୍ଧି ଉପରେ ଗୁରୁତ୍ୱ ଦିଆଯାଇଛି । ନୂତନ ନୀତିରେ ପର୍ଯ୍ୟଟନ ଶିଳ୍ପରେ ଘରୋଇ ନିବେଶକୁ ପ୍ରୋତ୍ସାହନ ଦେବା ପାଇଁ ଅତୁଳନୀୟ ଏବଂ ଆକର୍ଷଣୀୟ ଆର୍ଥିକ ଓ ଅଣ-ଆର୍ଥିକ ସୁବିଧା କରାଯାଇଛି । ପର୍ଯ୍ୟଟକଙ୍କୁ ଆକୃଷ୍ଟ କରିବା ପାଇଁ ସ୍ଥାନୀୟ ଜନସାଧାରଣଙ୍କ ଦ୍ୱାରା ପରିଚାଳିତ 'ନେଚର କ୍ୟାମ୍ପ' ଜଙ୍ଗଲ ଉପରେ ନିର୍ଭରଶୀଳ ଲୋକଙ୍କ ଆୟ ପନ୍ଥାକୁ ଆହୁରି ସୁଦୃଢ଼ କରିଛି ।

୯. ସର୍ବୋତ୍କୃଷ୍ଟ ପର୍ଯ୍ୟଟକ ଆବାସ ଭିତ୍ତିଭୂମି ଓ ଆତିଥେୟତା ପ୍ରକଳ୍ପରେ ସାରା ରାଜ୍ୟରେ ପୁଞ୍ଜିନିବେଶ ପାଇଁ ପର୍ଯ୍ୟଟକ ଓ ନିବେଶକମାନଙ୍କୁ ଆକୃଷ୍ଟ କରିବା ଉଦ୍ଦେଶ୍ୟରେ ଅତ୍ୟାଧୁନିକ ପର୍ଯ୍ୟଟନ ଭିତ୍ତିଭୂମି ଏବଂ ବିଶେଷ ରୁଚି ପର୍ଯ୍ୟଟନ ସୁବିଧା ସୃଷ୍ଟି ସହିତ ପର୍ଯ୍ୟଟନ ସ୍ଥଳୀର ସାମଗ୍ରିକ ବିକାଶ ଲକ୍ଷ୍ୟରେ ମୋ ସରକାର ୧୬ଟି ଅଗ୍ରାଧିକାର କ୍ଷେତ୍ରର ସମନ୍ୱିତ ମାଷ୍ଟର ପ୍ଲାନିଂ ହାତକୁ ନେଇଛନ୍ତି । ତତ୍‌ସହିତ, ରାଜ୍ୟର ଆଭ୍ୟନ୍ତରୀଣ ଅଞ୍ଚଳରେ ଲୋକଲୋଚନକୁ ଆସିପାରିନଥିବା ୬୯ଟି ପର୍ଯ୍ୟଟନ ସ୍ଥଳୀକୁ ଚିହ୍ନଟ କରାଯାଇ ସେଗୁଡିକର ବିକାଶ ସହିତ ସେଠାରେ ମୌଳିକ ସୁବିଧା ସୃଷ୍ଟି ଉପରେ ଗୁରୁତ୍ୱ ଦିଆଯାଇଛି ।

୧୦. ନିରନ୍ତର ଗୁଣାତ୍ମକ ଭିତ୍ତିଭୂମି ସୃଷ୍ଟି ଉପରେ ସର୍ବାଧିକ ଗୁରୁତ୍ୱ ଆରୋପ କରି ୨୦୨୨-୨୩ ବର୍ଷରେ ମୋ ସରକାର ମୋଟ ରାଜ୍ୟ ଘରୋଇ ଉତ୍ପାଦର ୫% ରୁ ଅଧିକ ଏଥିପାଇଁ ଆବଣ୍ଟନ କରିଛନ୍ତି । ଏହି ଅଧିକତର ବ୍ୟୟ ବରାଦ ସହିତ ଏହାର ଗୁଣିତକ ପ୍ରଭାବ ଦ୍ରୁତ ଅର୍ଥନୈତିକ ଅଭିବୃଦ୍ଧି ସହିତ କର୍ମଜୀବୀ ଜନସାଧାରଣଙ୍କ ପାଇଁ ନିଯୁକ୍ତି ସୃଷ୍ଟିରେ ସହାୟକ ହୋଇଛି ।

୧୧. ରେଳ ଯୋଗାଯୋଗ ଓ ରେଳ ଭିତ୍ତିଭୂମି ବିକାଶ ଅର୍ଥନୈତିକ କାରବାର ଏବଂ ଅଭିବୃଦ୍ଧିକୁ ତ୍ୱରାନ୍ୱିତ କରିଥାଏ । ଆବଶ୍ୟକ ସ୍ଥଳେ ସାଧନ ଅଭାବ ଭରଣା କରିବା ପାଇଁ ମୋ ସରକାର ଭାରତୀୟ ରେଳବାଇ ସହ ସହଭାଗିତା କରୁଛନ୍ତି । ନୂତନ ରେଳ ଲାଇନ୍ ଏବଂ କରିଡର ନିର୍ମାଣ ପାଇଁ ରେଳ ମନ୍ତ୍ରାଳୟ ଏବଂ ଅନ୍ୟ ମନ୍ତ୍ରାଳୟ ସହିତ ମିଳିତ ଉଦ୍ୟୋଗ, ବିଶେଷ ଉଦ୍ଦେଶ୍ୟ ସାଧନ ମାଧ୍ୟମ ଆରମ୍ଭ କରାଯାଉଛି ଏବଂ ନୂତନ ରେଳ ଲାଇନ ନିର୍ମାଣ ପାଇଁ ମାଗଣାରେ ଜମି ଯୋଗାଇବା ସହିତ ସିଧାସଳଖ ଅର୍ଥ ପ୍ରଦାନ କରାଯାଉଛି ।

୧୨. ପୁରୁଣା ଏବଂ ଅନୁପଯୁକ୍ତ ଯାନଗୁଡ଼ିକୁ ରାସ୍ତାରୁ ହଟାଇ ବାୟୁ ପ୍ରଦୂଷଣ ହ୍ରାସ କରିବା, ଅଣସଂଗଠିତ ଯାନ ରିସାଇକ୍ଲିଂ ଶିଳ୍ପକୁ ପୁନରୁଦ୍ଧାର କରିବା ଏବଂ ଓଡ଼ିଶାରେ ପଞ୍ଜିକୃତ ଯାନ ସ୍କ୍ରାପିଂ ସୁବିଧାକୁ ପ୍ରତିଷ୍ଠାକୁ ପ୍ରୋତ୍ସାହିତ କରିବା ପାଇଁ ମୋ ସରକାର ଓଡ଼ିଶା ମୋଟର ଯାନ (ପଞ୍ଜିକରଣ ଏବଂ ଯାନ ସ୍କ୍ରାପିଂ ସୁବିଧା) ନୀତି-୨୦୨୨ ପ୍ରଣୟନ

କରିଛନ୍ତି । ଜନସାଧାରଣଙ୍କୁ ସେବା ପ୍ରଦାନ ବ୍ୟବସ୍ଥାର ଆଧୁନିକୀକରଣ କରାଯାଇ ଡ୍ରାଇଭିଂ ଲାଇସେନ୍ସ ଏବଂ ପଞ୍ଜିକରଣ ପ୍ରମାଣପତ୍ରର ଡିଜିଟାଲ ପ୍ରଦାନ, ଡିଲରଙ୍କ ପଏଣ୍ଟରେ କାଗଜ ବିହୀନ ଅନଲାଇନ୍ ଯାନ ପଞ୍ଜିକରଣ ବ୍ୟବସ୍ଥା ପ୍ରଚଳନ ଏବଂ ଆର.ଟି.ଓ. କାର୍ଯ୍ୟାଳୟରେ ସ୍ମାର୍ଟ କ୍ୟୁ ମ୍ୟାନେଜମେଣ୍ଟ ଭଳି ଅନେକ ପଦକ୍ଷେପ ନିଆଯାଇଛି ।

୧୩. ସାମୁଦ୍ରିକ ପରିବେଶର ସାମଗ୍ରିକ ବିକାଶ ଏବଂ ଅଣପ୍ରମୁଖ ବନ୍ଦର ଓ ଆଭ୍ୟନ୍ତରୀଣ ଜଳପଥର ସମନ୍ୱିତ ବିକାଶ, ଘରୋଇ ପୁଞ୍ଜିନିବେଶକୁ ପ୍ରୋତ୍ସାହନ ଏବଂ ରୋଜଗାର ସୃଷ୍ଟି ପାଇଁ ମୋ ସରକାର ଓଡ଼ିଶା ବନ୍ଦର ନୀତି-୨୦୨୨ ପ୍ରଣୟନ କରିଛନ୍ତି । ବର୍ତ୍ତମାନ ରାଜ୍ୟରେ ଧାମରା ଓ ଗୋପାଳପୁର ଠାରେ ଦୁଇଟି ଅଣପ୍ରମୁଖ ବନ୍ଦର କାର୍ଯ୍ୟକ୍ଷମ ରହିଛି । ଗତ ୫ ବର୍ଷରେ ଦୁଇଟି ବନ୍ଦରରୁ ମୋଟ ୭୪୨ କୋଟି ଟଙ୍କାର ରାଜସ୍ୱ ସଂଗ୍ରହ କରାଯାଇଛି । ଆଉ ଦୁଇଟି ଅଣ-ପ୍ରମୁଖ ବନ୍ଦର ସୁବର୍ଣ୍ଣରେଖା ଓ ଅସ୍ତରଙ୍ଗ ପାଇଁ ଜମି ଅଧିଗ୍ରହଣ କାର୍ଯ୍ୟ ଚାଲିଛି ।

୧୪. ବେସାମରିକ ବିମାନ ଚଳାଚଳକୁ ଆହୁରି ଉନ୍ନତ କରିବା ସହିତ ଅଧିକ ଉପଯୋଗୀ ବ୍ୟବସାୟିକ ବାତାବରଣ ସୃଷ୍ଟି କରିବା ପାଇଁ ଓଡ଼ିଶା ବେସାମରିକ ବିମାନ ଚଳାଚଳ ନୀତି-୨୦୨୨ ପ୍ରଣୟନ କରାଯାଇଛି । ଏହି ୫ ବର୍ଷିଆ ନୀତି ବିମାନ ଚଳାଚଳ କ୍ଷେତ୍ରରେ ଲୁକ୍କାୟିତ ସମ୍ଭାବନାକୁ ଉନ୍ମୋଚନ କରିବ ଏବଂ ନିଯୁକ୍ତି ସୃଷ୍ଟି କରିବ । ଦୁବାଇ, ସିଙ୍ଗାପୁର ଓ ବ୍ୟାଙ୍କକକୁ ସିଧାସଳଖ ବିମାନ ଚଳାଚଳ ପାଇଁ ମୋ ସରକାର ନେଇଥିବା ନିଷ୍ପତ୍ତି ବିଦେଶୀ ଆନୁଷ୍ଠାନିକ ନିବେଶ ଏବଂ ବହୁ ରାଷ୍ଟ୍ରୀୟ କମ୍ପାନୀମାନଙ୍କୁ ଆକୃଷ୍ଟ କରିବ ଏବଂ ଏଥି ସହିତ ଓଡ଼ିଶାବାସୀଙ୍କ ପାଇଁ ଅନ୍ତର୍ଜାତୀୟ ଯାତ୍ରାକୁ ନିରବଚ୍ଛିନ୍ନ ଓ ମିତବ୍ୟୟୀ କରାଇବ ।

୧୫. ବିମାନ ଚଳାଚଳ ପାଇଁ ଲାଇସେନ୍ସ ପାଇବାରେ ଜୟପୁର ରାଜ୍ୟ ମାଲିକାନାରେ ଥିବା ପ୍ରଥମ ବିମାନବନ୍ଦରର ମାନ୍ୟତା ହାସଲ କରିଛି । ବିଜୁ ପଟ୍ଟନାୟକ ଅନ୍ତର୍ଜାତୀୟ ବିମାନବନ୍ଦରରୁ କୋରାପୁଟର ଜୟପୁର ବିମାନବନ୍ଦର ମଧ୍ୟରେ ସିଧାସଳଖ ବିମାନ ସେବା ଆରମ୍ଭ ହୋଇଛି । ରାଉରକେଲା-ଭୁବନେଶ୍ୱର-ରାଉରକେଲା ମଧ୍ୟରେ ବିମାନ ଚଳାଚଳ ଆରମ୍ଭ ହୋଇଥିବାରୁ ହକି ବିଶ୍ୱକପ୍ ୨୦୨୩ର ଖେଳାଳି, ମ୍ୟାଚ୍ ଅଫିସିଆଲ୍ ଓ ଦର୍ଶକଙ୍କୁ ବିମାନ ଉଡ଼ାଣ ସୁବିଧା ଯୋଗାଇ ଦିଆଯାଇଛି । ପୁରୀରେ ଶ୍ରୀଜଗନ୍ନାଥ ଅନ୍ତର୍ଜାତୀୟ ବିମାନବନ୍ଦର ନିର୍ମାଣ କାର୍ଯ୍ୟ ଜାରି ରହିଛି । ମୋ ସରକାରଙ୍କ ପ୍ରୟାସରେ ବିଜୁ ବାବୁଙ୍କ ଡାକୋଟା ବିମାନକୁ କୋଲକାତାର ନେତାଜୀ ସୁଭାଷ ଚନ୍ଦ୍ର ବୋଷ ଅନ୍ତର୍ଜାତୀୟ ବିମାନବନ୍ଦରରୁ ସଫଳତାର ସହ ଭୁବନେଶ୍ୱରସ୍ଥିତ ବିଜୁ ପଟ୍ଟନାୟକ ଅନ୍ତର୍ଜାତୀୟ ବିମାନ ବନ୍ଦରକୁ ସ୍ଥାନାନ୍ତର କରାଯାଇ ସର୍ବସାଧାରଣ ଦେଖିବା ପାଇଁ ରଖାଯାଇଛି ।

୧୬. ମୋ ସରକାର ସମଗ୍ର ରାଜ୍ୟରେ ଗୁଣାତ୍ମକ ବିଦ୍ୟୁତ ଭିତ୍ତିଭୂମିକୁ ସର୍ବାଧିକ ପ୍ରାଥମିକତା ଦେଉଛନ୍ତି ଏବଂ ସମସ୍ତଙ୍କୁ ଗୁଣାତ୍ମକ ଓ ଭରସାଯୋଗ୍ୟ ବିଦ୍ୟୁତ ଶକ୍ତି ଯୋଗାଇଦେବାକୁ ପ୍ରତିଶ୍ରୁତିବଦ୍ଧ । ଗତ ୨୦ ବର୍ଷ ମଧ୍ୟରେ ଉତ୍ପାଦନ କ୍ଷମତା ବୃଦ୍ଧି ସହିତ ପ୍ରସାରଣ ଏବଂ ବିତରଣ ଭିତ୍ତିଭୂମିକୁ ସୁଦୃଢ଼ କରିବା ପାଇଁ ବିପୁଳ ପୁଞ୍ଜିନିବେଶ କରାଯାଇଛି । ୨୦୩୦ ସୁଦ୍ଧା ରାଜ୍ୟରେ ପ୍ରାୟ ୧୧ ହଜାର ମେଗାୱାଟ୍ କ୍ଷମତା ବିଶିଷ୍ଟ ଅକ୍ଷୟ ଶକ୍ତି ପ୍ରକଳ୍ପ ବିକାଶକୁ ପ୍ରୋତ୍ସାହିତ କରିବା ପାଇଁ ଓଡ଼ିଶା ଅକ୍ଷୟ ଶକ୍ତି ନୀତି-୨୦୨୨ ବିଜ୍ଞାପିତ ହୋଇଛି ।

୧୭. ୩୩/୧୧ କେଭିର ୪୬୩ଟି ଗ୍ରୀଡ୍ ସବ୍-ଷ୍ଟେସନ୍ ନିର୍ମାଣ ପାଇଁ ମୋ ସରକାରଙ୍କ ପ୍ରମୁଖ କାର୍ଯ୍ୟକ୍ରମ 'ଓଡ଼ିଶା ବିତରଣ ବ୍ୟବସ୍ଥା ସୁଦୃଢ଼ୀକରଣ ପ୍ରକଳ୍ପ' ଇତିମଧ୍ୟରେ ୪୬୩ଟି ସବ୍‌ଷ୍ଟେସନ ନିର୍ମାଣ ସମ୍ପୂର୍ଣ୍ଣ କରିବା ସହିତ ଏହି

ସବ୍‌ଷ୍ଟେସନ ଗୁଡିକୁ କାର୍ଯ୍ୟକ୍ଷମ କରାଇ ଗ୍ରାମାଞ୍ଚଳରେ ବିଦ୍ୟୁତ ଯୋଗାଣର ଗୁଣବତ୍ତା ଏବଂ ନିର୍ଭରଶୀଳତାରେ ଉନ୍ନତି ଘଟିଛି । ଚତୁର୍ଥ ପର୍ଯ୍ୟାୟରେ ୩୩/୧୧ କେଭିର ଅତିରିକ୍ତ ୯୯ଟି ଗ୍ରୀଡ୍ ସବ୍‌ଷ୍ଟେସନ୍ ସହିତ ଆନୁଷଙ୍ଗିକ ଲାଇନ୍ ଏବଂ ୬୪ଟି ଅଲଗା ସରବରାହ ଲାଇନ୍ ନିର୍ମାଣ ପାଇଁ ମୋ ସରକାର ୧୭୯୬.୭୩ କୋଟି ଟଙ୍କା ଅନୁମୋଦନ କରିଛନ୍ତି । ୨୦୨୩ ଜୁନ୍ ସୁଦ୍ଧା ବାଦ୍ ପଡ଼ିଥିବା ପରିବାରଗୁଡ଼ିକର ବିଦ୍ୟୁତିକରଣ ପାଇଁ 'ବିଜୁ ଗ୍ରାମ ଜ୍ୟୋତି ଯୋଜନା'ରେ ମୋ ସରକାର ୧୮୮.୫୮ କୋଟି ଟଙ୍କା ପ୍ରଦାନ କରିଛନ୍ତି ।

୧୮. 'ସେଣ୍ଟର ଫର୍ ମନିଟରିଂ ଇଣ୍ଡିଆନ୍ ଇକୋନୋମି ରିପୋର୍ଟ' ଅନୁଯାୟୀ ପ୍ରଭାବୀ ନୀତିଗତ ନିଷ୍ପତ୍ତି ଏବଂ ଯୋଜନାଗୁଡ଼ିକର ସଫଳ ରୂପାୟନ ଯୋଗୁଁ ଆମ ରାଜ୍ୟ ବର୍ତ୍ତମାନ ଦେଶର ସର୍ବନିମ୍ନ ବେକାରି ହାର ୦.୯% ସହିତ ଏକ ନମ୍ବର ସ୍ଥାନରେ ରହିଛି । ୨୪,୩୪୧ କୋଟି ଟଙ୍କାରୁ ଅଧିକ ପୁଞ୍ଜିନିବେଶ ସହ ଓଡ଼ିଶା ୫ ଲକ୍ଷରୁ ଅଧିକ ଅଣୁ, କ୍ଷୁଦ୍ର ଓ ମଧ୍ୟମ ଉଦ୍ୟୋଗ ପ୍ରତିଷ୍ଠା କରିଛି । ନୂତନ ଭାବେ ପ୍ରଣୀତ ଅଣୁ, କ୍ଷୁଦ୍ର ଓ ମଧ୍ୟମ ଉଦ୍ୟୋଗ ବିକାଶ ନୀତି–୨୦୨୨ର ଉଦ୍ଦେଶ୍ୟ ହେଉଛି, ଶିଳ୍ପ ଦୃଷ୍ଟିରୁ ପଛୁଆ ଜିଲ୍ଲାଗୁଡ଼ିକରେ ନିଯୁକ୍ତି ସୃଷ୍ଟି ଏବଂ ଅର୍ଥନୈତିକ ଅଭିବୃଦ୍ଧିକୁ ତ୍ୱରାନ୍ୱିତ କରିବା ଲାଗି ଅଣୁ, କ୍ଷୁଦ୍ର ଓ ମଧ୍ୟମ ଉଦ୍ୟୋଗ ଗୁଡ଼ିକ ପାଇଁ ସ୍ୱତନ୍ତ୍ର ପ୍ରୋତ୍ସାହନ ସହିତ ଶିଳ୍ପ ଅଭିବୃଦ୍ଧିକୁ ଆହୁରି ତ୍ୱରାନ୍ୱିତ କରିବା ।

୧୯. ଓଡ଼ିଶା ଲଜିଷ୍ଟିକ୍ସ ପଲିସି–୨୦୨୨ର ଲକ୍ଷ୍ୟ ହେଉଛି ପ୍ରତିଦ୍ୱନ୍ଦ୍ୱିତା, ପରିଚାଳନାଗତ ଦକ୍ଷତା ଏବଂ ସ୍ଥାୟିତ୍ୱ ବୃଦ୍ଧି ପାଇଁ ସମନ୍ୱିତ ପଦ୍ଧତି ସୃଷ୍ଟି କରିବା । ଏହି ନୀତିର ଉଦ୍ଦେଶ୍ୟ ହେଉଛି ସମଗ୍ର ରାଜ୍ୟରେ ଲଜିଷ୍ଟିକ୍ ବ୍ୟବସ୍ଥାର ମ୍ୟାପିଂ, ବିକାଶ ଏବଂ ଅଭିବୃଦ୍ଧି ଘଟାଇବା, ଯୋଗାଣ ଶୃଙ୍ଖଳର ଦକ୍ଷତାରେ ଉନ୍ନତି ଆଣିବା, ଲଜିଷ୍ଟିକ୍ସ କ୍ଷେତ୍ରକୁ କାର୍ବନ ତୀବ୍ରତା ମୁକ୍ତ କରିବା ଏବଂ ଘରୋଇ ପୁଞ୍ଜିନିବେଶ ପ୍ରୋତ୍ସାହିତ କରିବା । ଏହା ବ୍ୟବସାୟ ଓ ବାଣିଜ୍ୟ ପାଇଁ ପସନ୍ଦର ପ୍ରଥମ ସ୍ଥାନ ଭାବେ ରାଜ୍ୟର ସ୍ଥିତିକୁ ସୁଦୃଢ଼ କରିବ । ସେହିପରି ନିଯୁକ୍ତି ବୃଦ୍ଧି ଓ ଅର୍ଥନୈତିକ ଅଭିବୃଦ୍ଧି ପାଇଁ ଓଡ଼ିଶା ପରିଧାନ ଓ ବୈଷୟିକ ବୟନ ଶିଳ୍ପ ନୀତି–୨୦୨୨ ପ୍ରଣୟନ କରାଯାଇଛି ।

୨୦. ୨୦୨୬–୨୭ ସୁଦ୍ଧା ୩.୫ଲକ୍ଷ କୋଟି ଟଙ୍କାର ରପ୍ତାନୀ ଲକ୍ଷ୍ୟ ହାସଲ କରିବା ପାଇଁ ମୋ ସରକାର ନିକଟରେ ରପ୍ତାନୀ ପ୍ରୋତ୍ସାହନ ନୀତି–୨୦୨୨ ପ୍ରଣୟନ କରିଛନ୍ତି, ଯାହା ଦ୍ୱାରା ଓଡ଼ିଶା ଶ୍ରେଷ୍ଠ ୫ଟି ରପ୍ତାନିକାରୀ ରାଜ୍ୟ ମଧ୍ୟରେ ସ୍ଥାନ ପାଇବ । ଏହା ମୂଲ୍ୟଯୁକ୍ତ ରପ୍ତାନୀକୁ ପ୍ରୋତ୍ସାହିତ କରିବା ସହିତ ରପ୍ତାନୀ କ୍ଷେତ୍ରରେ ବିବିଧତା ଆଣିପାରିବ । ଖାଦ୍ୟ ପ୍ରକ୍ରିୟାକରଣ କ୍ଷେତ୍ରରେ ରହିଥିବା ବିପୁଳ ନୂତନ ସମ୍ଭାବନାର ସଦୁପଯୋଗ କରିବା ପାଇଁ ଖାଦ୍ୟ ପ୍ରକ୍ରିୟାକରଣ ନୀତି–୨୦୨୨ ପ୍ରଣୟନ କରାଯାଇଛି । ଏହା ଅନୁସୂଚିତ ଜାତି, ଜନଜାତି, ଭିନ୍ନକ୍ଷମ, ମହିଳା ଓ ବୈଷୟିକ ଉଦ୍ୟୋଗୀଙ୍କୁ ସ୍ୱତନ୍ତ୍ର ପ୍ରୋତ୍ସାହନ ଦେବା ସହ ଶିଳ୍ପ ଦୃଷ୍ଟିରୁ ପଛୁଆ ଜିଲ୍ଲାଗୁଡ଼ିକରେ ଉଦ୍ୟୋଗ ପ୍ରତିଷ୍ଠା ପାଇଁ ପ୍ରୋତ୍ସାହନ ପ୍ରଦାନ କରିବ ।

୨୧. ଶ୍ରମଜୀବୀଙ୍କ ଜୀବିକା ସୁରକ୍ଷିତ କରିବା ପାଇଁ ମଜୁରୀଭିତ୍ତିକ କର୍ମନିଯୁକ୍ତି ଯୋଗାଇବାରେ 'ମହାତ୍ମା ଗାନ୍ଧୀ ଜାତୀୟ ଗ୍ରାମୀଣ କର୍ମ ନିଯୁକ୍ତି ଯୋଜନା' ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥାଏ । ଚଳିତ ବର୍ଷ ରାଜ୍ୟରେ ୨୫କୋଟି ଶ୍ରମ ଦିବସ ସୃଷ୍ଟି କରିବା ଲକ୍ଷ୍ୟ ରଖାଯାଇଛି, ଯେଉଁଥିରେ ୩୦ଲକ୍ଷ ପରିବାର ଓ ୪୬ଲକ୍ଷ ଶ୍ରମଜୀବୀଙ୍କୁ ରୋଜଗାର ମିଳିପାରିବ ।

୨୨. ଆହ୍ୱାନକୁ ସୁଯୋଗରେ ପରିଣତ କରିବା ପାଇଁ ମୋ ସରକାର ପୋଷଣୀୟ ଓ ଜଳବାୟୁ ସହନଶୀଳ ସହରାଞ୍ଚଳ ଭିତ୍ତିଭୂମି ସୃଷ୍ଟି ପାଇଁ ଏକ ସହରାଞ୍ଚଳ ମଜୁରୀ ନିଯୁକ୍ତି ଉପକ୍ରମ 'ମୁକ୍ତା' ଆରମ୍ଭ କରିଛନ୍ତି । ମୋ ସରକାର ମଜୁରିଭିତ୍ତିକ ନିଯୁକ୍ତି ଏବଂ ଗୋଷ୍ଠୀ ସମ୍ପତ୍ତି ସୃଷ୍ଟି ପାଇଁ ୫୦୦କୋଟି ଟଙ୍କା ଖର୍ଚ୍ଚ କରିସାରିଛନ୍ତି । ଏହାବ୍ୟତୀତ, ମୋ ସରକାର 'ମୁକ୍ତା' ଯୋଜନାରେ ୭୦୦କୋଟି ଟଙ୍କା ବିନିଯୋଗରେ ୬,୩୨୦ଟି ସହରାଞ୍ଚଳ ଭିତ୍ତିଭୂମି ପ୍ରକଳ୍ପ ଆରମ୍ଭ କରିଛନ୍ତି ଏବଂ ତାହାକୁ ଯଥା ସମୟରେ ସମ୍ପୂର୍ଣ୍ଣ କରିବା ପାଇଁ ପଦକ୍ଷେପ ଗ୍ରହଣ କରିଛନ୍ତି । 'ମୁକ୍ତା' ବିଶ୍ୱସ୍ତରୀୟ ମାନ୍ୟତା ଲାଭ କରିବା ସହିତ ଗୁଆଙ୍ଗଝୋ ଆୱାର୍ଡ ଫର୍ ଅର୍ବାନ୍ ଇନୋଭେସନ୍-୨୦୨୧ ଏବଂ ସମ୍ମାନଜନକ ୱାର୍ଲ୍ଡ ରିସୋର୍ସେସ୍ ଇନଷ୍ଟିଚ୍ୟୁଟ୍ ଆୱାର୍ଡ ୨୦୨୧-୨୨ ପୁରସ୍କାର ଲାଭ କରିଛି ।

୨୩. ଆମର କାରିଗର ଏବଂ ବୁଣାକାରମାନଙ୍କ କାରିଗରୀ ଦେଶର ସର୍ବଶ୍ରେଷ୍ଠ ମାନଙ୍କ ମଧ୍ୟରେ ଅନ୍ୟତମ । ମାସିକ ସାମାଜିକ ସୁରକ୍ଷା ସହାୟତା ପାଇବା ପାଇଁ ୬୦ ବର୍ଷରୁ ଅଧିକ ବୟସର ୧,୩୯୬ ବୁଣାକାରଙ୍କୁ ବରିଷ୍ଠ ବୁଣାକାର ସହାୟତା ଯୋଜନାରେ ଅନ୍ତର୍ଭୁକ୍ତ କରାଯାଇଛି, ୨୯୨ ବୁଣାକାରଙ୍କୁ କାର୍ଯ୍ୟଶାଳା ସହିତ ବାସଗୃହ, ୬,୫୧୫ ବୁଣାକାରଙ୍କୁ ୧୦୦ ମିଟର କଂକ୍ରିଟ ଖାତ ପ୍ରଦାନ କରାଯାଇଛି ଏବଂ ୧୯୦ ବୁଣାକାରଙ୍କୁ ଆର୍ଥିକ ସହାୟତା ସହିତ ଦକ୍ଷତା ବିକାଶ ପ୍ରଶିକ୍ଷଣ କାର୍ଯ୍ୟକ୍ରମରେ ଅନ୍ତର୍ଭୁକ୍ତ କରାଯାଇଛି । 'ମୁଖ୍ୟମନ୍ତ୍ରୀ ବୟନ ଜ୍ୟୋତି ଯୋଜନା'ରେ ୫,୪୨୧ ବୁଣାକାରଙ୍କୁ ୧୦ କୋଟି ଟଙ୍କାର ଆର୍ଥିକ ସହାୟତା ପ୍ରଦାନ କରାଯାଇଛି । ମୋ ସରକାର ରାଜ୍ୟରେ ହସ୍ତତନ୍ତ ଏବଂ ହସ୍ତଶିଳ୍ପର ସମୃଦ୍ଧ ପରମ୍ପରା ବିଷୟରେ ସମ୍ୟକ ଭାବରେ ଅବଗତ ଅଛନ୍ତି ଏବଂ ଏହି କ୍ଷେତ୍ରର ସାମଗ୍ରିକ ବିକାଶ ପାଇଁ ନିର୍ଦ୍ଦିଷ୍ଟ କାର୍ଯ୍ୟକ୍ରମମାନ ଆରମ୍ଭ କରୁଛନ୍ତି ।

୨୪. କଟକର ରୁପା ତାରକସି, କଣ୍ଟିଲୋର କଂସା ଓ ପିତଳ କାରୁକାର୍ଯ୍ୟ ଏବଂ କେନ୍ଦ୍ରାପଡ଼ାର କାଇଁଚ ଘାସ କାରୁକାର୍ଯ୍ୟର ଭୌଗୋଳିକ ସୂଚକାଙ୍କ (ଜି.ଆଇ.) ପଞ୍ଜିକରଣ ପାଇଁ ଭୌଗୋଳିକ ସୂଚକାଙ୍କ ନିବନ୍ଧକଙ୍କ ନିକଟରେ ଆବେଦନ କରାଯାଇଛି । ବେଲଗୁଣ୍ଠାର ନମନୀୟ ପିତଳ ମାଛ ଏବଂ ବରପାଲିର ଟେରାକୋଟା ଟାଇଲ୍‌ର ଜି.ଆଇ. ପଞ୍ଜୀକରଣ ପାଇଁ ମଧ୍ୟ ପଦକ୍ଷେପ ନିଆଯାଇଛି ।

୨୫. କୃଷି ଓ ଏହାର ଆନୁଷଙ୍ଗିକ କ୍ଷେତ୍ର ଆମ ରାଜ୍ୟର ସର୍ବବୃହତ୍ ନିଯୁକ୍ତି ପ୍ରଦାନକାରୀ କ୍ଷେତ୍ର ଏବଂ ରାଜ୍ୟର ଅଭିବୃଦ୍ଧି ଏବଂ ଜନସାଧାରଣଙ୍କ ସାମାଜିକ-ଅର୍ଥନୈତିକ ବିକାଶର ଚାବିକାଠି ଅଟେ । ଏଣୁ ମୋ ସରକାର ଏକ ବିଶଦ୍ ତଥା ପୋଷଣୀୟ ରାଜ୍ୟ କୃଷି ନୀତି ସମର୍ଥିତ ବିଭିନ୍ନ ପଦକ୍ଷେପ ମାଧ୍ୟମରେ ଏହି କ୍ଷେତ୍ରର ବିକାଶ ଉପରେ ବିଶେଷ ଗୁରୁତ୍ୱ ଦେଉଛନ୍ତି । ପୃଥକ କୃଷି ବଜେଟ୍, ଉତ୍ସର୍ଗୀକୃତ କୃଷି କ୍ୟାବିନେଟ୍, '5T' ଏବଂ 'ମୋ ସରକାର' ଉପକ୍ରମରେ ସେବାଗୁଡ଼ିକର ଅନ୍ତର୍ଭୁକ୍ତିକରଣ ଭଳି ଉଲ୍ଲେଖନୀୟ ପଦକ୍ଷେପ ରାଜ୍ୟରେ ଏହି କ୍ଷେତ୍ର ପାଇଁ ସମ୍ବଳ ଆବଣ୍ଟନରେ ଅଗ୍ରାଧିକାର, ତ୍ୱରିତ ନିର୍ଣ୍ଣୟ ନିର୍ଦ୍ଧାରଣ, କ୍ଷେତ୍ରୀୟ ଅଭିବୃଦ୍ଧି ଏବଂ କୃଷକଙ୍କ କଲ୍ୟାଣକୁ ସୁନିଶ୍ଚିତ କରିଛି ।

୨୬. ଓଡ଼ିଶା ଏବେ ଏକ ବଳକା ଖାଦ୍ୟଶସ୍ୟ ଉତ୍ପାଦନ କରୁଥିବା ରାଜ୍ୟର ମାନ୍ୟତା ଲାଭ କରିଛି । ୨୦୨୦-୨୧ରେ ରାଜ୍ୟର ଖାଦ୍ୟଶସ୍ୟ ଉତ୍ପାଦନ ୧୩୦.୩୯ ଲକ୍ଷ ମେଟ୍ରିକ ଟନ୍ ଛୁଇଁଛି, ଯାହାକି ଗତ ୨୦ ବର୍ଷ ମଧ୍ୟରେ ଦ୍ୱିଗୁଣିତ ହୋଇଛି । ସେହିପରି ଓଡ଼ିଶାରେ ଧାନ ଉତ୍ପାଦନ ହେକ୍ଟର ପିଛା ସର୍ବକାଳୀନ ସର୍ବାଧିକ ସ୍ତର ୨,୭୩୦ କିଲୋଗ୍ରାମ ଛୁଇଁଥିବା ବେଳେ ୨୦ ବର୍ଷ ମଧ୍ୟରେ ଏହା ୨.୫ ଗୁଣ ବୃଦ୍ଧି ପାଇଛି ।

୨୭. ମାଣ୍ଡିଆ ସହିତ ଅନ୍ୟାନ୍ୟ ବାଜରା ଜାତୀୟ ଫସଲକୁ ବିଶ୍ୱସ୍ତରରେ ପ୍ରୋତ୍ସାହିତ କରିବା ପାଇଁ ଭାରତର ପ୍ରଥମ ରାଜ୍ୟ ଭାବେ ଓଡ଼ିଶା ନଭେମ୍ବର ୧୦ ତାରିଖକୁ ମିଲେଟ୍ ଦିବସ ଭାବରେ ପାଳନ କରୁଛି । ଆନ୍ତର୍ଜାତିକ ମିଲେଟ୍ ବର୍ଷ ୨୦୨୩ ଉପରେ ମେକ୍ ଇନ୍ ଓଡ଼ିଶା କନକ୍ଲେଭ, ୨୦୨୨ରେ ପୂର୍ବାଭାଷ ଉଦ୍‌ଘାଟନ କରିବାରେ ଓଡ଼ିଶା ହିଁ ପ୍ରଥମ ରାଜ୍ୟ ଥିଲା । ମୁଁ ଏକଥା ଗର୍ବର ସହିତ ମନେପକାଇ ଦେବାକୁ ଚାହିଁବି ଯେ ମୋ ସରକାର ୨୦୧୭ ମସିହାରୁ ହିଁ ‘ଓଡିଶା ମିଲେଟ୍ସ ମିଶନ’ ଶୁଭାରମ୍ଭ କରିସାରିଛନ୍ତି । ରାଜ୍ୟରେ ମିଲେଟ୍ ଉତ୍ପାଦନ ଓ ପ୍ରୋତ୍ସାହନକୁ ସୁଦୃଢ଼ କରିବା ପାଇଁ ମୋ ସରକାରଙ୍କ ‘ମିଲେଟ୍ ମିଶନ’ ନୀତି ଆୟୋଗଙ୍କ ପ୍ରଶଂସା ଲାଭ କରିଛି । ଆଫ୍ରିକା ଓ ଅନ୍ୟାନ୍ୟ ଦେଶରେ ଏହି ମଡେଲର ଅଧ୍ୟୟନ ଓ ଅନୁସରଣ ପାଇଁ ‘ଓଡ଼ିଶା ମିଲେଟ୍ ମିଶନ’ ସହ ମିଳିତ ଜାତିସଂଘ–ବିଶ୍ୱ ଖାଦ୍ୟ କାର୍ଯ୍ୟକ୍ରମ ବୁଝାମଣାପତ୍ର ସ୍ୱାକ୍ଷର କରିଛି । ଏହି ସବୁ ପ୍ରୟାସ ପାଇଁ ଆଇ.ସି.ଏ.ଆର–ଆଇ.ଆଇ.ଏମ.ଆର ଏବଂ ଏଫ୍.ଏ.ଓ ଦ୍ୱାରା ଓଡ଼ିଶାକୁ ଲଗାତାର ଦୁଇ ବର୍ଷ ଧରି ‘ପୋଷକ ଅନାଜ ପୁରସ୍କାର’ ଅନ୍ତର୍ଗତ ‘ଶ୍ରେଷ୍ଠ ମିଲେଟ୍ ପ୍ରୋତ୍ସାହନକାରୀ ରାଜ୍ୟ’ର ମାନ୍ୟତା ମିଳିଛି ।

୨୮. ‘କାଳିଆ’ ଯୋଜନାରେ ବର୍ତ୍ତମାନ ସୁଦ୍ଧା ୪୧.୦୮ ଲକ୍ଷ କ୍ଷୁଦ୍ର ଓ ନାମମାତ୍ର ଚାଷୀ ଏବଂ ୧୮.୬୯ ଲକ୍ଷ ଭୂମିହୀନ କୃଷି ପରିବାରଙ୍କୁ ସହାୟତା ପ୍ରଦାନ କରାଯାଇଛି । ‘କାଳିଆ’ ଯୋଜନାରେ ଅନ୍ତର୍ଭୁକ୍ତ ହିତାଧିକାରୀ ଚାଷୀଙ୍କ ନିୟମାନୁଯାୟୀ ଯୋଗ୍ୟ ବିବେଚିତ ପିଲାଙ୍କ ଉଚ୍ଚଶିକ୍ଷା ପାଇଁ ଛାତ୍ରବୃତ୍ତି ପ୍ରଦାନ କରିବା ଉଦ୍ଦେଶ୍ୟରେ ୨୦୨୧–୨୨ରେ ଆରମ୍ଭ ହୋଇଥିବା ‘କାଳିଆ ସ୍କଲାରସିପ୍ ଯୋଜନା’ରେ ଏ ପର୍ଯ୍ୟନ୍ତ ୭୬୫ ଜଣ ଛାତ୍ରଛାତ୍ରୀଙ୍କୁ ଅନ୍ତର୍ଭୁକ୍ତ କରାଯାଇଛି।

୨୯. ୪୦ରୁ ଅଧିକ ଜାତୀୟକରଣ ଏବଂ ବେସରକାରୀ ବ୍ୟାଙ୍କ ଦ୍ୱାରା କୃଷକ ଏବଂ କୃଷି ଉଦ୍ୟୋଗୀମାନଙ୍କୁ ପ୍ରଦାନ କରାଯାଉଥିବା ୩୦୦ରୁ ଅଧିକ ରକମର ମିଆଦୀ ଋଣର ଏକକ ପରିଚାଳନା ପାଇଁ ‘କୃଷି ଋଣ ପାଇଁ ସରଳୀକୃତ ଆବେଦନ’ ଋଣ ପୋର୍ଟାଲ ଆରମ୍ଭ କରିବାରେ ଓଡ଼ିଶା ହେଉଛି ଦେଶର ପ୍ରଥମ ରାଜ୍ୟ ।

୩୦. ଭାଗଚାଷୀ ଏବଂ ବିଶେଷକରି ଭୂମିହୀନ କୃଷକ, ଯେଉଁମାନେ କୃଷକ ସମୁଦାୟର ଏକ ବଡ଼ ଅଂଶ ମାତ୍ର ଆନୁଷ୍ଠାନିକ ଋଣ ବ୍ୟବସ୍ଥାରୁ ସବୁବେଳେ ବଞ୍ଚିତ ହୋଇଥାନ୍ତି, ସେମାନଙ୍କୁ ନାବାର୍ଡ ସହଯୋଗିତାରେ ‘ବଳରାମ’ ଯୋଜନାରେ ଅନ୍ତର୍ଭୁକ୍ତ କରାଯାଇଛି ।

୩୧. ସହଜ କୃଷି ବ୍ୟବସାୟ ପ୍ରକ୍ରିୟା ମାଧ୍ୟମରେ କୃଷି ଉଦ୍ୟୋଗକୁ ପ୍ରୋତ୍ସାହିତ କରିବା ପାଇଁ ୨୦୧୮ ମସିହାରୁ ‘ମୁଖ୍ୟମନ୍ତ୍ରୀ କୃଷି ଉଦ୍ୟୋଗ ଯୋଜନା’ ଆରମ୍ଭ କରିବାରେ ଓଡ଼ିଶା ଏକ ଅଗ୍ରଣୀ ରାଜ୍ୟ । ଏହାକୁ କାର୍ଯ୍ୟକାରୀ କରିବା ପାଇଁ ଆପିକଲ ହେଉଛି ରାଜ୍ୟର ପ୍ରମୁଖ ସଂସ୍ଥା । ଡିସେମ୍ବର ୨୦୨୨ ସୁଦ୍ଧା ୫,୩୬୮ଟି ବ୍ୟବସାୟିକ କୃଷି ଉଦ୍ୟୋଗ ପ୍ରସ୍ତାବ ଅନ୍‌ଲାଇନ୍‌ରେ ପଞ୍ଜୀକୃତ ହୋଇଛି, ଯାହା କାର୍ଯ୍ୟକାରୀ ହେବାର ବିଭିନ୍ନ ପର୍ଯ୍ୟାୟରେ ରହିଛି ଏବଂ ବର୍ତ୍ତମାନ ସୁଦ୍ଧା ୮୫୮ଟି କୃଷି ଉଦ୍ୟୋଗକୁ ଏହି ଯୋଜନା ଅଧୀନରେ ୧୨୭କୋଟି ଟଙ୍କାର ପ୍ରୋତ୍ସାହନ ପ୍ରଦାନ କରାଯାଇଛି ।

୩୨. ୨୦୨୨ ଖରିଫ ଋତୁ ପାଇଁ ଫସଲ ଋଣ ପ୍ରଦାନ ଲକ୍ଷ୍ୟ ୯,୦୦୦ କୋଟି ଟଙ୍କା ଥିବା ବେଳେ ସମବାୟ ବ୍ୟାଙ୍କ ଏବଂ ସମବାୟ ସମିତି ଗୁଡ଼ିକ ୧୮ ଲକ୍ଷ କୃଷକଙ୍କୁ ୮,୭୧୧ କୋଟି ଟଙ୍କା ପ୍ରଦାନ କରିଛନ୍ତି, ଯାହା ଧାର୍ଯ୍ୟ ଲକ୍ଷ୍ୟର ୯୭% । ସମବାୟ ବ୍ୟାଙ୍କଗୁଡ଼ିକ ଦ୍ୱାରା ଗତ ବର୍ଷର ରବି ଫସଲ ଋଣ ପ୍ରଦାନ ଲକ୍ଷ୍ୟ ୬,୫୦୦ କୋଟି ଟଙ୍କା ଥିଲାବେଳେ ୨୦୨୨–୨୩ ରବି ଋତୁ ପାଇଁ ୭,୫୦୦ କୋଟି ଟଙ୍କାର ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି ।

୩୩. ବିଗତ ଦୁଇ ଦଶନ୍ଧିରେ ପ୍ରାଣୀସମ୍ପଦ ପାଳନ ଏବଂ ମତ୍ସ୍ୟଚାଷ ଆମର କୃଷକମାନଙ୍କ ଆୟ ବୃଦ୍ଧିରେ ବେଶ୍ ସହାୟକ ହୋଇଛି । ମୋ ସରକାର ଏହି ଆନୁଷଙ୍ଗିକ କ୍ଷେତ୍ରଗୁଡ଼ିକୁ ଆମର କୃଷକ, ମହିଳା ସ୍ୱୟଂ ସହାୟକ ଗୋଷ୍ଠୀ ଏବଂ ଉଦ୍ୟୋଗୀମାନଙ୍କ ପାଇଁ ଭବିଷ୍ୟତର 'ଅଭିବୃଦ୍ଧିକାରୀ କ୍ଷେତ୍ର' ଭାବରେ ଚିହ୍ନଟ କରିଛନ୍ତି ।

୩୪. ମତ୍ସ୍ୟ ଉତ୍ପାଦନରେ ଆତ୍ମନିର୍ଭରଶୀଳତା ହାସଲ କରିବା ପାଇଁ ରାଜ୍ୟ ସରକାର ବୃହତ୍ ଓ ମଧ୍ୟମ ଜଳଭଣ୍ଡାରର ୧% ଜଳରେ ବ୍ୟବସାୟିକ କେଜ୍ ଆକ୍ୱା କଲ୍‌ଚର୍ ପ୍ରଚଳନ କରିବାକୁ ଘରୋଇ ଉଦ୍ୟୋଗୀଙ୍କୁ ପ୍ରୋତ୍ସାହିତ କରିଛନ୍ତି । ଏହି ଉପାୟରେ ବାର୍ଷିକ ଅତିରିକ୍ତ ୧.୨୫ ଲକ୍ଷ ମେଟ୍ରିକ ଟନ୍ ମତ୍ସ୍ୟ ଉତ୍ପାଦନ ବୃଦ୍ଧି କରିବା ଲକ୍ଷ୍ୟ ରଖାଯାଇଛି । ଏହି ଉପକ୍ରମରେ ହୀରାକୁଦ ଜଳଭଣ୍ଡାରରେ କେଜ୍ କଲ୍‌ଚର୍ ପାଇଁ ୭୬ ଜଣ ଉଦ୍ୟୋଗୀଙ୍କୁ ୧୦୪ଟି ସବ୍ ଜୋନ୍ ଲିଜ୍ ଦିଆଯାଇଛି ।

୩୫. ଚିଙ୍ଗୁଡ଼ି ଏବଂ ମାଛ ଚାଷ ପାଇଁ ମୋ ସରକାର ସ୍ୱଳ୍ପ ଜମି ଥିବା କୃଷକ ଏବଂ ଉଦ୍ୟୋଗୀମାନଙ୍କ ନିମନ୍ତେ ବାୟୋ-ଫ୍ଲୋକ୍ ଭିତ୍ତିକ ଚାଷ ପ୍ରଣାଳୀ ପ୍ରଚଳନ କରିଛନ୍ତି । ସଘନ ମଧୁର ଜଳ ମାଛ ଚାଷ ସମ୍ପ୍ରସାରଣ କରିବା ଉଦ୍ଦେଶ୍ୟରେ ମୋ ସରକାର 'ମତ୍ସ୍ୟ ପୋଖରୀ ଯୋଜନା' ଭଳି ସବ୍‌ସିଡି ଭିତ୍ତିକ କାର୍ଯ୍ୟକ୍ରମ ଅଧୀନରେ ନୂତନ ମାଛ ପୋଖରୀ ସୃଷ୍ଟି କରିବା ପାଇଁ କୃଷକମାନଙ୍କୁ ପ୍ରୋତ୍ସାହିତ କରୁଛନ୍ତି । ଆହୁରି ମଧ୍ୟ ପଞ୍ଚାୟତ ପୋଖରୀକୁ ମହିଳା ସ୍ୱୟଂ ସହାୟକ ଗୋଷ୍ଠୀମାନଙ୍କୁ ମତ୍ସ୍ୟ ଚାଷ ଉଦ୍ଦେଶ୍ୟରେ ଦୀର୍ଘମିଆଦୀ ସୂତ୍ରରେ ଲିଜ୍ ଦିଆଯିବା ପାଇଁ ଉଦାର ନୀତି ଅନୁସରଣ ଫଳରେ ଏହା ଜିଲ୍ଲାମାନଙ୍କରେ ବୈଜ୍ଞାନିକ ପଦ୍ଧତିରେ ମାଛ ଚାଷକୁ ବ୍ୟାପକ କରିବାରେ ବେଶ୍ ସହାୟକ ହୋଇଛି ।

୩୬. ଅଲିଭ୍ ରିଡଲେ କଇଁଛଙ୍କ ସଂରକ୍ଷଣ ଏବଂ ପ୍ରଜନନ ପାଇଁ ପ୍ରତିବର୍ଷ ନଭେମ୍ବରରୁ ମଇ ମାସ ପର୍ଯ୍ୟନ୍ତ ଦେବୀ ନଦୀ ମୁହାଣ, ଋଷିକୁଲ୍ୟା ଏବଂ ଧାମରା ନଦୀ ମୁହାଣରେ ଲାଗୁ ହେଉଥିବା ମାଛ ଧରା ନିଷେଧାଦେଶ ଦ୍ୱାରା ପ୍ରଭାବିତ ୧୫ ହଜାର ମତ୍ସ୍ୟଜୀବୀ ପରିବାରର ଜୀବିକା ସହାୟତା ବୃଦ୍ଧି କରାଯାଇଛି । ଭିତରକନିକା ସାମୁଦ୍ରିକ ବନ୍ୟପ୍ରାଣୀ ଅଭୟାରଣ୍ୟରେ ମଧ୍ୟ ବର୍ଷତମାମ ମାଛ ଧରିବା ଉପରେ କଟକଣା ରହିଛି । ୨୦୨୨-୨୩ରୁ ଏହି ସହାୟତାକୁ ପରିବାର ପିଛା ୭,୫୦୦ ଟଙ୍କାରୁ ୧୫,୦୦୦ ଟଙ୍କାକୁ ବୃଦ୍ଧି କରାଯାଇଛି ।

୩୭. ଅଣ୍ଡା ଉତ୍ପାଦନରେ ଆତ୍ମନିର୍ଭରଶୀଳତା ହାସଲ କରିବା ପାଇଁ 'ମୁଖ୍ୟମନ୍ତ୍ରୀ କୃଷି ଉଦ୍ୟୋଗ ଯୋଜନା'ରେ ସର୍ବନିମ୍ନ ୧୦,୦୦୦ ଅଣ୍ଡାଦିଆ କୁକୁଡ଼ା କ୍ଷମତା ବିଶିଷ୍ଟ ବ୍ୟବସାୟିକ ୟୁନିଟ୍ ସ୍ଥାପନ କରିବା ପାଇଁ ନୂତନ ଉଦ୍ୟୋଗୀମାନଙ୍କୁ ପ୍ରୋତ୍ସାହିତ କରାଯାଉଛି, ଯେଉଁଥିରେ ସର୍ବାଧିକ ୫୦ ଲକ୍ଷ ଟଙ୍କା ପର୍ଯ୍ୟନ୍ତ କିମ୍ବା ଶତକଡା ୪୦ ରୁ ୫୦ ପ୍ରତିଶତ ସବ୍‌ସିଡି ପ୍ରଦାନ କରାଯାଉଛି । ମୋ ସରକାର ମଧ୍ୟ ରାଜ୍ୟରେ ବ୍ରଏଲର କୁକୁଡ଼ା ଚାଷକୁ କ୍ରମାଗତ ଭାବେ ପ୍ରୋତ୍ସାହିତ କରୁଛନ୍ତି । ଚଳିତ ବର୍ଷ ୬,୫୦୦ ବ୍ୟକ୍ତିଗତ ଉଦ୍ୟୋଗୀ ଏବଂ ୩,୦୦୦ ମହିଳା ସ୍ୱୟଂ ସହାୟକ ଗୋଷ୍ଠୀଙ୍କୁ କ୍ଷୁଦ୍ରାକାର ବ୍ରଏଲର ୟୁନିଟ୍ ପ୍ରତିଷ୍ଠା ପାଇଁ ସହାୟତା ଯୋଗାଇ ଦେବାକୁ ଲକ୍ଷ୍ୟ ରଖାଯାଇଛି ।

୩୮. ରାଜ୍ୟରେ ଦୁଗ୍ଧ ଉତ୍ପାଦନ ବୃଦ୍ଧି ପାଇଁ ମୋ ସରକାର କୃତ୍ରିମ ଗର୍ଭଧାରଣ ପଦ୍ଧତି ମାଧ୍ୟମରେ ଉଚ୍ଚମାନର ଜେନେଟିକ କ୍ଷମତା ଥିବା ଅଧିକ ମାଈ ବାଛୁରୀ ଜନ୍ମ ବୃଦ୍ଧି କରିବା ଏବଂ ଅଣ୍ଡିରା ବାଛୁରୀ ପ୍ରଜନନ ହ୍ରାସ କରିବା

ଉଦ୍ଦେଶ୍ୟରେ ଅତ୍ୟାଧୁନିକ ବୋଭାଇନ୍ ପ୍ରଜନନ ଜ୍ଞାନକୌଶଳ ବ୍ୟବହାର କରିବା ଆରମ୍ଭ କରିଛନ୍ତି । ଖଣି ପ୍ରଭାବିତ ଜିଲ୍ଲାଗୁଡ଼ିକରେ ବ୍ୟବସାୟିକ ଛେଳି ପାଳନ ପାଇଁ ମହିଳା ସ୍ୱୟଂ ସହାୟକ ଗୋଷ୍ଠୀ ଏବଂ ଆଗ୍ରହୀ ଚାଷୀ ମାନଙ୍କୁ ବ୍ୟକ୍ତିଗତ ସ୍ତରରେ କ୍ଷୁଦ୍ର ଛେଳି ପାଳନ ୟୁନିଟ୍ ସ୍ଥାପନ ପାଇଁ ରାଜ୍ୟ ସରକାର ସହାୟତା ଯୋଗାଇ ଦେଉଛନ୍ତି ।

୩୯. ସମନ୍ୱିତ ଜଳସମ୍ପଦ ବିକାଶ, ଜଳ ସଂରକ୍ଷଣ ଏବଂ ସୁଦକ୍ଷ ଜଳ ପରିଚାଳନା ପଦ୍ଧତି ଉପରେ ଗୁରୁତ୍ୱ ଦେଇ ନିର୍ଭରଯୋଗ୍ୟ ଜଳସେଚନ ଯୋଗାଇ ଦେବା ପାଇଁ ମୋ ସରକାର ଆଗ୍ରହୀ । ଭୂପୃଷ୍ଠ ଜଳସଂରକ୍ଷଣ ଏବଂ ଭୂତଳ ଜଳସ୍ତର ବୃଦ୍ଧି ପାଇଁ ମୋ ସରକାର ପ୍ରବହମାନ ଜଳଉତ୍ସରେ ୩୦ଟି ଜଳ ସଂରକ୍ଷଣ ପ୍ରକଳ୍ପ ନିର୍ମାଣ କରୁଥିବା ବେଳେ ଆଉ ୧୬ଟି ନିର୍ମାଣାଧୀନ ରହିଛି । ଏହାବ୍ୟତୀତ, ଭୂତଳ ଜଳ ସମ୍ପଦର ସଂରକ୍ଷଣ ପାଇଁ 'ମୁଖ୍ୟମନ୍ତ୍ରୀ ଆଡିବନ୍ଧ ଯୋଜନା'ରେ ୧୨୮୦ଟି ନୂଆ ଚେକ୍ ଡ୍ୟାମ୍ ମଞ୍ଜୁର କରାଯାଇଛି । ଭୂପୃଷ୍ଠ ଜଳ ବ୍ୟତୀତ ମୋ ସରକାର ବିଭିନ୍ନ ଅଭିନବ ଯୋଜନା ମାଧ୍ୟମରେ ଜଳ ସଂକଟ ଗ୍ରସ୍ତ ଅଞ୍ଚଳରେ ଭୂତଳ ଜଳ ପୁନଃଭରଣ ଉପରେ ଗୁରୁତ୍ୱ ଦେଉଛନ୍ତି ।

୪୦. କୃଷକମାନଙ୍କୁ ଜଳସେଚନ ଯୋଗାଇବା ମୋ ସରକାରଙ୍କ ସର୍ବୋଚ୍ଚ ପ୍ରାଥମିକତା ଅଟେ । ୨୦୨୨-୨୩ରେ ଆମେ ଦେଓ ମଧ୍ୟମ ଜଳସେଚନ ପ୍ରକଳ୍ପ ଏବଂ ମହାନଦୀ ଚିତ୍ରୋତ୍ପଳା ଦ୍ୱୀପାଞ୍ଚଳ ଜଳସେଚନ ପ୍ରକଳ୍ପ ସମ୍ପୂର୍ଣ୍ଣ କରିଛୁ, ଯାହାକି ମୟୂରଭଞ୍ଜ, କେନ୍ଦୁଝର, କେନ୍ଦ୍ରାପଡ଼ା, କଟକ ଏବଂ ଜଗତସିଂହପୁର ଜିଲ୍ଲାର ୧୬୪ଟି ଗ୍ରାମକୁ ଜଳସେଚିତ କରିବ । ଏହା ବ୍ୟତୀତ ସୁବର୍ଣ୍ଣରେଖା ଜଳସେଚନ ପ୍ରକଳ୍ପରୁ ୧୭ ହଜାର ହେକ୍ଟରରୁ ଅଧିକ ଜମିକୁ ଜଳସେଚନ ସୁବିଧା ଯୋଗାଇ ଦିଆଯାଇଛି । ଲୋୟର ସୁକ୍ତେଲ୍, ଗଙ୍ଗାଧର ମେହେର ବୃହତ୍ ଉଠା ଜଳସେଚନ ପ୍ରକଳ୍ପ, କାନୁପୁର ଜଳସେଚନ ପ୍ରକଳ୍ପ ଓ ଆନନ୍ଦପୁର ବ୍ୟାରେଜ ପ୍ରକଳ୍ପର କାର୍ଯ୍ୟକୁ ତ୍ୱରାନ୍ୱିତ କରାଯାଇ ଶୀଘ୍ର ଶେଷ କରିବାକୁ ଲକ୍ଷ୍ୟ ରଖାଯାଇଛି । ଅଧିକରୁ ଅଧିକ ଅଞ୍ଚଳକୁ ଜଳସେଚିତ କରିବା ଉଦ୍ଦେଶ୍ୟରେ ବୃହତ୍ ଓ ମଧ୍ୟମ ଜଳସେଚନ ପ୍ରକଳ୍ପ ବ୍ୟତୀତ ପାର୍ବତୀ ଗିରି ବୃହତ୍ ଉଠା ଜଳସେଚନ ଯୋଜନା, ଗଭୀର ନଳକୂପ, ଗୋଷ୍ଠୀ ଉଠା ଜଳସେଚନ ପ୍ରକଳ୍ପ ଆଦିକୁ ବ୍ୟାପକ ଭାବେ ହାତକୁ ନିଆଯାଇଛି । ଇତି ମଧ୍ୟରେ ଆମେ ୧୯୨ଟି ମେଗା ଲିଫ୍ଟ ପ୍ରକଳ୍ପ, ଏକ ଲକ୍ଷରୁ ଅଧିକ ନଳକୂପ ସମ୍ପୂର୍ଣ୍ଣ କରିଛୁ ଏବଂ ଆଗାମୀ ପାଞ୍ଚ ବର୍ଷ ମଧ୍ୟରେ ଆହୁରି ଏକ ଲକ୍ଷ ଗଭୀର ନଳକୂପ ସ୍ଥାପନ କରିବାକୁ ନିଷ୍ପତ୍ତି ନିଆଯାଇଛି ।

୪୧. ଉପକୂଳବର୍ତ୍ତୀ ବାଲେଶ୍ୱର, ଭଦ୍ରକ, କେନ୍ଦ୍ରାପଡ଼ା ଓ ପୁରୀ ଜିଲ୍ଲାରେ ଲୁଣାବନ୍ଧ ନିର୍ମାଣ ଓ ସୁଦୃଢୀକରଣ ପାଇଁ ମୋ ସରକାର ୭୬୩ କୋଟି ଟଙ୍କା ବ୍ୟୟରେ ୧୯୯ କିଲୋମିଟର ବାତ୍ୟା ପ୍ରତିରୋଧୀ ଲୁଣାବନ୍ଧ ପ୍ରକଳ୍ପ ହାତକୁ ନେଇଛନ୍ତି । ଏହି ପ୍ରକଳ୍ପ ପାଇଁ ଜାତୀୟ ସମୁଦ୍ର ପ୍ରଯୁକ୍ତି ପ୍ରତିଷ୍ଠାନ ବୈଷୟିକ ସହାୟତା ପ୍ରଦାନ କରୁଛନ୍ତି । ଅତି ଭୀଷଣ ସାମୁଦ୍ରିକ ଝଡ଼ ଯୋଗୁଁ ଘଣ୍ଟାପ୍ରତି ୨୫୦ କିଲୋମିଟର ବେଗରେ ପ୍ରବାହିତ ପବନକୁ ଏହି ଲୁଣାବନ୍ଧ ପ୍ରତିରୋଧ କରିପାରିବ । ଏହା ଦ୍ୱାରା ଉପକୂଳବର୍ତ୍ତୀ ଜିଲ୍ଲାଗୁଡ଼ିକର ଲୋକମାନେ ବହୁଳ ଭାବରେ ଉପକୃତ ହେବେ ।

୪୨. 'ପ୍ରତ୍ୟେକ ଜୀବନ ମୂଲ୍ୟବାନ' ଓଡ଼ିଶାର ସ୍ୱାସ୍ଥ୍ୟ କ୍ଷେତ୍ରର ରୂପାନ୍ତରଣ ପାଇଁ ମାର୍ଗଦର୍ଶକ ନୀତି ଓ ପ୍ରାଥମିକତା ହୋଇ ରହିଛି । ମୁଖ୍ୟତଃ ୧୫ରୁ ଅଧିକ ମେଗା ଯୋଜନା ଏବଂ ଯୁଗାନ୍ତକାରୀ 'ବିଜୁ ସ୍ୱାସ୍ଥ୍ୟ କଲ୍ୟାଣ ଯୋଜନା' ସମେତ ସଂଖ୍ୟାଧିକ ଫଳପ୍ରସୂ ସ୍ୱାସ୍ଥ୍ୟସେବା ସୁଦୃଢୀକରଣ ପଦକ୍ଷେପ କାର୍ଯ୍ୟକାରୀ କରାଯିବା ଦ୍ୱାରା ସ୍ୱାସ୍ଥ୍ୟସେବା କ୍ଷେତ୍ରରେ ଓଡ଼ିଶାର ଅଭୂତପୂର୍ବ ଅଗ୍ରଗତି ସମ୍ଭବ ହୋଇପାରିଛି ।

୪୩. ‘ବିଜୁ ସ୍ୱାସ୍ଥ୍ୟ କଲ୍ୟାଣ ଯୋଜନା’ରେ ରାଜ୍ୟର ବିଏସ୍‌କେଓ୍ୱାଇ ସ୍ମାର୍ଟ କାର୍ଡଧାରୀମାନଙ୍କୁ ନିଃଶୁଳ୍କ ଚିକିତ୍ସା ସେବା ଯୋଗାଇବା ପାଇଁ ଦେଶର ୫୦୦ରୁ ଅଧିକ ଘରୋଇ ହସ୍ପିଟାଲକୁ ତାଲିକାଭୁକ୍ତ କରାଯିବ ସହିତ ସାର୍ବଜନୀନ ସ୍ୱାସ୍ଥ୍ୟସେବାର ପୁନର୍ବିନ୍ୟାସ କରାଯାଇଛି । ବର୍ତ୍ତମାନ ଏହି ତାଲିକାଭୁକ୍ତ ଘରୋଇ ହସ୍ପିଟାଲ ଗୁଡ଼ିକରେ ପ୍ରତି ମାସରେ ୭୫ ହଜାର ଗୁରୁତର ଗରିବ ରୋଗୀ ଚିକିତ୍ସିତ ହେଉଥିବା ବେଳେ ଏଥିପାଇଁ ସରକାର ମାସକୁ ୨୦୦ କୋଟି ଟଙ୍କା ବ୍ୟୟ କରୁଛନ୍ତି । ପ୍ରାୟ ୬ ଲକ୍ଷ ହିତାଧିକାରୀ ଇତି ମଧ୍ୟରେ ବିଏସ୍‌କେଓ୍ୱାଇ ସ୍ମାର୍ଟ ହେଲ୍‌ଥ କାର୍ଡ ଜରିଆରେ ୧୨୦୦ କୋଟି ଟଙ୍କାର ସହାୟତା ପାଇସାରିଲେଣି ।

୪୪. ସର୍ବାଧିକ ସଂଖ୍ୟକ ‘ଆଭା’ ଆଇ.ଡି. ସୃଷ୍ଟି କରିଥିବାରୁ ସାର୍ବଜନୀନ ସ୍ୱାସ୍ଥ୍ୟ ସୁରକ୍ଷା ଦିବସ–୨୦୨୨ ଅଭିଯାନ ଅବସରରେ ଓଡ଼ିଶା ପ୍ରଥମ ପୁରସ୍କାର ପାଇଛି । ଆଇ.ଡି. ପ୍ରସ୍ତୁତିରେ ଶ୍ରେଷ୍ଠ ୧୦ଟି ଜିଲ୍ଲା ମଧ୍ୟ ଓଡ଼ିଶାର । ପ୍ରଯୁକ୍ତି ଉପଯୋଗ କରି ଜନସାଧାରଣଙ୍କ କଲ୍ୟାଣ ପାଇଁ ସ୍ୱାସ୍ଥ୍ୟସେବା କ୍ଷେତ୍ରରେ ଅନେକ ଯୁଗାନ୍ତକାରୀ ଉପକ୍ରମ ହାତକୁ ନିଆଯାଇଛି ।

୪୫. ଗର୍ଭବତୀ ଏବଂ ପ୍ରସୂତି ମହିଳା, ପ୍ରଜନନକ୍ଷମ ମହିଳା, କିଶୋର ଏବଂ ଶିଶୁଙ୍କ ସମେତ ପ୍ରାୟ ୧.୩୭ କୋଟି ଲୋକଙ୍କୁ ରକ୍ତହୀନତାରୁ ମୁକ୍ତ କରିବା ପାଇଁ ମୋ ସରକାର ରକ୍ତହୀନତା ମୁକ୍ତ ଲକ୍ଷ୍ୟ ଅଭିଯାନ ‘ଅମ୍ଳାନ’ ଆରମ୍ଭ କରିଛନ୍ତି । ୨୦୩୦ ସୁଦ୍ଧା ‘ମ୍ୟାଲେରିଆ ଶୂନ୍ୟ’ ଲକ୍ଷ୍ୟ ହାସଲ କରିବା ପାଇଁ ମୋ ସରକାର ୨୧ଟି ଜିଲ୍ଲାର ଦୁର୍ଗମ ଅଞ୍ଚଳରେ ମ୍ୟାଲେରିଆ ନିରାକରଣ ଅଭିଯାନ ‘ଦମନ’କୁ ଆଉ ୫ ବର୍ଷ ପାଇଁ ବୃଦ୍ଧି କରି ମ୍ୟାଲେରିଆ ନିରାକରଣ ପଦକ୍ଷେପକୁ ସୁଦୃଢ଼ କରିଛନ୍ତି ।

୪୬. ମୋ ସରକାର କ୍ୟାପିଟାଲ ହସ୍ପିଟାଲ, ଭୁବନେଶ୍ୱରରେ ସ୍ନାତକୋତ୍ତର ଭେଷଜ ବିଜ୍ଞାନ ଓ ଗବେଷଣା ପ୍ରତିଷ୍ଠାନ ଆରମ୍ଭ କରିଛନ୍ତି । ଚଳିତ ଶିକ୍ଷାବର୍ଷରୁ ଏହି ସ୍ନାତକୋତ୍ତର ଭେଷଜ ବିଜ୍ଞାନ ଓ ଗବେଷଣା ପ୍ରତିଷ୍ଠାନରେ ସ୍ନାତକୋତ୍ତର ପାଠ୍ୟକ୍ରମର ୬ଟି ବିଭାଗରେ ଶିକ୍ଷାଦାନ ଆରମ୍ଭ ହୋଇଛି । ପୁରୀ, କେନ୍ଦୁଝର ଓ ସୁନ୍ଦରଗଡ଼ ମେଡିକାଲ କଲେଜରେ ଏମବିବିଏସ୍ ପାଠ୍ୟକ୍ରମ ଆରମ୍ଭ ଓଡ଼ିଶାରେ ସ୍ୱାସ୍ଥ୍ୟସେବା ପାଇଁ ଅଧିକ ଡାକ୍ତରଙ୍କ ଆବଶ୍ୟକତା ପୂରଣ କରିବାରେ ସହାୟକ ହେବ ।

୪୭. କଟକସ୍ଥିତ ଆଚାର୍ଯ୍ୟ ହରିହର ସ୍ନାତକୋତ୍ତର କର୍କଟ ପ୍ରତିଷ୍ଠାନରେ ବର୍ତ୍ତମାନ ରୋଗୀଙ୍କୁ ମାଗଣାରେ ପିଇଟି–ସିଟି ସ୍କାନ୍ ସୁବିଧା ଉପଲବ୍ଧ ହେଉଛି, ଯାହା ଦେଶର ଯେ କୌଣସି ସରକାରୀ ଡାକ୍ତରଖାନାରେ ପ୍ରଥମ । ଗରିବ ରୋଗୀମାନଙ୍କ କର୍କଟ ରୋଗର ଚିକିତ୍ସା ଓ ସେବା କ୍ଷେତ୍ରରେ ଏହା ଅତ୍ୟନ୍ତ ସହାୟକ ହେବ । ରାଜ୍ୟରେ କର୍କଟ ରୋଗ ଚିକିତ୍ସା ସୁବିଧାକୁ ସୁଦୃଢ଼ କରିବା ପାଇଁ ମୋ ସରକାର ୧୦ଟି ଜିଲ୍ଲାରେ କର୍କଟ ଚିକିତ୍ସା ୟୁନିଟ୍ ସ୍ଥାପନ ପାଇଁ ମଧ୍ୟ ଅନୁମୋଦନ କରିଛନ୍ତି, ଯାହା ଓଡ଼ିଶାକୁ ପୂର୍ବାଞ୍ଚଳର ଏକ ଅଗ୍ରଣୀ କର୍କଟ ଚିକିତ୍ସା କ୍ଷେତ୍ରରେ ପରିଣତ କରିବାରେ ବେଶ୍ ସହାୟକ ହେବ ।

୪୮. ନୂଆ ଡାକ୍ତର ଓ ପାରାମେଡିକାଲ୍ ଷ୍ଟାଫ୍ ପଦବୀ ସୃଷ୍ଟି ସହିତ ମେଡିକାଲ୍ ଓ ସ୍ୱାସ୍ଥ୍ୟ ସେବା କ୍ୟାଡରର ପୁନର୍ଗଠନ ଭଳି କେତେକ ଅନୁକୂଳ ପଦକ୍ଷେପ ଯୋଗୁଁ ସମଗ୍ର ରାଜ୍ୟରେ ସ୍ୱାସ୍ଥ୍ୟ ସେବା କ୍ଷେତ୍ରରେ ଯଥେଷ୍ଟ ଉନ୍ନତି

ପରିଲକ୍ଷିତ ହୋଇଛି । ଏଠାରେ ସୂଚନାଯୋଗ୍ୟ ଯେ ୨୦୨୨ ମସିହାରେ ଓଡ଼ିଶା ମେଡିକାଲ ଶିକ୍ଷା ସେବାରେ ୨୦୩ ଜଣ ସହକାରୀ ପ୍ରଫେସର ଯୋଗ ଦେଇଛନ୍ତି । ଏଭଳି ନିଯୁକ୍ତି ଓଡ଼ିଶାର ସ୍ୱାସ୍ଥ୍ୟ ଶିକ୍ଷା ଓ ସ୍ୱାସ୍ଥ୍ୟ ସେବା କ୍ଷେତ୍ରରେ ଆଖିଦୃଶିଆ ଉନ୍ନତି ଆଣିବ ।

୪୯. ସାଧାରଣ ବଣ୍ଟନ ବ୍ୟବସ୍ଥାର ସୁପରିଚାଳନା କ୍ଷେତ୍ରରେ ମୋ ସରକାର ସର୍ବୋତ୍କୃଷ୍ଟ ପ୍ରଦର୍ଶନ କରିଥିବାରୁ ମୁଁ ମୋ ସରକାରଙ୍କୁ ସାଧୁବାଦ ଦେଉଛି । ଭାରତ ସରକାରଙ୍କ ଦ୍ୱାରା ନିକଟରେ ଆୟୋଜିତ ଜାତୀୟ ଖାଦ୍ୟ ସୁରକ୍ଷା ଆଇନର ରାଜ୍ୟ ମାନ୍ୟତା ସୂଚକାଙ୍କରେ ଓଡ଼ିଶା ସମଗ୍ର ଦେଶରେ ଏକ ନମ୍ବର ସ୍ଥାନରେ ରହିଛି ।

୫୦. ମୋ ସରକାର ଜାତୀୟ ଖାଦ୍ୟ ସୁରକ୍ଷା ଆଇନ ଅଧୀନରେ ୯୩.୦୩ ଲକ୍ଷ ପରିବାରର ୩.୨୪ କୋଟି ହିତାଧିକାରୀଙ୍କୁ ଏବଂ ରାଜ୍ୟ ଖାଦ୍ୟ ସୁରକ୍ଷା ଯୋଜନାରେ ୨.୯୨ ଲକ୍ଷ ପରିବାରର ୯.୦୫ ଲକ୍ଷ ହିତାଧିକାରୀଙ୍କୁ ଅନ୍ତର୍ଭୁକ୍ତ କରିଛନ୍ତି । କିଲୋ ପିଛା ୧ ଟଙ୍କା ଦରରେ ବାର୍ଷିକ ୨୨.୫୬ ଲକ୍ଷ ମେଟ୍ରିକ୍ ଟନ୍ ଖାଦ୍ୟଶସ୍ୟ ୧୨,୧୨୯ ଟି ସୁଲଭ ମୂଲ୍ୟ ଦୋକାନ ମାଧ୍ୟମରେ ନିୟମିତ ଭାବେ ବଣ୍ଟନ କରାଯାଉଛି । ଓଡ଼ିଶା ରାଜ୍ୟ ସାଧାରଣ ଯୋଗାଣ ନିଗମ ଲିମିଟେଡ୍ ଦ୍ୱାରା ପରିଚାଳିତ ସମସ୍ତ ୧୫୫ଟି ଖାଦ୍ୟ ସଂରକ୍ଷଣ ଡିପୋକୁ ସ୍ୱୟଂଚାଳିତ କରାଯାଇଛି । ସମସ୍ତ ସୁଲଭ ମୂଲ୍ୟ ଦୋକାନ ଗୁଡିକ ଇଲେକ୍ଟ୍ରୋନିକ ପଏଣ୍ଟ ଅଫ୍ ସେଲ୍ ଉପକରଣ ମାଧ୍ୟମରେ ଆଧାର ପ୍ରମାଣିତ ରେସନ ବଣ୍ଟନ ସ୍ୱୟଂକ୍ରିୟ ଭାବରେ କରୁଛନ୍ତି । ଗ୍ରାମପଞ୍ଚାୟତ ସ୍ତରୀୟ ସୁଲଭ ମୂଲ୍ୟ ଦୋକାନ ଜରିଆରେ ପ୍ରାୟ ୮ ହଜାର ବୃଦ୍ଧ ଓ ଅସହାୟ ହିତାଧିକାରୀଙ୍କୁ ସେମାନଙ୍କ ନିଜ ଘରେ ରାସନ ସାମଗ୍ରୀ ଯୋଗାଇ ଦିଆଯାଉଛି ।

୫୧. ଜୁଲାଇ ୨୦୨୧ରୁ ସାରା ରାଜ୍ୟରେ 'ଗୋଟିଏ ଦେଶ, ଗୋଟିଏ ରାସନ କାର୍ଡ' କାର୍ଯ୍ୟକ୍ରମକୁ ଓଡିଶା କାର୍ଯ୍ୟକାରୀ କରିଛି । ଜାତୀୟ ଖାଦ୍ୟ ସୁରକ୍ଷା ଅଧିନିୟମରେ ସାଧାରଣ ବଣ୍ଟନ ବ୍ୟବସ୍ଥାର ହିତାଧିକାରୀମାନେ ବର୍ତ୍ତମାନ ରାଜ୍ୟ ଭିତରେ ଓ ରାଜ୍ୟ ବାହାରେ ରାସନ କାର୍ଡ ସ୍ଥାନ ପରିବର୍ତ୍ତନର ସୁବିଧା ପାଇପାରୁଛନ୍ତି ଏବଂ ରାଜ୍ୟ ଖାଦ୍ୟ ସୁରକ୍ଷା ଯୋଜନା ହିତାଧିକାରୀମାନେ ରାଜ୍ୟ ଭିତରେ ଯେ କୌଣସି ରିଟେଲରଙ୍କଠାରୁ ସୁବିଧାରେ ସେମାନଙ୍କ ମାସିକ ସାମଗ୍ରୀ ପାଇପାରୁଛନ୍ତି ।

୫୨. ଧାନ ସଂଗ୍ରହଣ ବ୍ୟବସ୍ଥାର ସମ୍ପ୍ରସାରଣ କରିବାରେ ପାଇଁ ଓଡ଼ିଶା ଦ୍ରୁତ ଅଗ୍ରଗତି ହାସଲ କରିଛି । ଗତ ବର୍ଷ ଖରିଫ ବିପଣନ ଋତୁ ୨୦୨୧–୨୨ରେ ୧୫.୧୪ ଲକ୍ଷ ଚାଷୀଙ୍କଠାରୁ ୭୧.୦୩ ଲକ୍ଷ ମେଟ୍ରିକ୍ ଟନ୍ ଧାନ ସଂଗ୍ରହ କରି ଦେଶର ଶ୍ରେଷ୍ଠ ଧାନ ସଂଗ୍ରହକାରୀ ରାଜ୍ୟ ମଧ୍ୟରେ ଓଡିଶା ସ୍ଥାନ ପାଇଥିଲା । ଏଥି ସହିତ, ଚାଉଳ କ୍ଷେତ୍ରରେ ନିଜସ୍ୱ ଚାହିଦା ମେଣ୍ଟାଇବା ସହିତ ରାଜ୍ୟ ବର୍ତ୍ତମାନ କେନ୍ଦ୍ରୀୟ ସାଧାରଣ ବଣ୍ଟନ ବ୍ୟବସ୍ଥାରେ ନିଜର ଉଲ୍ଲେଖନୀୟ ଯୋଗଦାନ ରଖିଛି । ସଂଗ୍ରହଣ ବ୍ୟବସ୍ଥାରେ ସ୍ୱଚ୍ଛତା ଆଣିବା ପାଇଁ ଚଳିତ ଖରିଫ ଧାନ ସଂଗ୍ରହ ଅଭିଯାନ କାର୍ଯ୍ୟକ୍ରମରେ ରାଜ୍ୟର ସମସ୍ତ ୩୦ଟି ଜିଲ୍ଲାରେ ଫସଲ ଉତ୍ପାଦିତ ହେଉଥିବା ଧାନକ୍ଷେତର ସାଟେଲାଇଟ୍ ଚିତ୍ର ଉତ୍ତୋଳନ ଜରିଆରେ କ୍ଷେତରେ ଧାନ ଉତ୍ପାଦନର ସଠିକ ସ୍ଥିତି ନିରୂପଣ କରାଯାଇପାରୁଛି ।

୫୩. ମୋ ସରକାରଙ୍କ ଅନନ୍ୟ ପଦକ୍ଷେପ 'ବସୁଧା' ଗ୍ରାମାଞ୍ଚଳ ଏବଂ ସହରାଞ୍ଚଳର ଘରେ ଘରେ ପାନୀୟ ଜଳ ଯୋଗାଣକୁ ସୁନିଶ୍ଚିତ କରୁଛି । ଏହି ଯୋଜନାରେ ଉଭୟ ପାନୀୟ ଓ ଘରୋଇ କାର୍ଯ୍ୟ ନିମନ୍ତେ ନିରନ୍ତର ଭାବେ

ପର୍ଯ୍ୟାପ୍ତ ପରିମାଣର ବିଶୁଦ୍ଧ ଜଳ ଯୋଗାଇ ଦିଆଯାଉଛି ଏବଂ ରାଜ୍ୟରେ ପାନୀୟ ଜଳ ଯୋଗାଣ କ୍ଷେତ୍ରରେ ଉନ୍ନତି ଆଣିବା ପାଇଁ ଅଧିକ ପ୍ରୟାସ ଜାରି ରହିଛି ।

୫୪. ୨୦୨୪ ଶେଷ ସୁଦ୍ଧା ମୋ ସରକାର ସମସ୍ତ ଗ୍ରାମୀଣ ପରିବାରକୁ ପର୍ଯ୍ୟାପ୍ତ ପରିମାଣର ବିଶୁଦ୍ଧ ପାନୀୟ ଜଳ ଯୋଗାଇବା ପାଇଁ ପ୍ରତିଶ୍ରୁତିବଦ୍ଧ । ଏହି ଦିଗରେ କାର୍ଯ୍ୟ କରି ଗତ ୫ ବର୍ଷ ମଧ୍ୟରେ ୩,୩୫୦ଟି ପାଇପ୍ ଜଳ ଯୋଗାଣ ପ୍ରକଳ୍ପ ଓ ୩୧,୭୬୧ଟି ନଳକୂପ ସ୍ଥାପନ କରାଯାଇଛି । ୩୬,୪୫୫ କୋଟି ଟଙ୍କା ମୂଲ୍ୟର ୨୦୭ଟି ମେଗା ପାଇପ୍ ଜଳ ଯୋଗାଣ ପ୍ରକଳ୍ପ କାର୍ଯ୍ୟକାରୀ କରି ଗ୍ରାମୀଣ ଜଳ ଯୋଗାଣ କ୍ଷେତ୍ରରେ ବ୍ୟାପକ ପରିବର୍ତ୍ତନ ଅଣାଯାଇଛି । ସେଥିମଧ୍ୟରୁ ୧୦ଟି ପ୍ରକଳ୍ପ ସମ୍ପୂର୍ଣ୍ଣ ହୋଇସାରିଛି, ୧୫୮ଟି ପ୍ରକଳ୍ପ କାର୍ଯ୍ୟକାରୀ ହେଉଛି ଏବଂ ୩୯ଟି ପ୍ରକଳ୍ପ ପ୍ରକ୍ରିୟାଧୀନ ରହିଛି ।

୫୫. ସହରାଞ୍ଚଳରେ ଟ୍ୟାପ୍ ଯୋଗେ ଜଳ ଯୋଗାଣ ସଂଯୋଗକୁ ସାର୍ବଜନୀନ କରି ଓଡ଼ିଶା ଦେଶରେ ଏକ ପଥ ପ୍ରଦର୍ଶକ ରାଜ୍ୟର ମାନ୍ୟତା ହାସଲ କରିଛି । ୮୨ଟି ସହରାଞ୍ଚଳର ଶତ ପ୍ରତିଶତ ପରିବାରକୁ ପାନୀୟ ଜଳ ସଂଯୋଗ ଯୋଗାଇ ଦେବାରେ ସଫଳତା ହାସଲ କରାଯାଇଛି । ଶତ ପ୍ରତିଶତ ପରିବାରଙ୍କୁ ପାଇପ୍ ସଂଯୋଗ ଯୋଗାଇ ଦେବାରେ ଭୁବନେଶ୍ୱର ଓ କଟକ ସମଗ୍ର ଦେଶରେ ପ୍ରଥମ ଓ ଦ୍ୱିତୀୟ ମହାନଗର ନିଗମ । ମୋ ସରକାର ମାର୍ଚ୍ଚ ୨୦୨୩ ପୂର୍ବରୁ ରାଜ୍ୟର ସମସ୍ତ ୧୧୫ଟି ସହରାଞ୍ଚଳରେ ଶତ ପ୍ରତିଶତ ଘରୋଇ ସଂଯୋଗ ଯୋଗାଇ ଦେବାକୁ ପ୍ରତିଶ୍ରୁତିବଦ୍ଧ । 'ଡ୍ରିଙ୍କ ଫ୍ରମ୍ ଟ୍ୟାପ୍' ମିଶନରେ ପୁରୀ ସହରକୁ ଆଇଏସ–୧୦୫୦୦ ମାନଦଣ୍ଡ ଅନୁଯାୟୀ ଶତ ପ୍ରତିଶତ ଘରକୁ ସିଧାସଳଖ ଟ୍ୟାପ୍‌ରୁ ମିଟରିଂ ସହିତ ୨୪ ଘଣ୍ଟିଆ ପାନୀୟ ଜଳ ଯୋଗାଣ କରାଯାଉଛି । ଏହାଦ୍ୱାରା ପୁରୀ ଭାରତର ଏକମାତ୍ର ସହର ଭାବେ ଏହି ଗୌରବ ହାସଲ କରିଛି । ପୁରୀ ପରେ ଟ୍ୟାପ୍ ଯୋଗେ ୨୪ ଘଣ୍ଟିଆ ପାନୀୟ ଜଳ ଯୋଗାଣ କ୍ଷେତ୍ରରେ ଗୋପାଳପୁର ଦ୍ୱିତୀୟ ସହରର ମାନ୍ୟତା ହାସଲ କରିଛି ।

୫୬. ବିଶ୍ୱର ସର୍ବବୃହତ୍ ବସ୍ତି ଭୂମି ଅଧିକାର ଓ ଉନ୍ନତିକରଣ କାର୍ଯ୍ୟକ୍ରମ 'ଜାଗା' ମିଶନ ଜରିଆରେ ବର୍ତ୍ତମାନ ବିଜୁ ଆଦର୍ଶ କଲୋନୀ କାର୍ଯ୍ୟକ୍ରମ କାର୍ଯ୍ୟକାରୀ କରାଯାଇ ବସ୍ତିଗୁଡ଼ିକୁ ଆଦର୍ଶ କଲୋନୀରେ ରୂପାନ୍ତରିତ କରାଯାଉଛି । ବସ୍ତିବାସିନ୍ଦାମାନଙ୍କର ଜୀବନଧାରଣ ମାନରେ ଉନ୍ନତି ଆଣିବା ପାଇଁ ରାଜ୍ୟର ୧୧୫ଟି ସହରାଞ୍ଚଳର ୨,୯୧୯ଟି ବସ୍ତିକୁ ବିଜୁ ଆଦର୍ଶ କଲୋନୀରେ ପରିଣତ କରାଯିବ । ୭୨୫ଟି ବସ୍ତିକୁ ଇତି ମଧ୍ୟରେ ବିଜୁ ଆଦର୍ଶ କଲୋନୀରେ ପରିଣତ କରାଯାଇଛି ଏବଂ ୧ ଲକ୍ଷ ୭୩ ହଜାର ପରିବାରକୁ ଜମି ଅଧିକାର ପ୍ରମାଣପତ୍ର ପ୍ରଦାନ କରାଯାଇଛି ।

୫୭. ଜମି ଅଧିକାର ପ୍ରଦାନ ଫଳରେ ଲକ୍ଷ ଲକ୍ଷ ଲୋକଙ୍କ ଜୀବନଧାରଣ ମାନରେ ଅଭୂତପୂର୍ବ ପରିବର୍ତ୍ତନ ଆଣିବା ସହିତ ମୋ ସରକାରଙ୍କ ଯୁଗାନ୍ତକାରୀ ପଦକ୍ଷେପ 'ଜାଗା ମିଶନ' ସହରାଞ୍ଚଳ ବସ୍ତିଗୁଡ଼ିକୁ ବାସୋପଯୋଗୀ 'ବସତି'ରେ ପରିବର୍ତ୍ତିତ କରୁଛି । ସହରାଞ୍ଚଳ ଗରିବଙ୍କୁ ସାମାଜିକ ଓ ଅର୍ଥନୈତିକ ନ୍ୟାୟ ପ୍ରଦାନ କରୁଥିବା ଏହି ଉପକ୍ରମ ସଂଖ୍ୟାଧିକ ଜାତୀୟ ତଥା ଅନ୍ତର୍ଜାତୀୟ ସମ୍ମାନ ଲାଭ କରିଛି । ରାଜକୋଟ୍‌ଠାରେ ଆୟୋଜିତ 'ଇଣ୍ଡିଆନ ଅର୍ବାନ୍ ହାଉସିଂ କନ୍‌କ୍ଲେଭ୍'ର ସ୍ୱତନ୍ତ୍ର ବର୍ଗରେ 'ଶ୍ରେଷ୍ଠ ନୀତି ନିର୍ଦ୍ଧାରଣକାରୀ ରାଜ୍ୟ' ଭାବରେ ଓଡ଼ିଶାକୁ ପ୍ରଧାନମନ୍ତ୍ରୀ ଆବାସ ଯୋଜନା (ସହରାଞ୍ଚଳ) ପୁରସ୍କାର – ୨୦୨୧ ପ୍ରଦାନ କରାଯାଇଛି । 'ଜାଗା' ମିଶନରେ ସହରାଞ୍ଚଳ ଭୂମିହୀନ ଗରିବମାନଙ୍କୁ ଭୂମି ଅଧିକାର ପ୍ରଦାନ କରି ସେମାନଙ୍କ ସମସ୍ୟା ସମାଧାନ କରିବା ଦିଗରେ ଏକ ଅଗ୍ରଣୀ ରାଜ୍ୟ ଭାବରେ

ମୋ ସରକାରଙ୍କ ଭୂମିକା ଏବେ ବିଶ୍ୱବ୍ୟାପୀ ସ୍ୱୀକୃତି ହାସଲ କରିଛି । ବସ୍ତିବାସିନ୍ଦାମାନେ ସହରର ଏକ ଅପରିହାର୍ଯ୍ୟ ଅଙ୍ଗ ଏବଂ ସେମାନଙ୍କୁ ଉଚ୍ଛେଦ କରିବା ପରିବର୍ତ୍ତେ ବସବାସ କରିବାର ନିରାପତ୍ତା ସହିତ ସେମାନଙ୍କୁ ସଶକ୍ତ କରାଯିବା ଆବଶ୍ୟକ ବୋଲି ମୋ ସରକାରଙ୍କ ଦୃଢ଼ ବିଶ୍ୱାସକୁ ଜାତିସଂଘ–ହାବିଟାଟ୍ ସ୍ୱୀକୃତି ଦେଇଛି ଏବଂ ଓଡ଼ିଶାକୁ ଏହାର ବସ୍ତି ଉନ୍ନତିକରଣ କାର୍ଯ୍ୟକ୍ରମ 'ଜାଗା' ମିଶନ ପାଇଁ ୱାର୍ଲ୍ଡ ହାବିଟାଟ୍ ବ୍ରୋଞ୍ଜ ଆୱାର୍ଡ–୨୦୨୩ରେ ସମ୍ମାନିତ କରାଯାଇଛି ।

୫୮. ମୋ ସରକାର ସମସ୍ତ ଗ୍ରାମୀଣ ଗରିବଙ୍କୁ ପକ୍କା ଘର ଯୋଗାଇ ଦେବାକୁ ପ୍ରତିବଦ୍ଧ । ମୋ ସରକାର ଗ୍ରାମାଞ୍ଚଳ ବାସଗୃହ ଯୋଗାଣ ଯୋଜନା 'ପ୍ରଧାନମନ୍ତ୍ରୀ ଆବାସ ଯୋଜନା (ଗ୍ରାମୀଣ)' କାର୍ଯ୍ୟକାରୀ କରୁଛନ୍ତି, ଯେଉଁଥିରେ ୪୦% ରାଜ୍ୟ ଅଂଶଧନ ରହିଛି । ଏହାବ୍ୟତୀତ 'ସମସ୍ତଙ୍କ ପାଇଁ ଆଶ୍ରୟ ସୁରକ୍ଷା' ଲକ୍ଷ୍ୟ ହାସଲ ପାଇଁ 'ବିଜୁ ପକ୍କାଘର ଯୋଜନା', 'ପକ୍କାଘର ଯୋଜନା (ଖଣି)' ଏବଂ 'ନିର୍ମାଣ ଶ୍ରମିକ ପକ୍କାଘର ଯୋଜନା' ରାଜ୍ୟ ପାଣ୍ଠିରୁ କାର୍ଯ୍ୟକାରୀ କରାଯାଉଛି । ୨୦୧୪–୧୫ରୁ ମୋ ସରକାର ୩୧.୪୨ ଲକ୍ଷ ପକ୍କା ଘର ନିର୍ମାଣ ସମ୍ପୂର୍ଣ୍ଣ କରି ଗ୍ରାମୀଣ ଗୃହ ନିର୍ମାଣ କ୍ଷେତ୍ରରେ ଦେଶର ଏକ ଅଗ୍ରଣୀ ରାଜ୍ୟରେ ପରିଣତ ହୋଇଛନ୍ତି । ଠିକ୍ ସମୟରେ ଗୃହ ନିର୍ମାଣ ପାଇଁ ନିର୍ଦ୍ଦିଷ୍ଟ ହିତାଧିକାରୀଙ୍କ ସହ କ୍ଷେତ୍ର କର୍ମଚାରୀମାନଙ୍କୁ ସଂଯୋଗ କରିବାର ଅଭିନବ ପ୍ରୟାସକୁ ପାର୍ଲ୍ୟାମେଣ୍ଟାରୀ ଷ୍ଟାଣ୍ଡିଂ କମିଟି ଉଚ୍ଚ ପ୍ରଶଂସା କରିଛି । ଗ୍ରାମୀଣ ଆବାସ ଯୋଜନାର ହିତାଧିକାରୀଙ୍କୁ ନିର୍ଦ୍ଧାରିତ ସମୟ ସୀମା ମଧ୍ୟରେ ଗୃହ ନିର୍ମାଣ କାର୍ଯ୍ୟ ସମ୍ପୂର୍ଣ୍ଣ କରିବା ପାଇଁ 'ବିଜୁ ପକ୍କାଘର ଯୋଜନା'ରେ ପ୍ରୋତ୍ସାହନ ପ୍ରଦାନ ବ୍ୟବସ୍ଥା ଅନ୍ୟ ରାଜ୍ୟମାନଙ୍କ ପାଇଁ ଉଦାହରଣ ସୃଷ୍ଟି କରିଛି । ନିର୍ଦ୍ଧାରିତ ସମୟସୀମା ମଧ୍ୟରେ ଗୃହ ନିର୍ମାଣ ପାଇଁ ମୋ ସରକାର ୮.୧୯ ଲକ୍ଷ ହିତାଧିକାରୀଙ୍କୁ ୧,୩୪୧ କୋଟି ଟଙ୍କାର ପ୍ରୋତ୍ସାହନ ରାଶି ପ୍ରଦାନ କରିସାରିଛନ୍ତି ।

୫୯. ପଞ୍ଚଦଶ ଅର୍ଥ ଆୟୋଗ ଏବଂ ପଞ୍ଚମ ରାଜ୍ୟ ଅର୍ଥ ଆୟୋଗଙ୍କ ସୁପାରିସ୍ ଅନୁଯାୟୀ ମୌଳିକ ସେବା ଯଥା ପରିମଳ, ପାନୀୟ ଜଳ ଯୋଗାଣ, ବର୍ଷା ଜଳ ସଂରକ୍ଷଣ ତଥା ସ୍ଥାୟୀ ସମ୍ପତ୍ତି ସୃଷ୍ଟି ପାଇଁ ମୋ ସରକାର ଯଥେଷ୍ଟ ସମ୍ବଳ ନିର୍ଦ୍ଧାରଣ କରିଛନ୍ତି । ଏପ୍ରିଲ ୨୦୨୦ରେ ଆରମ୍ଭ ହୋଇଥିବା 'ସ୍ୱଚ୍ଛ ଭାରତ ମିଶନ–ଗ୍ରାମୀଣ' କାର୍ଯ୍ୟକ୍ରମର ଦ୍ୱିତୀୟ ପର୍ଯ୍ୟାୟର ଲକ୍ଷ୍ୟ ହେଉଛି ଗ୍ରାମୀଣ ଭାରତରେ ଖୋଲା ମଳତ୍ୟାଗ ମୁକ୍ତ କାର୍ଯ୍ୟକ୍ରମର ସ୍ଥାୟିତ୍ୱ, କଠିନ ଏବଂ ତରଳ ବର୍ଜ୍ୟବସ୍ତୁ ପରିଚାଳନା ଏବଂ ସମସ୍ତ ଗ୍ରାମକୁ ଓଡିଏଫ ପ୍ଲସ୍ ମାନ୍ୟତା ଦେବା । ତଦନୁଯାୟୀ, ସ୍ୱଚ୍ଛ ଭାରତ ମିଶନ–ଗ୍ରାମୀଣ କାର୍ଯ୍ୟକ୍ରମ, ମନରେଗା ଏବଂ ଅର୍ଥ ଆୟୋଗ ଅନୁଦାନ ମଧ୍ୟରେ ସଠିକ୍ ସମନ୍ୱୟ ରକ୍ଷା କରି ପରିମଳ ଏବଂ କଠିନ ଓ ତରଳ ବର୍ଜ୍ୟବସ୍ତୁ ପରିଚାଳନା ଉପରେ ଗୁରୁତ୍ୱ ଦେଇ ଗ୍ରାମ୍ୟ କାର୍ଯ୍ୟ ଖସଡା ପ୍ରସ୍ତୁତ କରାଯାଉଛି । ୨୦୨୩–୨୪ ସୁଦ୍ଧା ସମସ୍ତ ଗ୍ରାମପଞ୍ଚାୟତକୁ ପରିମଳ ଓ ବର୍ଜ୍ୟବସ୍ତୁ ପରିଚାଳନା କାର୍ଯ୍ୟରେ ସାମିଲ କରିବା ଏବଂ ସମସ୍ତ ଗ୍ରାମକୁ ଓଡିଏଫ ପ୍ଲସ୍ ଘୋଷଣା କରିବାକୁ ଲକ୍ଷ୍ୟ ରଖାଯାଇଛି ।

୬୦. ସହରାଞ୍ଚଳ ମଇଳା ନିଷ୍କାସନ କାର୍ଯ୍ୟକ୍ରମ ଅଧୀନରେ ହାତକୁ ନିଆଯାଇଥିବା ୧୧୪ଟି ସହରାଞ୍ଚଳର ୧୧୮ଟି ଉପଚାର ସୁବିଧା କେନ୍ଦ୍ର ନିର୍ମାଣ କାର୍ଯ୍ୟ ମଧ୍ୟରୁ ୧୦୯ଟି କେନ୍ଦ୍ର ସମ୍ପୂର୍ଣ୍ଣ ହୋଇ କାର୍ଯ୍ୟକ୍ଷମ ହୋଇସାରିଛି । ଏହି ସବୁ କେନ୍ଦ୍ର ସମ୍ପୂର୍ଣ୍ଣ ହେଲେ ମଇଳା ଉପଚାର କ୍ଷେତ୍ରରେ ଓଡ଼ିଶା ପ୍ରଥମ ରାଜ୍ୟ ଭାବେ ଶତପ୍ରତିଶତ ସଫଳତା ହାସଲ କରିବ । ଓଡ଼ିଶାର ମଇଳା ଉପଚାର ମଡେଲ ଅନ୍ତର୍ଜାତୀୟ ମାନ୍ୟତା ପାଇବା ସହିତ ଗୁଆଙ୍ଗଝୋ ପୁରସ୍କାରରେ ମେଡାଲ ଅଫ୍ ଅନର ପାଇଛି । ଆମ ରାଜ୍ୟ ବିକେନ୍ଦ୍ରୀକୃତ କଠିନ ବର୍ଜ୍ୟବସ୍ତୁ ପରିଚାଳନାରେ ମଧ୍ୟ ଏକ ବଡ଼ ଉପଲବ୍ଧି ହାସଲ କରିଛି ।

ରାଜ୍ୟର ୧୧୫ଟି ସହରାଞ୍ଚଳରେ ୨୪୮ଟି ମାଇକ୍ରୋ କମ୍ପୋଷ୍ଟିଂ ସେଣ୍ଟର ଓ ୨୧୧ଟି ସାମଗ୍ରୀ ପୁନରୁଦ୍ଧାର କେନ୍ଦ୍ର କାର୍ଯ୍ୟକ୍ଷମ ହୋଇଛି ।

୬୧. ମୋ ସରକାର ମୂଳ ସଫେଇ କର୍ମଚାରୀଙ୍କ ସୁରକ୍ଷା ଏବଂ ସମ୍ମାନ ପାଇଁ ଏକ ଅଭିନବ ପଦକ୍ଷେପ 'ଗରିମା' କାର୍ଯ୍ୟକାରୀ କରୁଛନ୍ତି । ଶୌଚାଳୟ, ସେପ୍ଟିକ୍ ଟାଙ୍କି, ନର୍ଦ୍ଦମା ଓ ଦୂଷିତ ପଦାର୍ଥ ପ୍ରଭୃତିରେ ମଇଳା ଉପଚାର କରୁଥିବା ସଫେଇ କର୍ମଚାରୀଙ୍କ ସୁରକ୍ଷା ଓ କଲ୍ୟାଣ ସୁନିଶ୍ଚିତ କରିବା ଏହାର ଲକ୍ଷ୍ୟ । ଏହି ଯୋଜନାରେ ସାମାଜିକ ସୁରକ୍ଷା ସୁବିଧା ଯଥା ଅଧିକ ମଜୁରି, ଆପଦକାଳୀନ ତଥା କଷ୍ଟକର କାର୍ଯ୍ୟ ପାଇଁ ଭତ୍ତା, ଦୁଇ ଚକିଆ ଯାନ ସହାୟତା, ମୋବାଇଲ /ଫୋନ୍ ସହାୟତା, ପିଲାମାନଙ୍କ ପାଇଁ ମାଗଣା ଶିକ୍ଷା, ପକ୍କା ଘର, ଜୀବନ ବୀମା, ଭିନ୍ନକ୍ଷମ ସହାୟତା, କାର୍ଯ୍ୟ ଅବଧି ହ୍ରାସ, ଅସୁସ୍ଥତା ଭତ୍ତା ଏବଂ ବିନା ପ୍ରିମିୟମରେ ସ୍ୱାସ୍ଥ୍ୟ ବୀମା ପ୍ରଦାନ କରାଯାଉଛି । କାର୍ଯ୍ୟସ୍ଥଳ ନିକଟରେ ବିଶ୍ରାମ, ଧୁଆଧୋଇ ହେବା ଏବଂ ଅନ୍ୟାନ୍ୟ ସୁବିଧା ସହିତ ବିଶ୍ରାମ ସୁବିଧା ସୃଷ୍ଟି କରିବା ପାଇଁ ୩୩ଟି ଗରିମା ଗୃହ ନିର୍ମାଣ କରାଯାଇଛି । ବିକେନ୍ଦ୍ରୀକୃତ ଏବଂ ଗୋଷ୍ଠୀ ପରିଚାଳିତ ଓଡ଼ିଶା ମଡେଲ ପରିମଳ ବ୍ୟବସ୍ଥାର ସଫଳ ରୂପାୟନ ପାଇଁ ଭୁବନେଶ୍ୱର ମହାନଗର ନିଗମକୁ 'ଶ୍ରେଷ୍ଠ ମଇଳା ଏବଂ ଦୂଷିତ ପଦାର୍ଥ ଉପଚାର ପରିଚାଳନା ମଡେଲ୍-ସହରାଞ୍ଚଳ' ଏବଂ ଯାଜପୁର ଜିଲ୍ଲାକୁ ଇଣ୍ଡିଆ ସାନିଟେସନ୍ କୋଆଲିସନ୍-ଫିକି ସାନିଟେସନ୍ ଆୱାର୍ଡ଼-୨୦୨୨ରେ 'ସ୍ୱଚ୍ଛତାରେ ଶ୍ରେଷ୍ଠ ଦକ୍ଷତା ପ୍ରଦର୍ଶନ' ପାଇଁ ପୁରସ୍କୃତ କରାଯାଇଥିଲା ।

୬୨. ଗର୍ଭବତୀ ଏବଂ ପ୍ରସୂତି ମା'ମାନଙ୍କ ପୋଷଣ ଆବଶ୍ୟକତାକୁ ପୂରଣ କରିବା ପାଇଁ ମୋ ସରକାର ଏକ ସର୍ତ୍ତମୂଳକ ନଗଦ ଅର୍ଥରାଶି ହସ୍ତାନ୍ତର ମାତୃକଲ୍ୟାଣ ଯୋଜନା 'ମମତା' ଆରମ୍ଭ କରିଛନ୍ତି । ଏହି ଯୋଜନା ଅଧୀନରେ ହିତାଧିକାରୀଙ୍କ ଜମାଖାତାକୁ ୫,୦୦୦ ଟଙ୍କା କ୍ଷତିପୂରଣ ସିଧାସଳଖ ହସ୍ତାନ୍ତର କରାଯାଏ, ଯାହାଦ୍ୱାରା ସେମାନେ ଗର୍ଭାବସ୍ଥା ଏବଂ ପ୍ରସବ ପରେ ପର୍ଯ୍ୟାପ୍ତ ବିଶ୍ରାମ ପାଇପାରିବେ । ବର୍ତ୍ତମାନ ସୁଦ୍ଧା ୫୫.୪୫ ଲକ୍ଷ ମହିଳାଙ୍କୁ ୨,୬୫୩ କୋଟି ଟଙ୍କାର ନଗଦ ଅର୍ଥରାଶି ସୁବିଧା ପ୍ରଦାନ କରାଯାଇଛି ।

୬୩. କୁପୋଷଣର ସମାଧାନ, ଗୋଷ୍ଠୀ ସଚେତନତା, ତଥ୍ୟ ପରିଚାଳନା ଓ ବିଶ୍ଳେଷଣ ଏବଂ ପ୍ରାରମ୍ଭିକ ଶୈଶବ ଯତ୍ନ ଓ ଶିକ୍ଷା ଏବଂ ପ୍ରକୃଷ୍ଟ ଉନ୍ନତ ଭିତ୍ତିଭୂମି ମାଧ୍ୟମରେ ସେବା ପ୍ରଦାନରେ ଉନ୍ନତି ଆଣିବା ଏବଂ ଉତ୍କର୍ଷ ହାସଲ କରିବା ପାଇଁ ମୋ ସରକାର ଅଙ୍ଗନବାଡ଼ି କେନ୍ଦ୍ରଗୁଡିକୁ 'କର୍ମମୁଖର ଅଙ୍ଗନବାଡ଼ି' କେନ୍ଦ୍ରରେ ପରିଣତ କରିବା ପାଇଁ ପଦକ୍ଷେପ ଗ୍ରହଣ କରିଛନ୍ତି ।

୬୪. ମୋ ସରକାର ତ୍ୱରିତ ପୁଷ୍ଟିହୀନତା ହ୍ରାସ ପାଇଁ ଜୀବନ ଚକ୍ର ପଦ୍ଧତି ଆପଣାଇ କରିଛନ୍ତି । ୬ ବର୍ଷରୁ କମ୍ ବୟସର ଶିଶୁ, କିଶୋରୀ, ଗର୍ଭବତୀ ମହିଳା ଓ ପ୍ରସୂତିଙ୍କ ଅନୁନ୍ନତ ପୋଷଣ ସୂଚକାଙ୍କ ଫଳାଫଳ ଆଧାରରେ ରାଜ୍ୟର ୨୨ଟି ଜିଲ୍ଲାର ୧୨୫ଟି ବ୍ଲକରେ ପୋଷଣ ସ୍ଥିତିରେ ପରିବର୍ତ୍ତନ ଆଣିବା ପାଇଁ 'ସୋପାନ' କାର୍ଯ୍ୟକ୍ରମ ଆରମ୍ଭ କରାଯାଇଛି । ୬ ବର୍ଷରୁ କମ୍ ଶିଶୁ ଓ ଗର୍ଭବତୀ ଓ ପ୍ରସୂତି ମହିଳାଙ୍କ ସ୍ୱାସ୍ଥ୍ୟ ଓ ପୋଷଣ ସ୍ଥିତିରେ ଉନ୍ନତି ଆଣିବା ପାଇଁ ଅନୁପୂରକ ପୋଷଣ କାର୍ଯ୍ୟକ୍ରମ ଅଧୀନରେ ଗରମ ରନ୍ଧା ଖାଦ୍ୟ ଓ 'ଟେକ୍ ହୋମ୍ ରାସନ' ଆକାରରେ ପୁଷ୍ଟିକର ଖାଦ୍ୟ ଯୋଗାଇ ଦିଆଯାଉଛି ।

୬୫. ପିଲାମାନଙ୍କର ବଞ୍ଚିବାର ଅଧିକାର, ସୁରକ୍ଷା, ଶାରୀରିକ ଏବଂ ମାନସିକ ସ୍ୱାସ୍ଥ୍ୟ ସହିତ ସର୍ବୋତ୍ତମ ବିକାଶ ପାଇଁ ଶିକ୍ଷା, ସାମାଜିକ ପ୍ରକ୍ରିୟାରେ ଅଂଶଗ୍ରହଣ ଏବଂ ଅନ୍ୟାନ୍ୟ ମାଇଲଖୁଣ୍ଟ ହାସଲ ଅଧିକାରର ସୁରକ୍ଷା ପାଇଁ

'ପ୍ରାରମ୍ଭ' ଶିଶୁମାନଙ୍କ ପାଇଁ ନୀତି–୨୦୨୨ ଗୁରୁତ୍ୱାରୋପ କରେ । ମୋ ସରକାରଙ୍କ ଶିଶୁ ସୁରକ୍ଷା ଯୋଜନା ଏବଂ କାର୍ଯ୍ୟକ୍ରମଗୁଡିକ 'ଯତ୍ନ ଏବଂ ସୁରକ୍ଷା ଆବଶ୍ୟକ କରୁଥିବା ଶିଶୁ' ଏବଂ 'ଆଇନ ସହିତ ସଂଘର୍ଷରେ ରହୁଥିବା ଶିଶୁ'ଙ୍କର ମୌଳିକ ଆବଶ୍ୟକତାକୁ ପୂରଣ କରେ ଏବଂ ଉପଯୁକ୍ତ ଯତ୍ନ, ସୁରକ୍ଷା, ବିକାଶ, ଚିକିତ୍ସା ଏବଂ ସାମାଜିକ ପୁନର୍ମିଳନ ମାଧ୍ୟମରେ ସେମାନଙ୍କ ଜୀବନରେ ପରିବର୍ତ୍ତନ ଆଣିଥାଏ ।

୬୬. କିଶୋରୀ ଓ ବାଳକମାନଙ୍କ ବିଭିନ୍ନ ସ୍ୱାସ୍ଥ୍ୟ ଓ ପୋଷଣଜନିତ ସମସ୍ୟା ପ୍ରତି ସମ୍ବେଦନଶୀଳ ହୋଇ ମୋ ସରକାର କିଶୋର ଜୀବନ ସଶକ୍ତିକରଣ କାର୍ଯ୍ୟକ୍ରମ 'ଅଦ୍ୱିକା' ଆରମ୍ଭ କରିଛନ୍ତି । ୭୪,୧୫୪ଟି ଅଙ୍ଗନବାଡ଼ି କେନ୍ଦ୍ରରେ ପ୍ରାୟ ୧୩ ଲକ୍ଷ ବାଳକ ଓ ବାଳିକାଙ୍କୁ ଏହି କାର୍ଯ୍ୟକ୍ରମରେ ଅନ୍ତର୍ଭୁକ୍ତ କରାଯାଇଛି ।

୬୭. କଠିନ ପରିସ୍ଥିତିରେ ମହିଳାଙ୍କ ପ୍ରାଥମିକ ଆବଶ୍ୟକତା ପୂରଣ କରିବା ପାଇଁ ଓଡ଼ିଶାରେ ୫୨ଟି ସ୍ୱଧାର ଗୃହ ଓ ୧୯ଟି ଉଜ୍ଜ୍ୱଳା ଗୃହ କାର୍ଯ୍ୟ କରୁଛି । ଏହି ଯୋଜନା ଅଧୀନରେ ପ୍ରାୟ ୨,୫୦୦ ଅନ୍ତେବାସୀଙ୍କୁ ଖାଦ୍ୟ, ନିଃଶୁଳ୍କ ଚିକିତ୍ସା ସୁବିଧା, ଆଇନଗତ ସୁବିଧା ଓ ଧନ୍ଦାମୂଳକ ସେବା ସହିତ ଅସ୍ଥାୟୀ ଆବାସିକ ବାସଗୃହ ଭଳି ବିଭିନ୍ନ ସେବା ଯୋଗାଇ ଦିଆଯାଉଛି । ମହିଳାଙ୍କ ସୁରକ୍ଷା, ହିଂସା ରୋକିବା ଏବଂ ପ୍ରତିକାର ବ୍ୟବସ୍ଥା ଯୋଗାଇଦେବା ପାଇଁ ମୋ ସରକାର ସବୁବେଳେ ଆଇନଗତ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବାରେ ତତ୍ପର ।

୬୮. ଏକ ମିଶନ ମୋଡ଼ରେ ମହିଳାମାନଙ୍କ ସଶକ୍ତିକରଣ ଲକ୍ଷ୍ୟ ହାସଲ କରିବା ମୋ ସରକାର ୭୦ ଲକ୍ଷରୁ ଅଧିକ 'ମିଶନ ଶକ୍ତି' ମହିଳାଙ୍କ ଜୀବନରେ ପରିବର୍ତ୍ତନ ଆଣିଛନ୍ତି । ନିରନ୍ତର ଆର୍ଥିକ ସହାୟତା, ଦକ୍ଷତା ବିକାଶ ପ୍ରଶିକ୍ଷଣ ଏବଂ ନୂତନ ଜୀବିକା ସୁଯୋଗ ସୃଷ୍ଟି କରି ଆମ ରାଜ୍ୟ ପ୍ରତ୍ୟେକ ମହିଳାଙ୍କ ମଧ୍ୟରେ ଆତ୍ମବିଶ୍ୱାସ ଏବଂ ସ୍ୱାଭିମାନ ସୃଷ୍ଟି କରିବାରେ ସଫଳ ହୋଇଛି । ମୋ ସରକାର ମହିଳା ସ୍ୱୟଂ ସହାୟକ ଗୋଷ୍ଠୀମାନଙ୍କ ପାଇଁ ମେଗା କ୍ରେଡିଟ୍ ଆଉଟରିଚ୍ କାର୍ଯ୍ୟକ୍ରମ ଆରମ୍ଭ କରିଛନ୍ତି । ଏହାଦ୍ୱାରା ମିଶନ୍ ଶକ୍ତି ମହିଳାମାନେ ବିନା ବାଧାରେ ସଂସ୍ଥାଗତ ଋଣ ପାଇବା ସୁନିଶ୍ଚିତ ହୋଇପାରିଛି, ଯାହାଦ୍ୱାରା ସେମାନେ ନିଜର ଜୀବିକାର୍ଜନ ସୁଯୋଗକୁ ପରିବର୍ଦ୍ଧିତ କରିପାରିବେ । 'ମିଶନ ଶକ୍ତି' ଏବେ ପରବର୍ତ୍ତୀ ସ୍ତରକୁ ଉନ୍ନୀତ ହେବାକୁ ଯାଉଛି, ଯେଉଁଠି ମିଶନ ଶକ୍ତି ଅଣୁ ଉଦ୍ୟୋଗଗୁଡ଼ିକ ଉତ୍ପାଦକ ଗୋଷ୍ଠୀରେ ପରିବର୍ତ୍ତିତ ହୋଇ ବଡ଼ ବଡ଼ ବ୍ୟବସାୟିକ ସଂସ୍ଥା ଏବଂ ମୂଲ୍ୟ ଶୃଙ୍ଖଳ ସହ ଯୋଡି ହେବେ ।

୬୯. ଜୀବିକାର୍ଜନ କାର୍ଯ୍ୟକଳାପରେ ଅଧିକ ପୁଞ୍ଜି ବିନିଯୋଗ ଏବଂ ଋଣ ସୁବିଧାରେ ବୃଦ୍ଧି ପାଇଁ ୩ ଲକ୍ଷ ଟଙ୍କା ପର୍ଯ୍ୟନ୍ତ ସୁଧମୁକ୍ତ ଋଣ ପ୍ରଦାନ କରାଯାଉଅଛି । ନିରନ୍ତର ଆର୍ଥିକ ସହାୟତା, ଦକ୍ଷତା ବିକାଶ ପ୍ରଶିକ୍ଷଣ ଏବଂ ବଜାର ସଂଯୋଗ ଦ୍ୱାରା ମୋ ସରକାର ମହିଳାମାନଙ୍କ ଜୀବନରେ ପରିବର୍ତ୍ତନ ଆଣିଛନ୍ତି ଏବଂ ସେମାନଙ୍କ ସାମାଜିକ ଓ ଅର୍ଥନୈତିକ ସଶକ୍ତିକରଣକୁ ପ୍ରୋତ୍ସାହିତ କରୁଛନ୍ତି ।

୭୦. ଅନୁସୂଚିତ ଜନଜାତି ଓ ଜାତି ବର୍ଗର ଛାତ୍ରଛାତ୍ରୀଙ୍କୁ ମିଳୁଥିବା ଶିକ୍ଷାର ଗୁଣବତ୍ତା ବୃଦ୍ଧି କରିବା ପାଇଁ ମୋ ସରକାର ପ୍ରତିବଦ୍ଧ । ଏ କ୍ଷେତ୍ରରେ ସରକାର ବିଭିନ୍ନ ହସ୍ତକ୍ଷେପ ମାଧ୍ୟମରେ ଛାତ୍ରଛାତ୍ରୀଙ୍କୁ ମାଗଣା ଶିକ୍ଷା, ଛାତ୍ରବୃତ୍ତି, ରହିବା ଓ ଖାଇବା ସୁବିଧା, ମାଗଣା ପାଠ୍ୟ ପୁସ୍ତକ, ପଠନ ଓ ଲିଖନ ସାମଗ୍ରୀ ଇତ୍ୟାଦି ଯୋଗାଇ ଦେଉଛନ୍ତି । ରାଜ୍ୟର ୧,୭୩୫ ଆବାସିକ ବିଦ୍ୟାଳୟ ଏବଂ ୭,୦୫୮ ଛାତ୍ରାବାସରେ ୪.୭୦ ଲକ୍ଷ ଅନୁସୂଚିତ ଜନଜାତି ଏବଂ ଅନୁସୂଚିତ ଜାତି

ଛାତ୍ରଛାତ୍ରୀଙ୍କୁ ଆବାସିକ ବିଦ୍ୟାଳୟ ସୁବିଧା ପ୍ରଦାନ କରାଯାଇଛି । ପାଖାପାଖି ୨୦.୬୫ ଲକ୍ଷ ଅନୁସୂଚିତ ଜନଜାତି, ଅନୁସୂଚିତ ଜାତି ଓ ଅନ୍ୟାନ୍ୟ ପଛୁଆବର୍ଗ ଛାତ୍ରଛାତ୍ରୀଙ୍କୁ ଛାତ୍ରବୃତ୍ତି ପ୍ରଦାନ କରାଯାଇ ସେମାନଙ୍କ ଶିକ୍ଷା ଗ୍ରହଣ ସୁଯୋଗକୁ ପ୍ରୋତ୍ସାହିତ କରିବାରେ ମୋ ସରକାର ପ୍ରମୁଖ ଭୂମିକା ନିର୍ବାହ କରୁଛନ୍ତି ।

୭୧. ସହରାଞ୍ଚଳରେ ଉଚ୍ଚଶିକ୍ଷା ଗ୍ରହଣ କରୁଥିବା ଅନୁସୂଚିତ ଜନଜାତି ଓ ଅନୁସୂଚିତ ଜାତି ଛାତ୍ରଛାତ୍ରୀଙ୍କୁ ସର୍ବୋତ୍ତମ ଶିକ୍ଷା ସୁଯୋଗ ପ୍ରଦାନ କରିବା ପାଇଁ ମୋ ସରକାର ୮ଟି 'ଆକାଂକ୍ଷା' ଛାତ୍ରାବାସ ନିର୍ମାଣ କରିଛନ୍ତି । ଭୁବନେଶ୍ୱର, ବ୍ରହ୍ମପୁର, ସମ୍ବଲପୁର ଓ ରାଉରକେଲାରେ ଥିବା ଏହି ସହରାଞ୍ଚଳ ଛାତ୍ରାବାସ କମ୍ପ୍ଲେକ୍ସରେ ବିଭିନ୍ନ କଲେଜରେ ଅଧ୍ୟୟନରତ ପ୍ରାୟ ୩,୯୦୦ ଛାତ୍ରଛାତ୍ରୀଙ୍କ ରହିବା ପାଇଁ ବ୍ୟବସ୍ଥା କରାଯାଇଛି । ଅନୁସୂଚିତ ଜନଜାତି ଓ ଅନୁସୂଚିତ ଜାତି ଛାତ୍ରଛାତ୍ରୀଙ୍କୁ ସର୍ବୋତ୍ତମ ଶିକ୍ଷା ସୁଯୋଗ ପ୍ରଦାନ କରିବା ଉଦ୍ଦେଶ୍ୟରେ ମୋ ସରକାର 'ଅନ୍ୱେଷା' ଇଂରାଜୀ ମାଧ୍ୟମ ବିଦ୍ୟାଳୟ ମଧ୍ୟ ପ୍ରତିଷ୍ଠା କରିଛନ୍ତି ।

୭୨. ୧.୫ ଲକ୍ଷରୁ ଊର୍ଦ୍ଧ୍ୱ ଜନଜାତି ପରିବାରଙ୍କ ଆୟ ସ୍ତର ଓ ଜୀବନଧାରଣ ମାନ ବୃଦ୍ଧି କରିବାର ଏକ ପ୍ରୟାସ ସ୍ୱରୂପ ମୋ ସରକାର ଏକ ସ୍ୱତନ୍ତ୍ର ଜନଜାତି ଜୀବିକା ପ୍ରୋତ୍ସାହନ ଉପକ୍ରମ 'ମିଶନ ଜୀବିକା ପ୍ଲସ୍' ଆରମ୍ଭ କରିଛନ୍ତି । ଏହି ଉପକ୍ରମରେ ୫୦୦ କୋଟି ଟଙ୍କା ବ୍ୟୟରେ ତିନି ବର୍ଷ ସମୟସୀମା ମଧ୍ୟରେ କ୍ଲଷ୍ଟର ମାଧ୍ୟମରେ ବିବିଧ ଲାଭଜନକ ଜୀବିକାକୁ ପ୍ରୋତ୍ସାହିତ କରାଯାଉଛି । ଜଙ୍ଗଲ ଅଧିକାର ଅଧିନିୟମ ଅନୁଯାୟୀ ୧୦.୧୨ଲକ୍ଷ ଏକରରୁ ଊର୍ଦ୍ଧ୍ୱ କ୍ଷେତ୍ରଫଳ ବିଶିଷ୍ଟ ଜଙ୍ଗଲ ଜମିର ଆବଣ୍ଟନ କରାଯାଇ ୪.୬୧ ଲକ୍ଷ ଭୂମି ଅଧିକାର ପ୍ରମାଣପତ୍ର ପ୍ରଦାନ କରାଯାଇଛି ।

୭୩. ଅତ୍ୟାଚାରର ଶିକାର ହେଉଥିବା ଅନୁସୂଚିତ ଜାତି ଏବଂ ଜନଜାତି ପୀଡିତଙ୍କ କ୍ଷତିପୂରଣ ପ୍ରଦାନ ପ୍ରକ୍ରିୟାକୁ ତ୍ୱରାନ୍ୱିତ କରିବା ପାଇଁ ମୋ ସରକାର 'ସିଙ୍ଗଲ ୱିଣ୍ଡୋ ଆପ୍ଲିକେସନ୍ ଆଟ୍ରୋସିଟି କମ୍ପେନସେସନ ଆସିଷ୍ଟାନ୍ସ ଓ ରିଲିଫ୍' ଆରମ୍ଭ କରିଛନ୍ତି, ଯାହା ୨୧ ଦିନ ମଧ୍ୟରେ ତ୍ୱରିତ ତଦନ୍ତ ଏବଂ କ୍ଷତିପୂରଣ ପ୍ରଦାନକୁ ସୁନିଶ୍ଚିତ କରିବ ।

୭୪. ମୋ ସରକାର ବିଭିନ୍ନ ସାମାଜିକ ସୁରକ୍ଷା ଯୋଜନା ମାଧ୍ୟମରେ ଆମ ସମାଜର ଦୁର୍ବଳ ବର୍ଗଙ୍କୁ ସଶକ୍ତ କରିବାକୁ ପ୍ରତିବଦ୍ଧ । ରାଜ୍ୟର ପ୍ରାୟ ୪୯ ଲକ୍ଷ ଲୋକଙ୍କୁ ସାମାଜିକ ସୁରକ୍ଷା ପେନ୍‌ସନ୍ ପ୍ରଦାନ କରାଯାଉଛି, ଯାହାକି ଜନସଂଖ୍ୟାର ପ୍ରତିଶତ ହିସାବରେ ସମଗ୍ର ଦେଶରେ ସର୍ବାଧିକ । ମୋ ସରକାର 'ମଧୁ ବାବୁ ପେନ୍‌ସନ୍ ଯୋଜନା'ରେ ନିରାଶ୍ରୟା/ସ୍ୱାମୀ ପରିତ୍ୟକ୍ତା/ଛାଡ଼ପତ୍ରପ୍ରାପ୍ତ ମହିଳା, ଅନାଥ ଶିଶୁ ଏବଂ ବିଧବାମାନଙ୍କ ପାଇଁ ପେନ୍‌ସନ୍‌ର ବ୍ୟବସ୍ଥା କରିଛନ୍ତି ।

୭୫. ୨୩,୯୭୫ ଜଣ ଭିନ୍ନକ୍ଷମ ଛାତ୍ରଛାତ୍ରୀଙ୍କୁ 'ବାଣୀଶ୍ରୀ' ବୃତ୍ତି ପ୍ରଦାନ କରାଯାଉଛି । ଜିଲ୍ଲାରେ ଥିବା ବୃଦ୍ଧାଶ୍ରମଗୁଡିକରେ ବରିଷ୍ଠ ନାଗରିକମାନଙ୍କୁ ମାଗଣାରେ ଖାଦ୍ୟ, ପୋଷାକ, ଉନ୍ନତମାନର ରହଣି ସୁବିଧା ଓ ସ୍ୱାସ୍ଥ୍ୟ ସେବା ଯୋଗାଇ ଦିଆଯାଉଛି । ପ୍ରତ୍ୟେକ ଜିଲ୍ଲାରେ ବୃଦ୍ଧାଶ୍ରମ ପ୍ରତିଷ୍ଠା କରିବାରେ ଓଡ଼ିଶା ଅନ୍ୟତମ ଅଗ୍ରଣୀ ରାଜ୍ୟ । ବୟସ୍କ ବ୍ୟକ୍ତି, ନିରାଶ୍ରୟ ଓ ଭିନ୍ନକ୍ଷମଙ୍କ ଆବାସିକ ସହାୟତା ଓ ଥଇଥାନ ନିମନ୍ତେ ପ୍ରଥମ ପର୍ଯ୍ୟାୟରେ ୧୦ଟି ଜିଲ୍ଲାରେ ସମନ୍ୱିତ ସାମାଜିକ ସୁରକ୍ଷା ଭିତ୍ତିଭୂମି କମ୍ପ୍ଲେକ୍ସ ପ୍ରତିଷ୍ଠା କରାଯାଇଛି । '5T' ଅଧୀନରେ ଏହି କେନ୍ଦ୍ରଗୁଡ଼ିକୁ ଉତ୍କର୍ଷ କେନ୍ଦ୍ର ଭାବରେ ବିକଶିତ କରାଯିବ ।

୭୬. ବିଦ୍ୟାଳୟ ରୂପାନ୍ତରଣ କାର୍ଯ୍ୟକ୍ରମ ମାଧ୍ୟମରେ ଶିକ୍ଷାର ଉନ୍ନତି ପାଇଁ ମୋ ସରକାରଙ୍କ ଆନ୍ତରିକ ଉଦ୍ୟମ ବାର୍ଷିକ ଶିକ୍ଷା ସ୍ଥିତି ରିପୋର୍ଟ-୨୦୨୨ରେ ସକାରାତ୍ମକ ଟିପ୍ପଣୀ ହାସଲ କରିଛି । ସରକାରୀ ବିଦ୍ୟାଳୟରେ ନାମ

ଲେଖାଇଥିବା ଛାତ୍ରଛାତ୍ରୀଙ୍କ ପ୍ରତିଶତ ୨୦୧୮ରେ ୮୮% ଥିବାବେଳେ ୨୦୨୨ରେ ଏହା ୯୨.୧%କୁ ବୃଦ୍ଧି ପାଇଛି । '5T' ଅଧୀନରେ ଓଡ଼ିଶାର ବିଦ୍ୟାଳୟ ରୂପାନ୍ତରଣ କାର୍ଯ୍ୟକ୍ରମ ଦ୍ୱାରା ବିଦ୍ୟାଳୟ ଗୁଡ଼ିକରେ ଆଧୁନିକ ଭିତ୍ତିଭୂମି ପ୍ରତିଷ୍ଠା ସହ ଏକ ପ୍ରେରଣାଦାୟୀ ଅଧ୍ୟୟନ ବାତାବରଣ ସୃଷ୍ଟି ହୋଇପାରିଛି । ଏହି ପଦକ୍ଷେପ ଛାତ୍ରଛାତ୍ରୀଙ୍କ ମଧ୍ୟରେ ଆତ୍ମବିଶ୍ୱାସ ବୃଦ୍ଧି କରିବା ସହ ପାଠପଢ଼ାରେ ସର୍ବୋତ୍ତମ ପ୍ରଦର୍ଶନ କରିବା ପାଇଁ ପ୍ରେରଣା ଦେଇଛି ।

୭୭. ରାଜ୍ୟ ଏବଂ କେନ୍ଦ୍ର ଶାସିତ ଅଞ୍ଚଳ ପାଇଁ ଭାରତ ସରକାରଙ୍କ ଶିକ୍ଷା ମନ୍ତ୍ରାଳୟ ଦ୍ୱାରା ପ୍ରସ୍ତୁତ 'ପରଫରମାନ୍ସ ଗ୍ରେଡିଂ ଇଣ୍ଡେକ୍ସ, ୨୦୨୦–୨୧'ରେ ଓଡ଼ିଶା ଶ୍ରେଷ୍ଠ ୧୦ ରାଜ୍ୟ ମଧ୍ୟରେ ସ୍ଥାନିତ ହୋଇଥିବାରୁ ମୁଁ ମୋ ସରକାରଙ୍କୁ ଅଭିନନ୍ଦନ ଜଣାଉଛି । ମୋ ସରକାରଙ୍କ ଦୂରଦୃଷ୍ଟିସମ୍ପନ୍ନ 'ମୋ ସ୍କୁଲ' ଉପକ୍ରମ ଓଡ଼ିଶାର ବିଦ୍ୟାଳୟ ଶିକ୍ଷା ଦୃଶ୍ୟପଟ୍ଟରେ ଏକ ପରିଦୃଶ୍ୟ ପରିବର୍ତ୍ତନ ଆଣିପାରିଛି । 'ମୋ ସ୍କୁଲ' ଅଭିଯାନ ଓଡିଶାର ବିଦ୍ୟାଳୟ ଶିକ୍ଷା ଓ ବ୍ୟବସ୍ଥାରେ ପରିବର୍ତ୍ତନ ଆଣି ଏକ ନିରନ୍ତର ଅଭିବୃଦ୍ଧିର ସଂସ୍କୃତି ସ୍ଥାପନ କରିଛି । ୫ ବର୍ଷ ସମୟସୀମା ମଧ୍ୟରେ 'ମୋ ସ୍କୁଲ' ଦେଶର ଏକ ବୃହତ୍ ପୁରାତନ ଛାତ୍ର ଅବଦାନ କାର୍ଯ୍ୟକ୍ରମରେ ପରିଣତ ହୋଇଛି ଏବଂ ଏହାର ପ୍ରକଳ୍ପ ମୂଲ୍ୟ ୫,୩୧୮ କୋଟି ଟଙ୍କାକୁ ଛୁଇଁଛି । ୫୦,୨୭୩ରୁ ଅଧିକ ବିଦ୍ୟାଳୟରେ ଏହାକୁ କାର୍ଯ୍ୟକାରୀ କରାଯାଇଛି, ଯାହାଦ୍ୱାରା ୪୩.୩୩ ଲକ୍ଷ ଛାତ୍ରଛାତ୍ରୀ ସିଧାସଳଖ ଭାବରେ ଉପକୃତ ହୋଇଛନ୍ତି ।

୭୮. '5T' ହାଇସ୍କୁଲ ରୂପାନ୍ତରଣ କାର୍ଯ୍ୟକ୍ରମର ଉଦ୍ଦେଶ୍ୟ ହେଉଛି ସରକାରୀ ବିଦ୍ୟାଳୟ ଭିତ୍ତିଭୂମିର ରୂପାନ୍ତରଣ କରିବା ସହିତ ପ୍ରଭାବୀ ଓ ଅଭିନବ ଶିକ୍ଷଣ ପଦ୍ଧତି ମାଧ୍ୟମରେ ଶିକ୍ଷାଦାନ–ଶିକ୍ଷାଲାଭ ଅଭିଜ୍ଞତାକୁ ସମୁନ୍ନତ କରିବା । ମୋ ସରକାରଙ୍କ ବିଦ୍ୟାଳୟ ରୂପାନ୍ତରଣ କାର୍ଯ୍ୟକ୍ରମ ଫଳରେ ସରକାରୀ ବିଦ୍ୟାଳୟଗୁଡ଼ିକରେ ଛାତ୍ରଛାତ୍ରୀଙ୍କ ନାମଲେଖା ଓ ଉପସ୍ଥାନରେ ଉଲ୍ଲେଖନୀୟ ଉନ୍ନତି ଘଟିଛି ଏବଂ ବିଦ୍ୟାଳୟ ଗୁଡ଼ିକର ସାମଗ୍ରିକ ଶିକ୍ଷା ବାତାବରଣ ଓ ପାଠ୍ୟାନୁବର୍ତ୍ତୀ କାର୍ଯ୍ୟକଳାପରେ ଉନ୍ନତି ଘଟିଛି ।

୭୯. ଓଡ଼ିଶାର ୩୧୩ଟି ବ୍ଲକରେ ଥିବା ୩୧୩ଟି ଓଡ଼ିଶା ଆଦର୍ଶ ବିଦ୍ୟାଳୟ ଦ୍ୱାରା ଗୁଣାତ୍ମକ ଇଂରାଜୀ ମାଧ୍ୟମ ଶିକ୍ଷା ପ୍ରଦାନ ପାଇଁ ସମସ୍ତ ପ୍ରକାର ଉଦ୍ୟମ କରାଯାଉଛି । ଏକାଦଶ ଓ ଦ୍ୱାଦଶ ଶ୍ରେଣୀର ମେଧାବୀ ଛାତ୍ରଛାତ୍ରୀଙ୍କ ପାଇଁ ଭୁବନେଶ୍ୱର ଅନ୍ଧାରୁଆଠାରେ ଏକ ଉତ୍କର୍ଷ ଓଡ଼ିଶା ଆଦର୍ଶ ବିଦ୍ୟାଳୟ ଏବଂ କୋରାପୁଟ ଜିଲ୍ଲା ପଟ୍ଟାଙ୍ଗୀ ବ୍ଲକ କୋଟିଆ ଗ୍ରାମପଞ୍ଚାୟତରେ ଏକ ସ୍ୱତନ୍ତ୍ର ଓଡ଼ିଶା ଆଦର୍ଶ ବିଦ୍ୟାଳୟ ଚଳିତ ଶିକ୍ଷାବର୍ଷରେ କାର୍ଯ୍ୟକ୍ଷମ ହୋଇଛି । ୧୬୭ଟି ଓଡ଼ିଶା ଆଦର୍ଶ ବିଦ୍ୟାଳୟ ଉଚ୍ଚ ମାଧ୍ୟମିକ ସ୍ତରକୁ ଉନ୍ନୀତ ହୋଇସାରିଛି ଏବଂ ୩୦ଟି ଓଡ଼ିଶା ଆଦର୍ଶ ବିଦ୍ୟାଳୟରେ ବାଣିଜ୍ୟ ବିଭାଗ ଖୋଲାଯାଇଛି ।

୮୦. ମେଧାବୀ ଛାତ୍ରଛାତ୍ରୀଙ୍କ ବିକାଶ ଓ ପ୍ରୋତ୍ସାହନ ଏବଂ ସେମାନଙ୍କୁ ଡାକ୍ତରୀ, ଇଞ୍ଜିନିୟରିଂ, ସି.ଏଲ୍.ଏ.ଟି. ଏବଂ ଏନ୍.ଡି.ଏ. ଭଳି ରାଜ୍ୟ ଏବଂ ଜାତୀୟ ସ୍ତରର ପ୍ରବେଶିକା ପରୀକ୍ଷାରେ କୃତକାର୍ଯ୍ୟ ହେବା ପାଇଁ ମୋ ସରକାର ସେମାନଙ୍କୁ ଆବାସିକ ସୁବିଧା ସହିତ ସ୍ୱତନ୍ତ୍ର ପ୍ରଶିକ୍ଷଣ ସୁବିଧା ଯୋଗାଇ ଦେଉଛନ୍ତି ।

୮୧. ସରକାରୀ ବୈଷୟିକ ଶିକ୍ଷାନୁଷ୍ଠାନଗୁଡ଼ିକର ଭୌତିକ, ଡିଜିଟାଲ ଏବଂ ବୌଦ୍ଧିକ ଭିତ୍ତିଭୂମି ସ୍ତରରେ ନିରନ୍ତର ରୂପାନ୍ତରଣ ଓଡ଼ିଶାରେ ବୈଷୟିକ ଶିକ୍ଷା ଏବଂ ଧନ୍ଦାମୂଳକ ତାଲିମରେ ପରିବର୍ତ୍ତନ ଆଣିବାର ମହତ୍ତ୍ୱାକାଂକ୍ଷୀ ଯାତ୍ରା

ଅବ୍ୟାହତ ରହିଛି । ସ୍କିଲ୍ଡ-ଇନ୍-ଓଡ଼ିଶା ବ୍ରାଣ୍ଡକୁ ବିଶ୍ୱସ୍ତରୀୟ ବାସ୍ତବତାରେ ପରିଣତ କରିବା ପାଇଁ ଓଡ଼ିଶା ଦକ୍ଷତା ବିକାଶ ପ୍ରାଧିକରଣ ଏବଂ ଅନ୍ୟ ଅଂଶୀଦାରମାନେ ଏହି କ୍ଷେତ୍ରର ଗୁଣବତ୍ତା ଏବଂ ପ୍ରାସଙ୍ଗିକତାରେ ଉନ୍ନତି ଆଣିବା ପାଇଁ ସେମାନଙ୍କ ପ୍ରୟାସ ଜାରି ରଖିଛନ୍ତି । ରାଜ୍ୟର ୯୦୧ଟି ମାଧ୍ୟମିକ ଓ ଉଚ୍ଚ ମାଧ୍ୟମିକ ବିଦ୍ୟାଳୟରେ ଧନ୍ଦାମୂଳକ ଶିକ୍ଷା ଦିଆଯାଉଛି, ଯେଉଁଥିରେ ୧୧ଟି ଭିନ୍ନ ଭିନ୍ନ ଧନ୍ଦାମୂଳକ ବିଷୟରେ ୧.୧୩ ଲକ୍ଷ ଛାତ୍ରଛାତ୍ରୀ ଶିକ୍ଷାଲାଭ କରୁଛନ୍ତି । ଆମ ସରକାରୀ ଶିଳ୍ପ ତାଲିମ ଅନୁଷ୍ଠାନ ଜାତୀୟ ସ୍ତରର ଗ୍ରେଡିଂ ପ୍ରକ୍ରିୟାରେ ଅଂଶଗ୍ରହଣ କରି ନିଜର ଉତ୍କର୍ଷ ପ୍ରମାଣିତ କରିଛନ୍ତି । ଦକ୍ଷତା ବିକାଶ ଓ ଉଦ୍ୟମିତା ମନ୍ତ୍ରାଳୟର ପ୍ରଶିକ୍ଷଣ ମହାନିର୍ଦ୍ଦେଶାଳୟ ଦ୍ୱାରା ବର୍ଗୀକୃତ ୧୨,୧୬୦ ଶିଳ୍ପ ତାଲିମ ଅନୁଷ୍ଠାନ ମଧ୍ୟରୁ ଆମ ରାଜ୍ୟର ୬ଟି ସରକାରୀ ଏବଂ ୪ଟି ଘରୋଇ ଶିଳ୍ପ ତାଲିମ ଅନୁଷ୍ଠାନ ଦେଶର ଶ୍ରେଷ୍ଠ ୧୦୦ ମଧ୍ୟରେ ରହିଛନ୍ତି ।

୮୨. ସୁନ୍ଦରଗଡ଼ ଜିଲ୍ଲାର କୋଇଡାସ୍ଥିତ ନୂତନ ସରକାରୀ ଶିଳ୍ପ ତାଲିମ ଅନୁଷ୍ଠାନ ଓଡ଼ିଶା ଖଣି ନିଗମ ଲିମିଟେଡ୍ ସହ ଭାଗିତାରେ ୨୦୨୨-୨୩ରେ ଏକ ମାଇନିଂ ସ୍କିଲ୍ ଏକାଡେମୀ ଭାବେ କାର୍ଯ୍ୟକ୍ଷମ ହୋଇଛି । ଯାଜପୁର ଶିଳ୍ପ ତାଲିମ ଅନୁଷ୍ଠାନରେ ଥର୍ମାଲ କଟିଂ ଓ ୱେଲ୍ଡିଂ ଉତ୍କର୍ଷ କେନ୍ଦ୍ର କାର୍ଯ୍ୟକ୍ଷମ ହୋଇଛି । ବଡବିଲ ଓ ରାଉରକେଲା ଶିଳ୍ପ ତାଲିମ ଅନୁଷ୍ଠାନରେ ବେଙ୍ଗାଲୁରୁସ୍ଥିତ ମହିନ୍ଦ୍ରା ଇଲେକ୍ଟ୍ରିକ୍ ମୋବିଲିଟି ଲିମିଟେଡ୍ ଦ୍ୱାରା ପ୍ରାୟୋଜିତ ଇ-ଯାନ ଲ୍ୟାବ୍ ପ୍ରତିଷ୍ଠା କରାଯାଇଛି । ଶିଳ୍ପ ତାଲିମ ଅନୁଷ୍ଠାନ, ତକତପୁରଠାରେ ଆଡଭାନ୍ସ ୱେଲ୍ଡିଂ ସହିତ ରୋବୋଟିକ୍ସ ଉତ୍କର୍ଷ କେନ୍ଦ୍ର ପ୍ରତିଷ୍ଠା କରାଯାଇଥିବା ବେଳେ ମୟୂରଭଞ୍ଜ ସରକାରୀ ପଲିଟେକ୍ନିକ୍‌ରେ ଆଡଭାନ୍ସ ମେକାଟ୍ରୋନିକ୍ସ ଉତ୍କର୍ଷ କେନ୍ଦ୍ର ପ୍ରତିଷ୍ଠା କରାଯାଇଛି ।

୮୩. ୧୦ଟି ମନୋନୀତ ସରକାରୀ ଶିଳ୍ପ ତାଲିମ ଅନୁଷ୍ଠାନରେ ଶିଳ୍ପ ମାନବୃଦ୍ଧି ପାଇଁ ଦକ୍ଷତା ସୁଦୃଢ଼ୀକରଣ କାର୍ଯ୍ୟକ୍ରମ ସଫଳତାର ସହ କାର୍ଯ୍ୟକାରୀ କରାଯାଇଛି । ଏହି ପ୍ରଦର୍ଶନକୁ ଆଧାର କରି ନୂଆଦିଲ୍ଲୀସ୍ଥିତ ପ୍ରଶିକ୍ଷଣ ମହାନିର୍ଦ୍ଦେଶାଳୟ ୨୦୨୨-୨୩ ବର୍ଷରେ ଷ୍ଟ୍ରାଇଭ୍ ତୃତୀୟ ପର୍ଯ୍ୟାୟ କାର୍ଯ୍ୟକ୍ରମ ଅଧୀନରେ ଆହୁରି ୧୭ଟି ଶିଳ୍ପ ତାଲିମ ଅନୁଷ୍ଠାନକୁ ବିଚାରକୁ ନେଇଛି । ଇଣ୍ଟରନେଟ୍ ଅଫ୍ ଥିଙ୍ଗସ୍ ଏବଂ ନ୍ୟୁ ଏଜ୍ ଟ୍ରେଡ୍‌ସ ଇନ୍ ସ୍ମାର୍ଟ ସିଟି, ସ୍ମାର୍ଟ ଏଗ୍ରିକଲ୍ଚର, ସ୍ମାର୍ଟ ହେଲ୍‌ଥ କେୟାର, ସ୍ମାର୍ଟ ଫୋନ୍ ଟେକ୍ନିସିଆନ୍, ମେକାଟ୍ରୋନିକ୍ସ ଟେକ୍ନିସିଆନ୍, ସୋଲାର ଟେକ୍ନିସିଆନ୍, ଆଡିଟିଭ୍ ମ୍ୟାନୁଫାକ୍ଚରିଂ/ ଥ୍ରୀ-ଡି ପ୍ରିଣ୍ଟିଂ, ଡ୍ରୋନ୍ ପାଇଲଟ୍/ଟେକ୍ନିସିଆନ୍ ଭଳି ନୂଆ ଯୁଗର ଧନ୍ଦାମୂଳକ ବିଷୟକୁ ଜାତୀୟ ଧନ୍ଦାମୂଳକ ପ୍ରଶିକ୍ଷଣ ପରିଷଦ ସହ ଅନୁବନ୍ଧନ ଜରିଆରେ ଷ୍ଟ୍ରାଇଭ୍ କାର୍ଯ୍ୟକ୍ରମ ଦ୍ୱାରା ଚୟନ ହୋଇଥିବା ଶିଳ୍ପ ତାଲିମ ଅନୁଷ୍ଠାନରେ ଆରମ୍ଭ କରାଯାଇଛି ।

୮୪. ଉଚ୍ଚଶିକ୍ଷା କ୍ଷେତ୍ରରେ ମୋ ସରକାରଙ୍କ ପଦକ୍ଷେପ ଉଚ୍ଚଶିକ୍ଷାର ସମସ୍ତ ବର୍ଗରେ ଶ୍ରେଷ୍ଠତ୍ୱ ହାସଲ କରିବା ଲକ୍ଷ୍ୟ ଉପରେ ଆଧାରିତ ଏବଂ ଏହାର କାର୍ଯ୍ୟକାରିତାରେ ଉପଲବ୍ଧତା, ସମାନତା ଏବଂ ଅନ୍ତର୍ଭୁକ୍ତିକରଣକୁ ସର୍ବୋଚ୍ଚ ପ୍ରାଧାନ୍ୟ ଦିଆଯାଇଛି । ଡିଜିଟାଇଜେସନ୍, ଭିତ୍ତିଭୂମି ଉନ୍ନୟନ, ଶିକ୍ଷଣ ଉପକରଣ, ନିୟାମକ ଅନୁପାଳନ, ବିଦ୍ୟାର୍ଥୀ ସୁବିଧା ଏବଂ ପ୍ରଶାସନିକ ପରିଚାଳନା ମାଧ୍ୟମରେ ଶିକ୍ଷାର ଗୁଣାତ୍ମକ ମାନ, ଗବେଷଣା ଓ ଅଭିନବକରଣ, ଶିଳ୍ପ-ଶିକ୍ଷା ସଂଯୋଗ, ଗୋଷ୍ଠୀ ସଂଯୋଗ, ଉଦ୍ୟମିତା ଓ ଉଦ୍‌ଭବନ, ଦକ୍ଷତା, କ୍ୟାରିୟର କାଉନସେଲିଂ ଏବଂ ନିଯୁକ୍ତି, ଆନ୍ତର୍ଜାତୀକରଣ, ସୂଚନା ଯୋଗାଯୋଗ, ପ୍ରଯୁକ୍ତି ଏବଂ ଇ-ଗଭର୍ଣ୍ଣାନ୍ସ ଆଦି ସମସ୍ତ ଉଚ୍ଚଶିକ୍ଷା ମାନଦଣ୍ଡରେ ବିଶ୍ୱସ୍ତରୀୟ ଶ୍ରେଷ୍ଠତା ହାସଲ କରିବା ଏହାର ମୂଳ ଉଦ୍ଦେଶ୍ୟ ।

୮୫. ରାଜ୍ୟର ସମସ୍ତ ବିଶ୍ୱବିଦ୍ୟାଳୟ ଏବଂ ବେସରକାରୀ ଅନୁଦାନପ୍ରାପ୍ତ ମହାବିଦ୍ୟାଳୟର ପୂର୍ବତନ ଛାତ୍ରଛାତ୍ରୀଙ୍କୁ ନିଜ ଶିକ୍ଷାନୁଷ୍ଠାନ ସହ ଯୋଡ଼ିବା 'ମୋ କଲେଜ ଅଭିଯାନ'ର ମୂଳ ଲକ୍ଷ୍ୟ । ମହାବିଦ୍ୟାଳୟର ପାରିପାର୍ଶ୍ୱିକ ଉନ୍ନୟନ ପାଇଁ ସ୍ୱେଚ୍ଛାକୃତ ସେବା ପ୍ରଦାନ କରିବାକୁ ଚାହୁଁଥିବା ପୂର୍ବତନ ଛାତ୍ରଛାତ୍ରୀମାନଙ୍କୁ ଏହା ଏକ ସୁଯୋଗ ପ୍ରଦାନ କରିଥାଏ । 'ମୋ କଲେଜ' କାର୍ଯ୍ୟକ୍ରମ ପରିଚାଳନା ନିମନ୍ତେ ସ୍ୱେଚ୍ଛାକୃତ ଅନୁଦାନକାରୀମାନଙ୍କ ଅନୁଦାନ ସହ ସମାନତା ରକ୍ଷା ପୂର୍ବକ ୨ଗୁଣ ଅନୁଦାନ ରାଜ୍ୟ ସରକାରଙ୍କଠାରୁ ମିଳିଥାଏ ।

୮୬. ଓଡ଼ିଆ ବିଶ୍ୱବିଦ୍ୟାଳୟ ଅଧିନିୟମ, ୨୦୧୭ ଅନୁଯାୟୀ ଓଡ଼ିଆ ବିଶ୍ୱବିଦ୍ୟାଳୟ ସ୍ଥାପିତ ହୋଇଛି । ଏହା ଏକ ଅଣ–ଅନୁବନ୍ଧିତ ଏକକ ବିଶ୍ୱବିଦ୍ୟାଳୟ । ବିଶ୍ୱବିଦ୍ୟାଳୟ ପାଇଁ ୯.୬୦ ଏକର ଜମି ଅଧିଗ୍ରହଣ ହୋଇସାରିଥିବା ବେଳେ ସତ୍ୟବାଦୀସ୍ଥିତ ଓଡ଼ିଆ ବିଶ୍ୱବିଦ୍ୟାଳୟରେ ପାଞ୍ଚଟି ବିଭାଗ ଖୋଲିବା ପାଇଁ ଭିତ୍ତିଭୂମି ବିକାଶ କାର୍ଯ୍ୟ ଆରମ୍ଭ ହୋଇସାରିଛି । ବୁର୍ଲାସ୍ଥିତ ବୀର ସୁରେନ୍ଦ୍ର ସାଏ ବୈଷୟିକ ବିଶ୍ୱବିଦ୍ୟାଳୟ ପାଇଁ ୫ ବର୍ଷ ମଧ୍ୟରେ ୩ଟି ପର୍ଯ୍ୟାୟରେ ୨ହଜାର କୋଟି ଟଙ୍କା ବ୍ୟୟ କରାଯାଇ ୨୦୩୦ ମସିହା ସୁଦ୍ଧା ଏହାକୁ ଏକ ବହୁବିଷୟୀ ଯାନ୍ତ୍ରିକ ଏବଂ ଗବେଷଣା ବିଶ୍ୱବିଦ୍ୟାଳୟରେ ପରିଣତ କରିବା ପାଇଁ ମୋ ସରକାର ମାଷ୍ଟର ପ୍ଲାନ୍‌କୁ ଅନୁମୋଦନ କରିଛନ୍ତି । ଓଡ଼ିଶା ବୈଷୟିକ ଓ ଗବେଷଣା ବିଶ୍ୱବିଦ୍ୟାଳୟର ରୂପାନ୍ତର ପାଇଁ ୧,୫୦୦ କୋଟି ଟଙ୍କା ବ୍ୟୟ ଅଟକଳରେ ମାଷ୍ଟର ପ୍ଲାନ୍ କାର୍ଯ୍ୟକାରୀ କରିବାକୁ ମୋ ସରକାର ଅନୁମୋଦନ କରିଛନ୍ତି । ଏହି ପରିବର୍ତ୍ତନ ସହିତ ଓଡ଼ିଶା ବୈଷୟିକ ଓ ଗବେଷଣା ବିଶ୍ୱବିଦ୍ୟାଳୟ ଏହାର ଶିକ୍ଷାଦାନ ପରିସୀମାକୁ ପରିବ୍ୟାପ୍ତ କରିବା ସହ ବୈଷୟିକ ଶିକ୍ଷା ଓ ଗବେଷଣାକୁ ପ୍ରୋତ୍ସାହିତ କରିବ ।

୮୭. ମୋ ସରକାର ବୃତ୍ତିଗତ ଶିକ୍ଷା ପାଇଁ ଛାତ୍ରଛାତ୍ରୀଙ୍କୁ ବାର୍ଷିକ ୧୦ ହଜାର ଟଙ୍କାର ଛାତ୍ରବୃତ୍ତି ପ୍ରଦାନ କରୁଥିବା ବେଳେ ଇଣ୍ଟରମିଡିଏଟ୍, ସ୍ନାତକ ଓ ସ୍ନାତକୋତ୍ତର ଛାତ୍ରଛାତ୍ରୀଙ୍କୁ ଯଥାକ୍ରମେ କନିଷ୍ଠ ମେଧାବୃତ୍ତି, ବରିଷ୍ଠ ମେଧାବୃତ୍ତି ଏବଂ ସ୍ନାତକୋତ୍ତର ମେଧାବୃତ୍ତି ପ୍ରଦାନ କରୁଛନ୍ତି । ମହାବିଦ୍ୟାଳୟ ସ୍ତରରେ ଓଡ଼ିଆ ଭାଷାକୁ ପ୍ରୋତ୍ସାହିତ କରିବା ପାଇଁ 'ବ୍ୟାସକବି ଫକୀର ମୋହନ ଛାତ୍ରବୃତ୍ତି' ପ୍ରତିଷ୍ଠା କରାଯାଇଛି, ଯେଉଁଥିରେ ଯୋଗ୍ୟ ଛାତ୍ରଛାତ୍ରୀଙ୍କୁ ଏକକାଳୀନ ୨୦ ହଜାର ଟଙ୍କାର ଛାତ୍ରବୃତ୍ତି ପ୍ରଦାନ କରାଯାଉଛି ।

୮୮. ମୋ ସରକାର ସ୍ଥାନୀୟ ଲୋକଙ୍କ ସହଯୋଗରେ ଭାଗିଦାରୀ ପଦ୍ଧତିରେ ଜଙ୍ଗଲ ଓ ସବୁଜ ବଳୟର ସୁରକ୍ଷା, ପୁନରୁଦ୍ଧାର ଏବଂ ସମ୍ପ୍ରସାରଣ ପାଇଁ ବିଭିନ୍ନ କାର୍ଯ୍ୟକ୍ରମ ହାତକୁ ନେଉଛନ୍ତି । ଇଣ୍ଡିଆ ଷ୍ଟେଟ୍ ଅଫ୍ ଫରେଷ୍ଟ ରିପୋର୍ଟ, ୨୦୨୧ ଅନୁଯାୟୀ ଓଡ଼ିଶା ୫୩୭.୪୪ ବର୍ଗ କିଲୋମିଟର ଜଙ୍ଗଲ କ୍ଷେତ୍ର ବୃଦ୍ଧି କରିଛି । ଦେଶର ସମସ୍ତ ରାଜ୍ୟ ମଧ୍ୟରେ ଏହା ଜଙ୍ଗଲ ଅଭିବୃଦ୍ଧିରେ ତୃତୀୟ ସ୍ଥାନରେ ରହିଛି । ଗତ ଦୁଇ ବର୍ଷ ମଧ୍ୟରେ ହେନ୍ତାଳ ବଣ ବୃଦ୍ଧିରେ ଏହା ସମସ୍ତ ରାଜ୍ୟ ମଧ୍ୟରେ ଶୀର୍ଷରେ ରହିଛି । ଏତଦ୍‌ବ୍ୟତୀତ ପରିସୀମା ଆଧାରରେ ଶିମିଳିପାଳ ବ୍ୟାଘ୍ର ଅଭୟାରଣ୍ୟକୁ ଦେଶର ଶ୍ରେଷ୍ଠ ୩ ବ୍ୟାଘ୍ର ଅଭୟାରଣ୍ୟ ମଧ୍ୟରେ ସ୍ଥାନିତ କରାଯାଇଛି । ଯୁଗ୍ମ ଜଙ୍ଗଲ ପରିଚାଳନା କାର୍ଯ୍ୟକ୍ରମର ଫଳ ଭୋଗ ବ୍ୟବସ୍ଥା ଅନୁଯାୟୀ ଜଙ୍ଗଲ ସୁରକ୍ଷା ପାଇଁ ୧୬,୧୨୮ ବନ ସୁରକ୍ଷା ସମିତି ଜରିଆରେ ପ୍ରାୟ ୧୩,୮୫୬ ବର୍ଗ କିଲୋମିଟର ଜଙ୍ଗଲ ଅଞ୍ଚଳକୁ ଏହି କାର୍ଯ୍ୟକ୍ରମ ଅଧୀନକୁ ଅଣାଯାଇଛି, ଯେଉଁଥିରେ ୨୦୧୧ ପରିବାର ଅନ୍ତର୍ଭୁକ୍ତ ହୋଇଛନ୍ତି । ସଂରକ୍ଷିତ ଅଞ୍ଚଳ ଭିତରେ ଓ ଏହାର ଆଖପାଖ ଅଞ୍ଚଳରେ ଏ ପର୍ଯ୍ୟନ୍ତ ୫୯୪ଟି ପରିବେଶ ବିକାଶ ସମିତି ଗଠନ କରାଯାଇଛି ।

୮୯. ପରିବେଶ, ବନ୍ୟଜନ୍ତୁ ଏବଂ ପ୍ରାକୃତିକ ସମ୍ପଦର ସଂରକ୍ଷଣ, ସୁରକ୍ଷା ଓ ପୋଷଣ ପାଇଁ ପ୍ରକଳ୍ପ ଏବଂ କାର୍ଯ୍ୟକ୍ରମ କାର୍ଯ୍ୟକାରୀ କରିବାରେ ମୋ ସରକାରଙ୍କ ନିରନ୍ତର ପ୍ରୟାସ ଯୋଗୁଁ ଏହା ସମ୍ଭବ ହୋଇପାରିଛି । ଗତ ୫ ବର୍ଷ ମଧ୍ୟରେ ବିଶ୍ୱ ପରିବେଶ ଦିବସ ଅବସରରେ ମୋ ସରକାର ୮୦୪ଟି ସ୍ୱେଚ୍ଛାସେବୀ ଅନୁଷ୍ଠାନ/ ଗ୍ରାମ/ଶିକ୍ଷାନୁଷ୍ଠାନକୁ 'ପ୍ରକୃତି ମିତ୍ର' ଏବଂ ୮୫୩ ଜଣ ବ୍ୟକ୍ତିଙ୍କୁ 'ପ୍ରକୃତି ବନ୍ଧୁ' ପୁରସ୍କାର ପ୍ରଦାନ କରିଛନ୍ତି । ଚିଲିକା ଓ ଅଂଶୁପା ହ୍ରଦ ଏବଂ ଏହାର ଅବବାହିକା କ୍ଷେତ୍ରର ପ୍ରାକୃତିକ ପରିବେଶ ପୁନରୁଦ୍ଧାର ଓ ସ୍ଥାୟୀ ପରିଚାଳନା ପାଇଁ ଚିଲିକା ଉନ୍ନୟନ କର୍ତ୍ତୃପକ୍ଷ ଅନୁମୋଦିତ ଆକ୍ସନ ପ୍ଲାନକୁ କାର୍ଯ୍ୟକାରୀ କରୁଛନ୍ତି ।

୯୦. ଓଡ଼ିଶା ଏହାର ସାଂସ୍କୃତିକ ବିବିଧତା ପାଇଁ ସୁପରିଚିତ । ଏହାର ସମୃଦ୍ଧ ସାଂସ୍କୃତିକ ଐତିହ୍ୟ, ସାହିତ୍ୟିକ ପରମ୍ପରା, ଐତିହାସିକ କୀର୍ତ୍ତିରାଜି, ପ୍ରତ୍ନତାତ୍ତ୍ୱିକ କ୍ଷେତ୍ର, ଜନଜାତି ଓ ପାରମ୍ପରିକ କଳା, ସ୍ଥାପତ୍ୟ, ନୃତ୍ୟ ଓ ସଙ୍ଗୀତ, ଚିତ୍ରକଳା, ହସ୍ତତନ୍ତ ଏବଂ ହସ୍ତଶିଳ୍ପ ପର୍ଯ୍ୟଟକ, ବିଦ୍ୱାନ ଓ ଗବେଷକମାନଙ୍କୁ ଆକୃଷ୍ଟ କରିବା ସହିତ ଏହାର କଳାତ୍ମକ ଶ୍ରେଷ୍ଠତାର ଅସଂଖ୍ୟ ଦିଗକୁ ଉପଭୋଗ ତଥା ଉପଲବ୍ଧି କରିବା ପାଇଁ ଆକର୍ଷିତ କରିଥାଏ । ଓଡ଼ିଆ ଭାଷା, ସାହିତ୍ୟ, ସଙ୍ଗୀତ, ନୃତ୍ୟ, ନାଟକ, ଓଡ଼ିଶୀ ନୃତ୍ୟ, ଚିତ୍ରକଳା ଏବଂ ଓଡିଶାର ସଂସ୍କୃତି ଓ ଐତିହ୍ୟର ସୁରକ୍ଷା ଓ ପ୍ରଚାର ପ୍ରସାର ପାଇଁ ମୋ ସରକାର ଓଡ଼ିଶା ସାହିତ୍ୟ ଏକାଡେମୀ, ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ, ଓଡ଼ିଶା ଲଳିତ କଳା ଏକାଡେମୀ, ଓଡ଼ିଶା ଉର୍ଦ୍ଦୁ ଏକାଡେମୀ, ଗୁରୁ କେଳୁ ଚରଣ ମହାପାତ୍ର ଓଡ଼ିଶୀ ଗବେଷଣା କେନ୍ଦ୍ର, ଓଡ଼ିଶା ରାଜ୍ୟ ଅଭିଲେଖାଗାର ଏବଂ ଓଡ଼ିଶା ରାଜ୍ୟ ସଂଗ୍ରହାଳୟ ଭଳି ଅନୁଷ୍ଠାନମାନଙ୍କ ମାଧ୍ୟମରେ ବ୍ୟାପକ ତଥା ବ୍ୟବସ୍ଥିତ ପଦକ୍ଷେପ ନେଉଛନ୍ତି ।

୯୧. 'ମୁଖ୍ୟମନ୍ତ୍ରୀ କଳାକାର ସହାୟତା ଯୋଜନା'ରେ ବର୍ତ୍ତମାନ ୨୭,୪୭୮ ଜଣ ଦୁଃସ୍ଥ କଳାକାରଙ୍କୁ ସାମାଜିକ ସୁରକ୍ଷା ଯୋଗାଇ ଦିଆଯାଉଛି । ମୋ ସରକାର ଏହି ଯୋଜନାରେ ୫୦,୦୦୦ ଦୁଃସ୍ଥ କଳାକାରଙ୍କୁ ସହାୟତା କରିବା ପାଇଁ ଲକ୍ଷ୍ୟ ରଖିଛନ୍ତି ।

୯୨. ୧୯୯୯ ମହାବାତ୍ୟାର ବିପର୍ଯ୍ୟୟ ପରେ ପ୍ରାକୃତିକ ବିପର୍ଯ୍ୟୟର ଉପଯୁକ୍ତ ଭାବେ ପରିଚାଳନା କରିବାରେ ଓଡ଼ିଶା ବହୁ ବାଟ ଆଗକୁ ଆସିଛି । ପ୍ରାକୃତିକ ବିପର୍ଯ୍ୟୟରେ ମୋ ସରକାରଙ୍କ 'ବିନା ଜୀବନହାନୀ' ଆଭିମୁଖ୍ୟ ଜାତୀୟ ଓ ଅନ୍ତର୍ଜାତୀୟ ସ୍ତରରେ 'ଓଡ଼ିଶା ମଡେଲ୍' ଭାବରେ ଅଭିହିତ ହୋଇଛି । ପ୍ରଭାବୀ ଗୋଷ୍ଠୀସ୍ତରୀୟ ସତର୍କ ସୂଚନା, ବହୁମୁଖୀ ବାତ୍ୟା ଆଶ୍ରୟସ୍ଥଳୀ ନିର୍ମାଣ, ତୃଣମୂଳସ୍ତରୀୟ ବିପର୍ଯ୍ୟୟ ସଚେତନତା, ପ୍ରଶିକ୍ଷଣ ଓ ପ୍ରସ୍ତୁତି ଏବଂ ତୃଣମୂଳ ସ୍ତର ପର୍ଯ୍ୟନ୍ତ ପ୍ରାରମ୍ଭିକ ସତର୍କ ସୂଚନା ପ୍ରସାରଣ ବ୍ୟବସ୍ଥା କରିବାରେ ରାଜ୍ୟ ସରକାରଙ୍କ ନିରନ୍ତର ପ୍ରୟାସ ଯୋଗୁଁ ଏହା ସମ୍ଭବ ହୋଇଛି ।

୯୩. ମୋ ସରକାର ଆପଦକାଳୀନ ସ୍ଥିତି ଏବଂ ପ୍ରାକୃତିକ ବିପର୍ଯ୍ୟୟର ମୁକାବିଲା ପାଇଁ କେତେକ ପରିବର୍ତ୍ତନକାରୀ ସର୍ବୋତ୍କୃଷ୍ଟ ଉପାୟ କାର୍ଯ୍ୟକାରୀ କରିଛନ୍ତି । ଜାତୀୟ ବାତ୍ୟା ବିପଦ ପ୍ରଶମନ ପ୍ରକଳ୍ପ ଅଧୀନରେ ୬ଟି ଉପକୂଳବର୍ତ୍ତୀ ଜିଲ୍ଲା ବାଲେଶ୍ୱର, ଭଦ୍ରକ, କେନ୍ଦ୍ରାପଡ଼ା, ଜଗତସିଂହପୁର, ପୁରୀ ଓ ଗଞ୍ଜାମରେ ପ୍ରାରମ୍ଭିକ ସତର୍କ ସୂଚନା ପ୍ରସାରଣ ବ୍ୟବସ୍ଥା କାର୍ଯ୍ୟ କରୁଛି । ଏହି ଭଳି ପ୍ରକଳ୍ପ ଭାରତରେ ପ୍ରଥମ । ଗୋପାଳପୁର ଏବଂ ପାରାଦୀପରେ ଥିବା ଡପ୍‌ଲର୍ ରାଡାର୍ ଷ୍ଟେସନ ବର୍ତ୍ତମାନ ସମ୍ପୂର୍ଣ୍ଣ କାର୍ଯ୍ୟକ୍ଷମ ହୋଇଛି, ଯାହା ପାଣିପାଗ ପୂର୍ବାନୁମାନ କରିବାରେ ଆଇଏମ୍‌ଡିକୁ ସାହାଯ୍ୟ କରୁଛି ଏବଂ ସମୟୋପଯୋଗୀ ସଠିକତା ସହିତ ଅନ୍ୟାନ୍ୟ ପ୍ରାସଙ୍ଗିକ ସୂଚନା ପ୍ରଦାନ କରୁଛି ।

୯୪. ଗତ ପାଞ୍ଚ ବର୍ଷ ମଧ୍ୟରେ ରାଜ୍ୟରେ ବାମପନ୍ଥୀ ଉଗ୍ରବାଦ ପରିସ୍ଥିତିର ଦୃଢ଼ ମୁକାବିଲା କରାଯାଇଛି । ମୋ ସରକାର ଏବଂ ସୁରକ୍ଷା ବାହିନୀର ଆଗୁଆ ପଦକ୍ଷେପ ଯୋଗୁଁ ବାମପନ୍ଥୀ ଉଗ୍ରବାଦ ପ୍ରଭାବିତ ଜିଲ୍ଲା ସଂଖ୍ୟା ବର୍ତ୍ତମାନ ୨୧ରୁ ୧୦କୁ ହ୍ରାସ ପାଇଛି । ବାମପନ୍ଥୀ ଉଗ୍ରବାଦ ବିରୋଧୀ ଅଭିଯାନରେ ରାଜ୍ୟ ଯେଉଁ ସଫଳତା ହାସଲ କରିଛି, ତାହାର ସବୁଠାରୁ ବଡ଼ ଉଦାହରଣ ହେଉଛି ମାଲକାନଗିରି ସ୍ୱାଭିମାନ ଅଞ୍ଚଳର ଦୃଶ୍ୟପଟ୍ଟରେ ଆମୂଳଚୂଳ ପରିବର୍ତ୍ତନ ।

୯୫. ମୋ ସରକାର ଭୁବନେଶ୍ୱରରେ ଏକ କମାଣ୍ଡ ସେଣ୍ଟର ପରିଚାଳନାଧୀନ 'ଜରୁରିକାଳୀନ ପ୍ରତିକ୍ରିୟା ସହାୟତା ବ୍ୟବସ୍ଥା' ମାଧ୍ୟମରେ ପୋଲିସ ସେବା, ଅଗ୍ନିଶମ ସେବା, ମହିଳା ଏବଂ ଶିଶୁ ହେଲ୍ପ ଲାଇନକୁ ବର୍ତ୍ତମାନ ଏକକ ହେଲ୍ପ ଲାଇନ ନଂ.୧୧୨ ଅଧୀନକୁ ଅଣାଯାଉଛି । ରାଜ୍ୟ ତଥା ରାଜ୍ୟ ବାହାରେ ବିଭିନ୍ନ ପ୍ରାକୃତିକ ବିପର୍ଯ୍ୟୟ ସମୟରେ ରିଲିଫ୍ ଓ ଉଦ୍ଧାର କାର୍ଯ୍ୟରେ ଓଡ଼ିଶା ଅଗ୍ନିଶମ ବିଭାଗ ପ୍ରଶଂସନୀୟ କାର୍ଯ୍ୟ କରିଛି ।

୯୬. ମୋ ସରକାର ବର୍ତ୍ତମାନ ରାଜ୍ୟ ପୋଲିସରେ ମାନବ ସମ୍ବଳ ଆବଶ୍ୟକତା ଓ ନିଯୁକ୍ତି ଉପରେ ଗୁରୁତ୍ୱାରୋପ କରୁଛନ୍ତି । ୨୦୨୨ ମସିହା ପାଇଁ ଦେଶର ଶ୍ରେଷ୍ଠ ୩ଟି ଥାନା ମଧ୍ୟରୁ ଗଞ୍ଜାମ ଜିଲ୍ଲାର ଆସିକା ଥାନାକୁ ଗୃହ ମନ୍ତ୍ରାଳୟ ଦ୍ୱାରା ଅନ୍ୟତମ ପୋଲିସ ଥାନା ଭାବରେ ମନୋନୀତ କରାଯାଇଛି । ଏହାକୁ ୨୦୨୨ ପାଇଁ କ୍ରାଇମ ଆଣ୍ଡ କ୍ରିମିନାଲ ଟ୍ରାକିଂ ନେଟ୍ୱାର୍କ ଆଣ୍ଡ ସିଷ୍ଟମ (ସି.ସି.ଟି.ଏନ୍.ଏସ୍.) ଡ୍ୟାସବୋର୍ଡ ନିମନ୍ତେ ମଧ୍ୟ ଶ୍ରେଷ୍ଠ ପୋଲିସ ଷ୍ଟେସନ ଭାବେ ଘୋଷଣା କରାଯାଇଛି । ଫରେନସିକ୍ ସାଇନ୍ସ ଲ୍ୟାବ୍ ସହିତ ଆନ୍ତଃ ଚଳନକ୍ଷମ ଅପରାଧୀକ ନ୍ୟାୟ ବ୍ୟବସ୍ଥା (ଆଇ.ସି.ଜେ.ଏସ୍.)ର ଏକୀକରଣ ପାଇଁ ସି.ସି.ଟି.ଏନ୍.ଏସ୍./ଆଇ.ସି.ଜେ.ଏସ୍.ର ଉତ୍ତମ ଅଭ୍ୟାସ ସମ୍ପର୍କିତ ଚତୁର୍ଥ ସମ୍ମିଳନୀରେ ଓଡ଼ିଶା ପୋଲିସ ଦ୍ୱିତୀୟ ସ୍ଥାନ ହାସଲ କରିଛି ।

୯୭. ଧାର୍ଯ୍ୟ ସମୟ ମଧ୍ୟରେ ନାଗରିକମାନଙ୍କୁ ସମସ୍ତ ଅଧିସୂଚିତ ସେବା ପ୍ରଦାନ କରିବା ପାଇଁ ମୋ ସରକାର 'ଓଡ଼ିଶା ଜନସେବା ଅଧିକାର ଆଇନ–୨୦୧୨' ପ୍ରଣୟନ କରିଛନ୍ତି । ବର୍ତ୍ତମାନ ସୁଦ୍ଧା ୪୧ଟି ବିଭାଗର ୪୧୧ଟି ଜନସେବାକୁ ଏହି ଅଧିନିୟମ ଅନୁଯାୟୀ ସୂଚିତ କରାଯାଇଛି । ସର୍ବସାଧାରଣ ସେବା ପ୍ରଦାନ ସମ୍ପର୍କରେ ନାଗରିକମାନଙ୍କ ଦ୍ୱାରା ଦାଖଲ ଅନ୍‌ଲାଇନ୍ ଆବେଦନ ଓ ପୁନର୍ବିଚାର ନିର୍ଦ୍ଦିଷ୍ଟ ଉଚ୍ଚ କର୍ତ୍ତୃପକ୍ଷଙ୍କ ଦ୍ୱାରା ତଦାରଖ କରିବା ସହିତ ଏହି ଆଇନ ଅଧୀନରେ ଅଧିସୂଚିତ ସମସ୍ତ ଅନ୍‌ଲାଇନ୍ ସେବା ପ୍ରଦାନ ଉପରେ ନଜର ରଖିବା ପାଇଁ ଏକ 'ସେଣ୍ଟ୍ରାଲ୍ ମନିଟରିଂ ସିଷ୍ଟମ୍' ବିକଶିତ କରାଯାଇଛି । 'ସେଣ୍ଟ୍ରାଲ ମନିଟରିଂ ସିଷ୍ଟମ୍'କୁ 'ଓଡ଼ିଶା ୱାନ୍' ପୋର୍ଟାଲ୍ ସହ ସଂଯୋଗ କରାଯାଇଛି ।

୯୮. ଓଡ଼ିଶା ଉଚ୍ଚ ନ୍ୟାୟାଳୟ ଏବଂ ରାଜ୍ୟ ଶିକ୍ଷା ଟ୍ରିବ୍ୟୁନାଲର ଅଦାଲତୀ ମାମଲାଗୁଡ଼ିକର ଉତ୍ତମ ପରିଚାଳନା ସୁନିଶ୍ଚିତ କରିବା ପାଇଁ ମୋ ସରକାର 'ମୋକଦ୍ଦମା ପରିଚାଳନା ବ୍ୟବସ୍ଥା' କାର୍ଯ୍ୟକାରୀ କରିଛନ୍ତି । ମୋକଦ୍ଦମା ପରିଚାଳନା ବ୍ୟବସ୍ଥାର କାର୍ଯ୍ୟକାରିତାକୁ ସୁଗମ କରିବା ପାଇଁ ଓଡ଼ିଶା ଉଚ୍ଚ ନ୍ୟାୟାଳୟର ବିଭିନ୍ନ ବିଭାଗର ଅଦାଲତି ମାମଲାଗୁଡ଼ିକୁ ସ୍କାନିଂ ଓ ସୂଚୀଭୁକ୍ତ କରାଯାଉଛି । ଓଡ଼ିଶା ଉଚ୍ଚ ନ୍ୟାୟାଳୟଙ୍କ ନିର୍ଦ୍ଦେଶକୁ ଠିକ୍ ସମୟରେ ପାଳନ କରିବା ପାଇଁ ଅନ୍ତରୀଣ ଆଦେଶ, ଚୂଡ଼ାନ୍ତ ନିଷ୍ପତ୍ତି ଓ ଅବମାନନା ମାମଲାଗୁଡିକୁ ଡିଜିଟାଲ୍ ଉପାୟରେ ଉଚ୍ଚ ନ୍ୟାୟାଳୟରୁ 'ମୋକଦ୍ଦମା ପରିଚାଳନା ବ୍ୟବସ୍ଥା'ରେ ଗ୍ରହଣ କରାଯାଉଛି ।

୯୯. ମୋ ସରକାରଙ୍କ 'ମୋ ସରକାର' କାର୍ଯ୍ୟକ୍ରମ ଓଡ଼ିଶାରେ ଜନସେବା ପ୍ରଦାନର ରୂପରେଖକୁ ବଦଳାଇ ଦେଇଛି । ଏକ ଦୃଢ଼ ଶାସନ ବ୍ୟବସ୍ଥା ସହିତ ବୈଷୟିକ ଜ୍ଞାନକୌଶଳର ସମ୍ମିଶ୍ରଣ ଏହାକୁ ପରିବର୍ତ୍ତନକାରୀ ଫଳାଫଳ ପ୍ରଦାନ କରିବାରେ ସକ୍ଷମ କରିଛି । ସାର୍ବଜନୀନ ସେବା ପ୍ରଦାନ ସମ୍ପର୍କରେ ଲୋକଙ୍କ ମତାମତ ପ୍ରଶାସନକୁ ଲୋକାଭିମୁଖୀ ଏବଂ ଗରିବ କଲ୍ୟାଣକାରୀ କରିବା ସହିତ ଏହାର '5T' ନୀତି ସହିତ ସମ୍ମିଶ୍ରଣରେ ଆମେ ବର୍ତ୍ତମାନ ଏକ ପ୍ରଯୁକ୍ତି ଭିତ୍ତିକ, ସ୍ୱଚ୍ଛ ଶାସନ ବ୍ୟବସ୍ଥା ଆଡକୁ ଅଗ୍ରସର ହେଉଛୁ, ଯାହା ସାମୂହିକ ପ୍ରୟାସ ମାଧ୍ୟମରେ ସମସ୍ତ ଜନସେବା ପ୍ରଦାନ ପ୍ରକ୍ରିୟାକୁ ନିର୍ଦ୍ଧାରିତ ସମୟ ସୀମା ମଧ୍ୟରେ ପରବର୍ତ୍ତୀ ପର୍ଯ୍ୟାୟରେ ରୂପାନ୍ତରଣ ପାଇଁ ଲକ୍ଷ୍ୟ ରଖିଛି ।

୧୦୦. ଆୟ ବହିର୍ଭୂତ ସମ୍ପତ୍ତି ଠୁଳ ମାମଲା ଚିହ୍ନଟ ଓ ପଞ୍ଜିକରଣରେ ଜାତୀୟ ଅପରାଧ ରେକର୍ଡ ବ୍ୟୁରୋ ଦ୍ୱାରା ଓଡ଼ିଶା ଭିଜିଲାନ୍ସ ଦେଶରେ ଏକ ନମ୍ବର ସ୍ଥାନର ମାନ୍ୟତା ହାସଲ କରିଛି । ଦୁର୍ନୀତି ମାମଲାଗୁଡିକର ପଞ୍ଜିକରଣ ଓ ସମାଧାନ ଏବଂ ଦୁର୍ନୀତିଗ୍ରସ୍ତ ସରକାରୀ କର୍ମଚାରୀଙ୍କୁ ଦୋଷୀ ସାବ୍ୟସ୍ତ କରିବା ଭଳି ସମସ୍ତ ପ୍ରମୁଖ ମାନଦଣ୍ଡରେ ଓଡ଼ିଶା ଭିଜିଲାନ୍ସ ଭାରତର ସର୍ବୋଚ୍ଚ ଦୁର୍ନୀତି ନିବାରଣ ସଂସ୍ଥା ମଧ୍ୟରେ ରହିଛି । ଦୁର୍ନୀତି ବିରୋଧରେ ମୋ ସରକାରଙ୍କ 'ଶୂନ୍ୟ ସହନଶୀଳତା' ଆଭିମୁଖ୍ୟ ଯୋଗୁଁ ତୃଣମୂଳ ସ୍ତରର ଲୋକଙ୍କୁ ମୌଳିକ ଜନସେବା ନିରପେକ୍ଷ ଓ ସ୍ୱଚ୍ଛ ଭାବରେ ଉପଲବ୍ଧ ହେଉଛି ଏବଂ କଲ୍ୟାଣକାରୀ ଓ ବିକାଶମୂଳକ ଯୋଜନାର ଲାଭ ପଛୁଆ, ଗରିବ ଏବଂ ଯୋଗ୍ୟ ଲୋକଙ୍କ ନିକଟରେ ପହଞ୍ଚି ପାରୁଛି ।

୧୦୧. ମୋ ସରକାର ସୂଚନା ପ୍ରଯୁକ୍ତି ବିଦ୍ୟା ବ୍ୟବହାର କରି ମିଶନ ମୋଡରେ ଜନସେବା ପ୍ରଦାନ ପାଇଁ ସମସ୍ତ ପଦକ୍ଷେପ ନେଉଛନ୍ତି । ସ୍ୱଚ୍ଛ ଉପାୟରେ ସଠିକ୍ ସମୟସୀମା ମଧ୍ୟରେ ଜନସାଧାରଣଙ୍କୁ ରାଜସ୍ୱ ସେବା ଯୋଗାଇବା ଦିଗରେ ଭୂଲେଖ, ଭୂନକ୍ସା, ଇ-ମ୍ୟୁଟେସନ୍, ଇ-ରେଜିଷ୍ଟ୍ରେସନ, ଇ-ପାଉତି ଓ ଇ-ସାର୍ଟିଫିକେଟ୍ ଭଳି ପ୍ରଯୁକ୍ତି ସକ୍ଷମ ସେବା କେତେଗୁଡ଼ିଏ ଉଲ୍ଲେଖନୀୟ ପଦକ୍ଷେପ । ଭୂ-ରାଜସ୍ୱ ପ୍ରଶାସନ ସମ୍ବନ୍ଧୀୟ ୩୪ଟି ଜନସେବାକୁ ଓଡ଼ିଶା ଜନସେବା ଅଧିକାର ଆଇନ ଅଧୀନରେ ସୂଚିତ କରାଯାଇ ନାଗରିକମାନଙ୍କୁ ଅନ୍‌ଲାଇନ୍‌ରେ ଏସବୁ ଜନସେବା ପ୍ରଦାନ କରାଯାଉଛି । ଏହାଦ୍ୱାରା ସରକାରୀ କାର୍ଯ୍ୟାଳୟ ଏବଂ ନାଗରିକମାନଙ୍କ ମଧ୍ୟରେ ଭୌତିକ ସମ୍ପର୍କ ହ୍ରାସ ପାଇଛି, ସ୍ୱଚ୍ଛତା ଓ ସୁଶାସନ ବୃଦ୍ଧି ପାଇଛି ।

୧୦୨. ଖଣିଜ ସମୃଦ୍ଧ ରାଜ୍ୟ ଭାବେ ଓଡ଼ିଶାରେ ଉଚ୍ଚମାନର ଲୁହାପଥର, ବକ୍ସାଇଟ୍, କ୍ରୋମାଇଟ୍, ମାଙ୍ଗାନିଜ୍ ଓ ଅନ୍ୟାନ୍ୟ ଖଣିଜ ପଦାର୍ଥର ବିପୁଳ ଭଣ୍ଡାର ରହିଛି । ମୋ ସରକାର ଖଣି ପ୍ରଶାସନ କ୍ଷେତ୍ରରେ ବ୍ୟବସାୟିକ ସହଜକରଣ ପାଇଁ ପ୍ରଯୁକ୍ତି ପ୍ରଯୁକ୍ତ 'ସମନ୍ୱିତ ଖଣି ଖଣିଜ ପରିଚାଳନା ବ୍ୟବସ୍ଥା' କାର୍ଯ୍ୟକାରୀ କରୁଛନ୍ତି । ବର୍ଷ ବର୍ଷ ଧରି ଖଣିଜ ପଦାର୍ଥର ଉତ୍ପାଦନ ଓ ପ୍ରେରଣ ବୃଦ୍ଧି ଓ ସ୍ୱଚ୍ଛ ନିଲାମ ପ୍ରକ୍ରିୟା ମାଧ୍ୟମରେ ଖଣି ଲିଜ୍ ପ୍ରଦାନ ଯୋଗୁଁ ରାଜ୍ୟର ଖଣି ରାଜସ୍ୱ ଯଥେଷ୍ଟ ବୃଦ୍ଧି ପାଇଛି ।

୧୦୩. ଇ-ଅବକାରୀ ମାଧ୍ୟମରେ 'ଇଜ୍ ଅଫ୍ ଡୁଇଂ ବିଜନେସ୍' ପାଇଁ ଓଡ଼ିଶା ଅବକାରୀ ବିଭାଗକୁ ଭାରତର ରାଷ୍ଟ୍ରପତି 'ଡିଜିଟାଲ୍ ଇଣ୍ଡିଆ ଗୋଲ୍ଡ ଆୱାର୍ଡ' ପ୍ରଦାନ କରିବା ପ୍ରଶଂସନୀୟ । ଅବକାରୀ ପ୍ରଶାସନ ସହ ଜଡିତ ପ୍ରବର୍ତ୍ତନ କାର୍ଯ୍ୟର ତଦାରଖ ଓ ସାମର୍ଥ୍ୟ ବୃଦ୍ଧି ପାଇଁ ମୋ ସରକାର ଅନେକ ଅନ୍‌ଲାଇନ୍ ପ୍ରଣାଳୀ କାର୍ଯ୍ୟକାରୀ କରିଛନ୍ତି ।

୧୦୪. ମୋ ସରକାରଙ୍କ ବାଣିଜ୍ୟିକ ଟିକସ ଏବଂ ସାମଗ୍ରୀ ଓ ସେବା ଟିକସ ସଂସ୍ଥାକୁ ସଂସ୍କାରକ ରାଜ୍ୟ ବର୍ଗରେ ଏବଂ ଜିଏସଟି/ରାଜ୍ୟ ଭାଟ୍ ବର୍ଗରେ 'ଟ୍ୟାକ୍ସ ଇଣ୍ଡିଆ ଅନ୍ ଲାଇନ୍ ଜାତୀୟ ଟିକସ ରୌପ୍ୟ ପୁରସ୍କାର ୨୦୨୨'ରେ ସମ୍ମାନିତ କରାଯାଇଛି । ନାଗରିକ ଓ ଟିକସଦାତାଙ୍କଠାରୁ ମିଳିଥିବା ମତାମତ ଆଧାରରେ ଓଡ଼ିଶାକୁ ଏଥିପାଇଁ ଚୟନ କରାଯାଇଛି ।

୧୦୫. ମୋ ସରକାର ସାର୍ବଜନୀନ ବିତ୍ତୀୟ ପରିଚାଳନାରେ ଅନ୍ତର୍ଜାତୀୟ ମାନର ସର୍ବୋତ୍ତମ ଅନୁକରଣୀୟ ବିତ୍ତୀୟ ପଦ୍ଧତି କାର୍ଯ୍ୟକାରୀ କରିବାରେ ଏକ ଅଗ୍ରଣୀ ରାଜ୍ୟ । କେୟାର ଏଜ୍ ପକ୍ଷରୁ ରାଜ୍ୟ ମାନ୍ୟତା, ୨୦୨୩ର ପ୍ରଥମ ସଂସ୍କରଣ ଅନୁଯାୟୀ ବିତ୍ତୀୟ ପରିଚାଳନା କ୍ଷେତ୍ରରେ ବଡ଼ ରାଜ୍ୟମାନଙ୍କ ମଧ୍ୟରେ ଓଡ଼ିଶା ଶୀର୍ଷରେ ରହିଛି । ରାଜସ୍ୱ ଓ ବିତ୍ତୀୟ ନିଅଣ୍ଟ ଏବଂ ସୁସ୍ଥ ଋଣ ପରିଚାଳନା ସୂଚକାଙ୍କରେ ଉନ୍ନତ ସ୍କୋର ପାଇଁ ରାଜ୍ୟ ମାନ୍ୟତା ରିପୋର୍ଟର ବିତ୍ତୀୟ ବର୍ଗରେ ଓଡ଼ିଶା ଶୀର୍ଷରେ ରହିଛି ।

୧୦୬. ସ୍ୱଚ୍ଛତା ଏବଂ ବଜେଟ୍ ବିଶ୍ୱସନୀୟତା ବୃଦ୍ଧି ପାଇଁ ମୋ ସରକାର ଅର୍ଥ ବିଭାଗର ୱେବସାଇଟ ତଥା ଉତ୍ସର୍ଗୀକୃତ ଓଡ଼ିଶା ବଜେଟ୍ ପୋର୍ଟାଲରେ ଉପଭୋକ୍ତା ଅନୁକୂଳ ଫର୍ମାଟରେ ସମ୍ପୂର୍ଣ୍ଣ ବଜେଟ୍ ସୂଚନା ପ୍ରଦାନ କରୁଛନ୍ତି । ମାସିକ, ତ୍ରୈମାସିକ ଏବଂ ଅର୍ଦ୍ଧବାର୍ଷିକ ବିତ୍ତୀୟ ବିଶ୍ଳେଷଣ ରିପୋର୍ଟ ମଧ୍ୟ ସାଧାରଣ ଜନତା ତଥା ବୁଦ୍ଧିଜୀବୀମାନଙ୍କ ସୂଚନା ପାଇଁ ଅପଲୋଡ୍ କରାଯାଉଛି । ମୋ ସରକାର ୨୦୨୨–୨୩ ବାର୍ଷିକ ବଜେଟ ସହିତ ବିତ୍ତୀୟ କାର୍ଯ୍ୟନୀତି ରିପୋର୍ଟ, ବିତ୍ତୀୟ ଆପଦ ବିବରଣୀ, ପୋଷଣୀୟ ବିକାଶ ଲକ୍ଷ୍ୟ ବଜେଟ୍ ଏବଂ ସରକାରୀ ଋଣ ସ୍ଥିତି ସମ୍ପର୍କିତ ତଥ୍ୟ ପ୍ରକଟ କରି ବଜେଟ୍ ସ୍ୱଚ୍ଛତା ଏବଂ ପ୍ରକଟନ କ୍ଷେତ୍ରରେ ଓଡ଼ିଶାକୁ ଅଗ୍ରଣୀ ରାଜ୍ୟରେ ପରିଣତ କରିଛନ୍ତି । ଭବିଷ୍ୟତରେ ରାଜସ୍ୱ ଅଭାବକୁ ପୂରଣ କରିବା ପାଇଁ 'ବଜେଟ୍ ସ୍ଥିରତା ପାଣ୍ଠି' ସ୍ଥାପନ କରିବାରେ ଓଡ଼ିଶା ଏକମାତ୍ର ରାଜ୍ୟ ଅଟେ ।

୧୦୭. ୨୦୨୨ ପୂର୍ବରୁ ଗତ ୨ ବର୍ଷ ମଧ୍ୟରେ କୋଭିଡ୍–୧୯ ମହାମାରୀ ଆମକୁ ଭୀତତ୍ରସ୍ତ କରିଥିଲା, ମାତ୍ର ବିଶ୍ୱକୁ ଏକ ଭିନ୍ନ ଦୃଷ୍ଟିଭଙ୍ଗୀ ନେଇ ଦେଖିବାରେ ମଧ୍ୟ ଏହା ଆମକୁ ସାହାଯ୍ୟ କରିଥିଲା । ବିଶ୍ୱ ମହାମାରୀ ଆମକୁ ଜୀବନର ମହତ୍ତ୍ୱ ଏବଂ ଏଥିରେ ପ୍ରକୃତରେ କ'ଣ ଗୁରୁତ୍ୱପୂର୍ଣ୍ଣ ତାହା ଅନୁଭବ କରିବାକୁ ବାଧ୍ୟ କରିଥିଲା । ଆମେ ଆତ୍ମନିର୍ଭରଶୀଳତା ଏବଂ ସହାନୁଭୂତିର ମହତ୍ତ୍ୱ ଉପଲବ୍ଧି କଲୁ । କୃତଜ୍ଞ ହେଲୁ, ଆଶୀର୍ବାଦ ଜିଜ୍ଞାସୁ ହେଲୁ ଓ ବିଜ୍ଞାନସମ୍ମତ ଗୋଷ୍ଠୀଗତ କାର୍ଯ୍ୟ ଆମକୁ ଧୈର୍ଯ୍ୟର ସହିତ ଭୂତାଣୁର ମୁକାବିଲା କରିବା ଏବଂ ଅମୂଲ୍ୟ ମାନବ ଜୀବନ ବଞ୍ଚାଇବାର ଶିକ୍ଷା ଦେଇଥିଲା । ୨୦୨୨ ମସିହାରେ ଯୁଦ୍ଧ, ଉଚ୍ଚ ମୁଦ୍ରାସ୍ଫୀତି ଚାପ, ଶକ୍ତି ସଂକଟ ଏବଂ ଜଳବାୟୁ ପରିବର୍ତ୍ତନ ଆଦିର ଅପ୍ରତ୍ୟାଶିତ ସଂଯୋଗ ସହିତ ସମଗ୍ର ବିଶ୍ୱର ସମସ୍ତ କେନ୍ଦ୍ରୀୟ ବ୍ୟାଙ୍କଗୁଡିକ ଦ୍ୱାରା ମାତ୍ରାଧିକ କଠୋର ଆର୍ଥିକ ପଦକ୍ଷେପ ଗ୍ରହଣ ଭଳି ପଦକ୍ଷେପ ପରିଦୃଷ୍ଟ ହୋଇଥିଲା । ଯଦିଓ ବର୍ଷଟି ଆହ୍ୱାନପୂର୍ଣ୍ଣ ଥିଲା ଏବଂ ବାରମ୍ବାର ଆମକୁ କଡା ପରିସ୍ଥିତିର ମୁକାବିଲା କରାଇଥିଲା, ଆମ ନମନୀୟତା ହିଁ ଶେଷରେ ବିଜୟ ଲାଭ କରିଥିଲା । ଏହା ଫଳରେ ଆମେ ଆହୁରି ଦୃଢ଼, ଆଶାବାଦୀ ତଥା ବିନମ୍ର ଭାବରେ ଉଭା ହୋଇଛୁ । ଆମେ ଅନିଶ୍ଚିତତାର ସାମନା କରିବା ଶିଖିଲୁ: ନମନୀୟତା, ସହନଶୀଳତା, ପରିବର୍ତ୍ତିତ ପରିସ୍ଥିତି ସହିତ ଖାପ ଖୁଆଇ ଚାଲିବା ଏବଂ ଦକ୍ଷତା ଆମର ନୂଆ ପରିଚୟ ପାଲଟିଗଲା । ସକାରାତ୍ମକ ନୀତି ନିର୍ଦ୍ଧାରଣ ସହିତ ଉନ୍ନତ ମାନର ଅର୍ଥନୈତିକ କାର୍ଯ୍ୟକଳାପ ଯୋଗୁଁ ଆମ ଦେଶର ରାଜନୈତିକ ଓ ଅର୍ଥନୈତିକ ସ୍ଥିତି ସ୍ଥିର ରହିଥିଲା । ୨୦୨୨ ଥିଲା ଓଡ଼ିଶା ପାଇଁ ଜୀବିକା ନିର୍ବାହ, ଅଭିବୃଦ୍ଧି ଏବଂ

ପରବର୍ତ୍ତୀ ସ୍ତରର ରୂପାନ୍ତରଣର ବର୍ଷ । ସୁଶାସନ ଏବଂ ସାର୍ବଜନୀନ ସେବା ପ୍ରଦାନରେ ପରିବର୍ତ୍ତନ ଆଣିବାରେ ପ୍ରଯୁକ୍ତି ଏକ ମୁଖ୍ୟ ଆୟୁଧ ଭାବରେ କାର୍ଯ୍ୟ କରିଥିଲା । ସ୍ୱାସ୍ଥ୍ୟସେବା ଉପକ୍ରମ, ଗ୍ରାମୀଣ ଗୃହ ନିର୍ମାଣ, ବିପର୍ଯ୍ୟୟ ପରିଚାଳନା, ଶିକ୍ଷାନୁଷ୍ଠାନ ରୂପାନ୍ତରଣ, ଲକ୍ଷାଧିକ ଅନୁସୂଚିତ ଜାତି ଓ ଜନଜାତି, ସଂଖ୍ୟାଲଘୁ ଓ ପଛୁଆ ବର୍ଗର ଛାତ୍ରଛାତ୍ରୀଙ୍କୁ ଗୁଣାତ୍ମକ ଶିକ୍ଷା ପ୍ରଦାନ, ସାମାଜିକ-ଅର୍ଥନୈତିକ ଦୃଶ୍ୟପଟ୍ଟରେ ପରିବର୍ତ୍ତନ ଓ ମହିଳାଙ୍କ ସଶକ୍ତିକରଣ, ପ୍ରତ୍ୟେକ ଯୋଗ୍ୟ ପରିବାର ପାଇଁ ଆମର ନିଜସ୍ୱ ଖାଦ୍ୟ ସୁରକ୍ଷା ଯୋଜନା, ଆମ କ୍ରୀଡ଼ା ଏବଂ ପର୍ଯ୍ୟଟନ ଭିତ୍ତିଭୂମି, ପ୍ରଶାସନିକ ସଂସ୍କାର, ସାର୍ବଜନୀନ ଆର୍ଥିକ ପରିଚାଳନାଗତ ସଂସ୍କାର ଆଦି ବିଭିନ୍ନ କ୍ଷେତ୍ରରେ ମୋ ରାଜ୍ୟ ଉଲ୍ଲେଖନୀୟ ପ୍ରଦର୍ଶନ କରିଛି । ଅସୀମିତ ଆହ୍ୱାନ ସତ୍ତ୍ୱେ ୨୦୨୨ ମସିହାରେ ମୋ ସରକାର ଏକ ଉଲ୍ଲେଖନୀୟ ଯାତ୍ରା ଅବ୍ୟାହତ ରଖିଛନ୍ତି । ଆମ ଆକାଂକ୍ଷିତ ଏକ ନୂତନ, କର୍ମମୁଖର ଓଡ଼ିଶାର ନିର୍ମାଣ ଚାଲିଛି, ଏକ ସମଭାବାପନ୍ନ ବିକାଶର ଜୟଯାତ୍ରା ଚାଲିଛି ।

ମୋ ସରକାର ଅତ୍ୟାବଶ୍ୟକୀୟ ସେବା ପ୍ରଦାନ, ଜୀବିକା ସୁଯୋଗ ସୃଷ୍ଟି ଏବଂ ଗମନାଗମନ ସୁବିଧା ସମେତ ପ୍ରମୁଖ ଓ ମୌଳିକ ଭିତ୍ତିଭୂମିର ବିକାଶ, ବିଶୁଦ୍ଧ ପାନୀୟ ଜଳ ଯୋଗାଣ, ବିଦ୍ୟୁତ ଯୋଗାଣ ଏବଂ ଅନ୍ୟାନ୍ୟ ସୁବିଧା ସହିତ କୃଷି ପାଇଁ ଜଳସେଚନ ଏବଂ ସ୍ୱାସ୍ଥ୍ୟ ସେବା ଓ ଶିକ୍ଷାକୁ ପରବର୍ତ୍ତୀ ସ୍ତରକୁ ନେବାର ପ୍ରାଥମିକତା ଜାରି ରଖିବ । ମୁଁ ସ୍ପଷ୍ଟ ଭାବରେ ଏ କଥାର ପୁନରାବୃତ୍ତି କରିବାକୁ ଚାହେଁ ଯେ ରାଜ୍ୟର ସମସ୍ତ ଅଞ୍ଚଳର ବିକାଶ ଏବଂ ସମସ୍ତ ବର୍ଗର ଲୋକଙ୍କୁ ସଶକ୍ତ କରିବା ପାଇଁ ମୋ ସରକାର ଦୃଢ଼ ପ୍ରତିଶ୍ରୁତିବଦ୍ଧ ।

ମୁଁ ବର୍ତ୍ତମାନ ଆଲୋଚନା ଜାରି ରଖିବା ପାଇଁ ଆପଣଙ୍କ ଉପରେ ଦାୟିତ୍ୱ ନ୍ୟସ୍ତ କରି ଏହି ଅଧିବେଶନର ସଫଳତା କାମନା କରୁଛି ।

**ବନ୍ଦେ ଉତ୍କଳ ଜନନୀ ।**



# ପ୍ରବାଦପୁରୁଷ ବିଜୁବାବୁ ଓ ପଞ୍ଚାୟତିରାଜ ବ୍ୟବସ୍ଥା

ଡଃ. ରମାକାନ୍ତ ନାୟକ

ଏହି ଅନନ୍ତ ବିପୁଳ ଲୋକାରଣ୍ୟ ମଧ୍ୟରେ ଜଣେ ଜଣେ ଦୁର୍ଲଭ ଐଶ୍ୱରୀୟ ପ୍ରତିଭାଦୀପ୍ତ ବ୍ୟକ୍ତିବିଶେଷଙ୍କର ମାନବ ହିତୈଷୀ ଓ ମାନବ-ଜାତୀୟତାବାଦୀ କର୍ମଯୋଗୀ ତଥା ସେମାନଙ୍କ ଜୀବାନୁଭୂତିର ଇତିହାସ ମାନବ ଜାତିର ପ୍ରବହମାନ ଧାରାରେ ଦୃଷ୍ଟାନ୍ତ ଭାବରେ ଚିରଭାସ୍ୱର ହୋଇରହିବ । ଜୀବନରେ ଅଗ୍ରଣୀ ଓ ସାହସୀ ହେବା, ଗତାନୁଗତିକତାର ବ୍ୟତିକ୍ରମ ହେବା, ମାନବତାର ଯତ୍ନ ନେବା, ଉଦାର ଚେତନାର ଅଧିକାରୀ ହେବା ମଧ୍ୟରେ ଯେ ମାନବିକତାର ଆଲୋକ ଅନୁଭବ କରାଯାଇପାରେ ତାହା ସେମାନଙ୍କ ଜୀବନ ପ୍ରୟୋଗଶାଳାରେ ବାରମ୍ବାର ପ୍ରତିପାଦିତ ହୋଇସାରିଛି । ବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଓଡ଼ିଶା ତଥା ଜାତୀୟ ରାଜନୈତିକ ପ୍ରେକ୍ଷାପଟରେ ଯେଉଁ କେତେଜଣ ମହାପୁରୁଷଙ୍କର ଆବିର୍ଭାବ ଘଟିଥିଲା, ସେମାନଙ୍କ ମଧ୍ୟରୁ ବିଜୟାନନ୍ଦ ପଟ୍ଟନାୟକ ଓରଫ ବିଜୁ ପଟ୍ଟନାୟକ ଅଗ୍ରଗଣ୍ୟ । ସେ ଥିଲେ ଓଡ଼ିଆ ଜାତିର ସ୍ୱାଭିମାନର ପ୍ରତୀକ, ମାଟିର ମୂର୍ତ୍ତିକାର, ଧରଣୀର କୃଷ୍ଣସାର, ଝଡ଼ର ଇଗଲ, କୋଟି କୋଟି ଓଡ଼ିଆଙ୍କ ହୃଦୟର ମୁକୁଟ ବିହୀନ ସମ୍ରାଟ୍ । ସ୍ୱପ୍ନ, ସ୍ୱାଭିମାନ ଓ ସଂକଳ୍ପ ଥିଲା ତାଙ୍କ ଜୀବନର ମହାମନ୍ତ୍ର । ଉଚ୍ଚାଭିଳାଷ, ଦୁଃସାହସ, ନିର୍ଭୀକତା ଓ ଦେଶପ୍ରେମ ଥିଲା ତାଙ୍କର ଆଦର୍ଶ । ବିଂଶ ଶତାବ୍ଦୀର ଅନ୍ତିମ ଚାରି ଦଶନ୍ଧିରେ ଓଡ଼ିଶାର ରାଜନୀତି କ୍ଷେତ୍ରରେ ଅତ୍ୟନ୍ତ ପ୍ରଭାବଶାଳୀ ଭୂମିକା ନିର୍ବାହ କରିଥିବା ବିଜୁ ପଟ୍ଟନାୟକ ୧୯୧୬ ମସିହା ମାର୍ଚ୍ଚ ୫ ତାରିଖରେ କଟକରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତା ଲକ୍ଷ୍ମୀନାରାୟଣ ପଟ୍ଟନାୟକ ଥିଲେ ଊନବିଂଶ ଶତାବ୍ଦୀର ପ୍ରଥମ ତିନି ଦଶନ୍ଧିରେ ଓଡ଼ିଶାରେ ଦେଖାଦେଇଥିବା ନବଜାଗରଣ ଓ ସ୍ୱତନ୍ତ୍ର ପ୍ରଦେଶ ଗଠନ ଆନ୍ଦୋଳନର ଅଗ୍ରସାରଥି । ମାତା ଆଶାଲତା ଦେବୀ ଥିଲେ ଜାତୀୟ ମୁକ୍ତି ଆନ୍ଦୋଳନରେ ଆତ୍ମବଳି ପ୍ରଦାନ କରିଥିବା ଏକ ସଂଗ୍ରାମୀ ପରିବାରର କନ୍ୟା । ଏହି କାରଣରୁ ବିଜୁ ପଟ୍ଟନାୟକଙ୍କ ଧମନୀରେ ଦେଶପ୍ରେମର ରକ୍ତ ପ୍ରବାହିତ ହେଉଥିଲା । କଠୋର ସାଧନା ବଳରେ ନିଜର ସ୍ୱପ୍ନ ଓ ସଂକଳ୍ପକୁ ସଫଳତାର ସହିତ ସାକାର କରି ସେ ପ୍ରତ୍ୟେକ କ୍ଷେତ୍ରରେ ଶୀର୍ଷତମ ସ୍ଥାନରେ ଉପନୀତ ହୋଇପାରିଥିଲେ ।

କଟକ ମିଶନ୍ ସ୍କୁଲ୍ ଓ ରେଭେନ୍ସା କଲେଜରେ ଶିକ୍ଷା ସମାପ୍ତି ପରେ ବିଜୁବାବୁ ଗୋଭାନ୍ ବ୍ରଦର୍ସ ପରିଚାଳିତ ଇଣ୍ଡିଆନ୍ ନ୍ୟାସନାଲ୍ ଏୟାରୱେଜ୍‌ରେ ପ୍ରଥମେ ନିଯୁକ୍ତି ପାଇ ନିଜ ପ୍ରତିଭାର ପରିଚୟ ଦେଇଥିଲେ । ଇଣ୍ଡୋନେସିଆର ମୁକ୍ତି ସଂଗ୍ରାମକୁ ବିଜୁ ପଟ୍ଟନାୟକଙ୍କ ମହତ୍ୱପୂର୍ଣ୍ଣ ଅବଦାନ ଯୋଗୁଁ

ସେଠାକାର ସମ୍ମାନଜନକ ''ଭୂମିପୁତ୍ର'' ଉପାଧିରେ ସେ ଭୂଷିତ ହୋଇଥିଲେ । ଦଶବର୍ଷ ବୟସ୍କ ତରୁଣ ବିଜୟାନନ୍ଦ ପଟ୍ଟନାୟକ ସ୍ୱରାଜ ଆଶ୍ରମଠାରେ ମହାତ୍ମା ଗାନ୍ଧୀଙ୍କ ଦର୍ଶନ କରିବାର ପ୍ରବଳ ବ୍ୟାକୁଳିତ ଉନ୍ମାଦନା ଭିତରେ ପୁଲିସ୍‌ର ଲାଠି ପ୍ରହାର ଯୋଗୁଁ ତାଙ୍କ ମସ୍ତକରୁ ଯେଉଁ ରକ୍ତସ୍ରାବ ଘଟିଥିଲା, ସେହି ରକ୍ତର ଦୁହାଇ ଦେଇ ସେଦିନ ସେ ଗାନ୍ଧିଜୀଙ୍କ ସମ୍ମୁଖରେ ବଜ୍ର ଶପଥ ଗ୍ରହଣ କରିଥିଲେ ବ୍ରିଟିଶ୍ ପୁଲିସ୍‌ର ଏହି ଅମାନୁଷିକ ଜୁଲମ୍ ବିରୁଦ୍ଧରେ ପ୍ରତିଶୋଧ ନେବା ପାଇଁ । ରେଭେନ୍ସା କଲେଜରେ ଅଧ୍ୟୟନରତ ଥିବା ସମୟରେ କଟକରୁ ସୁଦୂର ପେଶୱାର ପର୍ଯ୍ୟନ୍ତ ସାଇକେଲରେ ଯାତ୍ରା କରିବା ଥିଲା ତାଙ୍କର ଅନ୍ୟ ଏକ ଦୁଃସାହସିକ କୃତିତ୍ୱ ।

ପରବର୍ତ୍ତୀ ସମୟରେ ତାଙ୍କର ବୈମାନିକ ହେବାର ସ୍ୱପ୍ନକୁ ଚରିତାର୍ଥ କରିବାକୁ ପାଇଲଟ୍ ତାଲିମ ସମାପ୍ତ କରି ରୟାଲ ଇଣ୍ଡିଆ ଏୟାରଫୋର୍ସ ଓ ଇଣ୍ଡିଆନ୍ ନ୍ୟାସନାଲ୍ ଏୟାରୱେଜ୍‌ରେ ନିଯୁକ୍ତି ପାଇଥିଲେ । ବଡ଼ଲାଟ ଲର୍ଡ଼ ୱାଭେଲଙ୍କର ପାଇଲଟ୍ ଭାବରେ କାର୍ଯ୍ୟ କରୁଥିବା ସମୟରେ ଦେଶପ୍ରେମରେ ଉଦ୍‌ବୁଦ୍ଧ ବିଜୁ ପଟ୍ଟନାୟକ ବଡ଼ଲାଟଙ୍କ ଗୁପ୍ତ ଦଲିଲଗୁଡ଼ିକୁ ଗୋପନରେ ଗାନ୍ଧିଜୀଙ୍କୁ ପ୍ରଦାନ କରୁଥିଲେ । ୧୯୪୦ ମସିହାରେ ଜୟପ୍ରକାଶ ନାରାୟଣଙ୍କ ସହିତ ସାକ୍ଷାତ୍ ହେବା ପରେ ବିଜୁବାବୁ ତାଙ୍କୁ ତାଙ୍କର ପ୍ରଥମ ରାଜନୈତିକ ଗୁରୁ ରୂପେ ଗ୍ରହଣ କରିନେଇଥିଲେ । ଏହାପରେ ସେ ପାଇଲଟ୍ ଚାକିରି ତ୍ୟାଗ କରି ଭାରତଛାଡ଼ ଆନ୍ଦୋଳନରେ ଝାସ ଦେବା ସହିତ ତାଙ୍କର ରାଜନୈତିକ ଜୀବନର ଅୟମାରମ୍ଭ ଘଟିଥିଲା । ୧୯୪୩ ମସିହାରେ ସେ ଦିଲ୍ଲୀରେ ଗିରଫ ହୋଇ ଲାଲ୍‌କିଲ୍ଲାଠାରେ ବନ୍ଦୀ ଜୀବନ ଅତିବାହିତ କରିଥିଲେ । ଦ୍ୱିତୀୟ ବିଶ୍ୱ ସମର କାଳରେ ଜାପାନ୍-ବର୍ମା ଆକ୍ରମଣ କରୁଥିବା ବେଳେ ବିଜୁ ବାବୁ ନିଜ ଜୀବନ ବିପନ୍ନ କରି କେତେକ ବ୍ରିଟିଶ୍ ପରିବାରକୁ ନିଶ୍ଚିତ ମୃତ୍ୟୁମୁଖରୁ ଉଦ୍ଧାର କରିଥିଲେ । ଉତ୍ତୁଙ୍ଗ ହିମାଳୟ ପର୍ବତଶ୍ରେଣୀ ଅତିକ୍ରମ କରି ଚୀନ୍ ବିପ୍ଳବୀମାନଙ୍କୁ ସହାୟତା କରିଥିଲେ । ଭାରତଛାଡ଼ ଆନ୍ଦୋଳନ ସମୟରେ ଜୟପ୍ରକାଶ ନାରାୟଣ, ଅରୁଣା ଆସଫଅଲ୍ଲୀ, ରାମ ମନୋହର ଲୋହିଆ ଓ ଅଚ୍ୟୁତ ପଟ୍ଟବର୍ଦ୍ଧନ ପ୍ରମୁଖ ଜାତୀୟ ନେତୃବୃନ୍ଦଙ୍କୁ ନିଜ ବାସଗୃହରେ ଗୋପନରେ ଆଶ୍ରୟ ପ୍ରଦାନ କରିଥିଲେ । ସେତେବେଳେ ବିଜୁବାବୁ ଭାରତୀୟ ସୈନ୍ୟମାନଙ୍କୁ ନେଇ ଶ୍ରୀନଗରଠାରେ ପହଞ୍ଚାଇଥିଲେ । ୧୯୬୨ ମସିହାରେ ଚୀନ୍ ଆକ୍ରମଣ କାଳରେ ସେ ପ୍ରଧାନମନ୍ତ୍ରୀ ଜବାହରଲାଲ୍ ନେହେରୁଙ୍କ ଅନୁରୋଧକ୍ରମେ ଗୁପ୍ତରେ ଆମେରିକା ଯାତ୍ରା କରିଥିଲେ । ୧୯୬୫ ମସିହାରେ ଭାରତ-ପାକିସ୍ଥାନ ଯୁଦ୍ଧ ସମୟରେ ତତ୍କାଳୀନ ପ୍ରଧାନମନ୍ତ୍ରୀ ଲାଲବାହାଦୁର ଶାସ୍ତ୍ରୀ ତାଙ୍କୁ ଇଣ୍ଡୋନେସିଆ ପ୍ରେରଣ କରିଥିଲେ ଏବଂ ବିଜୁବାବୁଙ୍କ ପ୍ରୟାସ ଯୋଗୁଁ ଇଣ୍ଡୋନେସିଆ ପାକିସ୍ଥାନକୁ ଯୁଦ୍ଧ ବିମାନ ବିକ୍ରୟ ବନ୍ଦ କରିଥିଲା । ୧୯୪୭ ମସିହାରେ ବିଜୁବାବୁ ପ୍ରତ୍ୟକ୍ଷ ରାଜନୀତିରେ ପ୍ରବେଶ କରିବା ସହିତ କଟକ ସହରରୁ ବିଧାନସଭାକୁ ନିର୍ବାଚିତ ହୋଇଥିଲେ । ୧୯୫୨ ମସିହାରେ ଦ୍ୱିତୀୟ ସାଧାରଣ ନିର୍ବାଚନ ପରେ ସେ ଝାଡ଼ଖଣ୍ଡ ଓ କମ୍ୟୁନିଷ୍ଟ ଦଳର ସମର୍ଥନ ଯୋଗାଡ଼ କରି ହରେକୃଷ୍ଣ ମହତାବଙ୍କ ସରକାର ଗଠନରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ । ୧୯୬୧ ମସିହାରେ ସେ ପ୍ରଦେଶ କଂଗ୍ରେସ କମିଟିର ସଭାପତି ପଦବୀ ମଣ୍ଡନ କରିଥିଲେ । ତାଙ୍କ ନେତୃତ୍ୱରେ ସେତେବେଳେ ବିଧାନସଭାର ୧୪୭ ଆସନ ମଧ୍ୟରୁ କଂଗ୍ରେସ ୮୨ଟି ଆସନରେ ବିଜୟୀ ହୋଇପାରିଥିଲା । ୧୯୬୧ ଜୁନ୍ ୨୩ ତାରିଖରେ ସେ ମୁଖ୍ୟମନ୍ତ୍ରୀ ପଦବୀ ଅଳଙ୍କୃତ କରିଥିଲେ । ତାଙ୍କ ମୁଖ୍ୟମନ୍ତ୍ରିତ୍ୱ କାଳରେ ରାଜ୍ୟରେ ଶିଳ୍ପ କ୍ଷେତ୍ରରେ ଅଭୁତପୂର୍ବ ଉନ୍ନତି ସାଧିତ ହୋଇଥିଲା । ଏକ୍ସପ୍ରେସ୍ ରାଜପଥ, ତାଳଚେର ଥର୍ମାଲ୍ ପ୍ରକଳ୍ପ, ସୁନାବେଡ଼ା ମିଗ୍ ବିମାନ କାରଖାନା, ବଡ଼ବିଲ ଲୁହା କାରଖାନା, ନାଲ୍‌କୋ ଆଲୁମିନିୟମ୍ ପ୍ରକଳ୍ପ, ବାଲିମେଳା ନଦୀବନ୍ଧ ଯୋଜନା ଓ ଜଳ ବିଦ୍ୟୁତ୍ ପ୍ରକଳ୍ପ ଏବଂ ପଞ୍ଚାୟତ ସ୍ତରରେ ଅନେକ କ୍ଷୁଦ୍ର ଓ ମଧ୍ୟମ ଶିଳ୍ପ ପ୍ରତିଷ୍ଠା ଥିଲା ତାଙ୍କର ଉଲ୍ଲେଖଯୋଗ୍ୟ କୀର୍ତ୍ତି । ତାଙ୍କ ମୁଖ୍ୟମନ୍ତ୍ରିତ୍ୱ କାଳରେ ପାରାଦୀପଠାରେ ରାଜ୍ୟର ନିଜସ୍ୱ ପାଣ୍ଠିରୁ ବ୍ୟୟ କରି ନିର୍ମାଣ କରିଥିଲେ ଓଡ଼ିଶାର ପ୍ରଥମ

ବନ୍ଦର । ଏହା ବ୍ୟତୀତ ତାଙ୍କ ସମୟରେ ରାଜ୍ୟ ବିଦ୍ୟୁତ୍ ବୋର୍ଡ଼ (୧୯୬୧), ଓଡ଼ିଶା କ୍ଷୁଦ୍ର ଶିଳ୍ପ ନିଗମ (୧୯୬୧–୬୨) ଓ ଓଡ଼ିଶା ଶିଳ୍ପ ବିକାଶ ନିଗମ (୧୯୬୧) ପ୍ରତିଷ୍ଠା ହେବା ସହିତ ଗ୍ରାମାଞ୍ଚଳରେ ଶିଳ୍ପର ପ୍ରସାର ପାଇଁ ଗ୍ରାମପଞ୍ଚାୟତ ଶିଳ୍ପ ସଂସ୍ଥା ସ୍ଥାପିତ ହୋଇଥିଲା । ସାଧାରଣ ଶିକ୍ଷା ଓ ବୈଷୟିକ ଶିକ୍ଷା କ୍ଷେତ୍ରରେ ବିଜୁ ପଟ୍ଟନାୟକଙ୍କ ଅବଦାନ ଚିର ସ୍ମରଣୀୟ । ରାଉରକେଲାଠାରେ ଆଞ୍ଚଳିକ ଇଞ୍ଜିନିୟରିଂ କଲେଜ, ବିଭିନ୍ନ ସ୍ଥାନରେ ବିଜ୍ଞାନ କଲେଜ, ଇଞ୍ଜିନିୟରିଂ ଓ ପଲିଟେକ୍‌ନିକ୍ ଶିକ୍ଷାନୁଷ୍ଠାନ, ଭୁବନେଶ୍ୱରରେ ସୈନିକ ବିଦ୍ୟାଳୟ ଓ ଆଞ୍ଚଳିକ ଶିକ୍ଷା କଲେଜ ପ୍ରତିଷ୍ଠା ସହିତ ପ୍ରଥମ ଶ୍ରେଣୀଠାରୁ ପଞ୍ଚମ ଶ୍ରେଣୀ ପର୍ଯ୍ୟନ୍ତ ପାଠ୍ୟପୁସ୍ତକର ଜାତୀୟକରଣ, ଚାରବାଟିଆଠାରେ ସାମରିକ ବିମାନ ଅବତରଣ କେନ୍ଦ୍ର, ସମ୍ବଲପୁର ଓ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ, ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟ, ବୁର୍ଲାଠାରେ ଇଞ୍ଜିନିୟରିଂ ଓ ମେଡ଼ିକାଲ କଲେଜ ପ୍ରଭୃତିର ପ୍ରତିଷ୍ଠା ନବ ଓଡ଼ିଶା ନିର୍ମାଣର ଏକ ଯୁଗାନ୍ତକାରୀ ଅଧ୍ୟାୟ ଥିଲା ।

୧୯୯୦ ମସିହାରେ ଦଶମ ବିଧାନସଭା ନିର୍ବାଚନରେ ବିଜୁବାବୁଙ୍କ ନେତୃତ୍ୱରେ ଜନତାଦଳ ବିପୁଳ ସଂଖ୍ୟାଗରିଷ୍ଠତା ହାସଲ କଲା । ସେହିବର୍ଷ ମାର୍ଚ୍ଚ ୫ ତାରିଖରେ ବିଜୁବାବୁ ଦ୍ୱିତୀୟ ଥର ମୁଖ୍ୟମନ୍ତ୍ରୀ ପଦ ମଣ୍ଡନ କଲେ । ୧୯୯୦ ମସିହାରୁ ୧୯୯୫ ମସିହା ପର୍ଯ୍ୟନ୍ତ ତାଙ୍କ ମୁଖ୍ୟମନ୍ତ୍ରିତ୍ୱ କାଳରେ ବେକାରି ଓ ଦାରିଦ୍ର୍ୟ ଦୂର କରିବା ଉଦ୍ଦେଶ୍ୟରେ ବହୁବିଧ ପଦକ୍ଷେପ ଗ୍ରହଣ କରିଥିଲେ । ସେଥିମଧ୍ୟରୁ ମହିଳା ନିଯୁକ୍ତି କ୍ଷେତ୍ରରେ ବୟସ ସୀମା କୋହଳ, ଶ୍ରମିକମାନଙ୍କ ପାଇଁ ସର୍ବନିମ୍ନ ମଜୁରି ୧୧ଟଙ୍କାରୁ ୨୫ଟଙ୍କାକୁ ବୃଦ୍ଧି, ବୃଦ୍ଧ, ଅକ୍ଷମ ଓ ବିଧବା ଭତ୍ତା ୧୦୦ଟଙ୍କାକୁ ବୃଦ୍ଧି ନିଷ୍ପତ୍ତି ଉଲ୍ଲେଖଯୋଗ୍ୟ । କ୍ଷୁଦ୍ର ଓ ନାମମାତ୍ର କୃଷକଙ୍କୁ ଆର୍ଥିକ ସାହାଯ୍ୟ ଏବଂ ଗ୍ରାମାଞ୍ଚଳ ଦରିଦ୍ର ଲୋକଙ୍କୁ ବାସଗୃହ ନିର୍ମାଣ ପାଇଁ କଳିଙ୍ଗ କୁଟୀର ଯୋଜନା ପ୍ରଚଳନ କରିଥିଲେ । ମହିଳା ସଶକ୍ତିକରଣ ଉଦ୍ଦେଶ୍ୟରେ ସେ ରାଜ୍ୟରେ ମହିଳା ବିକାଶ ନିଗମ, ମହିଳା ବ୍ୟାଙ୍କ ଓ ମହିଳା କମିଶନ ପ୍ରତିଷ୍ଠା କରିଥିଲେ । ପ୍ରଶାସନକୁ ଲୋକାଭିମୁଖୀ କରିବା ଉଦ୍ଦେଶ୍ୟରେ ୧୩ ଜିଲ୍ଲାକୁ ପୁନର୍ଗଠନ କରି ୩୦ ଜିଲ୍ଲାରେ ପରିଣତ କରିଥିଲେ । ପ୍ରାଥମିକ ଶିକ୍ଷାକୁ ସାର୍ବଜନୀନ କରାଇବା ଥିଲା ତାଙ୍କର ଅନ୍ୟତମ ଶିକ୍ଷା ସଂସ୍କାର । ବିଜୁବାବୁଙ୍କର ଏହି ସମସ୍ତ ଉନ୍ନୟନମୂଳକ ପଦକ୍ଷେପ ମଧ୍ୟରେ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ କୃତିତ୍ୱ ଥିଲା ତ୍ରିସ୍ତରୀୟ ପଞ୍ଚାୟତିରାଜ ବ୍ୟବସ୍ଥା ପ୍ରଚଳନ । ସେ ଯେଉଁ ପଞ୍ଚାୟତିରାଜ ବ୍ୟବସ୍ଥାର ଶୁଭାରମ୍ଭ ଓଡ଼ିଶାରେ କରିଥିଲେ, ତାହା ଥିଲା ସମଗ୍ର ଭାରତବର୍ଷରେ ସର୍ବପ୍ରଥମ । ଏହି ବ୍ୟବସ୍ଥାରେ ସରପଞ୍ଚମାନଙ୍କୁ ଗ୍ରାମପଞ୍ଚାୟତର ମୁଖ୍ୟମନ୍ତ୍ରୀ ଭାବରେ ସେ ଅଭିହିତ କରିଥିଲେ । ତିନିସ୍ତରୀୟ ପ୍ରଶାସନ ବ୍ୟବସ୍ଥା ଲୋକମାନଙ୍କୁ ସୁଶାସନ ଦେବାରେ ସକ୍ଷମ ହୋଇପାରିବ ବୋଲି ତାଙ୍କର ଦୃଢ଼ ବିଶ୍ୱାସ ଥିଲା । ୧୯୬୧ ମସିହା ନଭେମ୍ବର ୨୦ ତାରିଖରେ ଓଡ଼ିଶା ବିଧାନସଭା ଗୃହରେ ପଞ୍ଚାୟତିରାଜ ସମ୍ବନ୍ଧରେ ସେ ଯେଉଁ ବିବୃତି ପ୍ରଦାନ କରିଥିଲେ, ତାହାକୁ ତତ୍କାଳୀନ ପ୍ରଧାନମନ୍ତ୍ରୀ ନେହେରୁ ଉଚ୍ଚ ପ୍ରଶଂସା କରିଥିଲେ । ସେଦିନ ବିଜୁ ପଟ୍ଟନାୟକ ତାଙ୍କ ଭାଷଣରେ ବ୍ୟକ୍ତ କରିଥିଲେ, ''This is a movement of building up leaders of men from the lowest rung of our society and it is not going to be easy. It is almost a people's movement. We are only trying to give some hope, some other direction or some authorities. But the movement can only succeed if we give that authority to the people right from bottom of our social ladder who can exercise effective leadership. It is a big question and we have in the house got to think with a far greater sympathy and prospective looking at distant future and planning from now how you want the future to be built'' ବିଜୁ ପଟ୍ଟନାୟକ ତାଙ୍କର ବିଚକ୍ଷଣ ନେତୃତ୍ୱ ଓ ସଂକଳ୍ପବଦ୍ଧ ପ୍ରଚେଷ୍ଟା ଯୋଗୁଁ ଓଡ଼ିଶାରେ ପଞ୍ଚାୟତିରାଜ ବ୍ୟବସ୍ଥାର ପୁନରୁଦ୍ଧାର ସମ୍ଭବପର ହୋଇପାରିଥିଲା । ୨୧୦ଟି ବ୍ଲକ୍‌ର ପଞ୍ଚାୟତ ସମିତିଗୁଡ଼ିକୁ

ଗୋଷ୍ଠୀ ଉନ୍ନୟନ କାର୍ଯ୍ୟକ୍ରମର ବାସ୍ତବ ରୂପାୟନ ନିମିତ୍ତ ଦାୟିତ୍ୱ ଅର୍ପଣ କରାଗଲା । ଜନଜାତି ଓ ଗ୍ରାମ୍ୟ ମଙ୍ଗଳ ବିଭାଗ ପରିଚାଳିତ ସେବାଶ୍ରମ ସମେତ ସମସ୍ତ ପ୍ରାଥମିକ ବିଦ୍ୟାଳୟଗୁଡ଼ିକର ପରିଚାଳନା ଦାୟିତ୍ୱ ପଞ୍ଚାୟତ ସମିତିମାନଙ୍କୁ ପ୍ରଦାନ କରାଗଲା । ଏଥିସହିତ ଗ୍ରେନ୍ ଗୋଲା, ସ୍ଥାନୀୟ ବିକାଶମୂଳକ କାର୍ଯ୍ୟ, ଗ୍ରାମ୍ୟ ଯୋଗାଯୋଗ ଓ ପାନୀୟ ଜଳ ଯୋଗାଣ ପ୍ରଭୃତି କାର୍ଯ୍ୟକ୍ରମର ଦାୟିତ୍ୱ ପଞ୍ଚାୟତ ସମିତିଗୁଡ଼ିକୁ ହସ୍ତାନ୍ତର କରାଗଲା । ଏପରିକି ମତ୍ସ୍ୟଚାଷ ଭଳି ଲାଭଦାୟକ ଯୋଜନାଗୁଡ଼ିକର ସଫଳ କାର୍ଯ୍ୟକାରିତା ପାଇଁ ଗ୍ରାମ ପଞ୍ଚାୟତ, ପଞ୍ଚାୟତ ସମିତି ଓ ଜିଲ୍ଲା ପରିଷଦଗୁଡ଼ିକୁ ଅର୍ଥ ମଞ୍ଜୁର କରିବାର କ୍ଷମତା ପ୍ରଦାନ କରାଗଲା । ପ୍ରତିବର୍ଷ ଗ୍ରାମପଞ୍ଚାୟତଗୁଡ଼ିକୁ ସେମାନଙ୍କର କାର୍ଯ୍ୟଦକ୍ଷତା ଭିତ୍ତିରେ ଆର୍ଥିକ ପୁରସ୍କାର ପ୍ରଦାନ କରାଯିବାର ବ୍ୟବସ୍ଥା କରାଗଲା । ସରକାରଙ୍କ ପ୍ରଦତ୍ତ ପୁରସ୍କାର ରାଶିରେ ସଂପୃକ୍ତ ଗ୍ରାମପଞ୍ଚାୟତରେ ଶିଳ୍ପ ସମବାୟ ଜରିଆରେ ଶିଳ୍ପର ପ୍ରସାର କରିବାର ଲକ୍ଷ୍ୟ ରଖାଯାଇଥିଲା । ବିଜୁ ପଟ୍ଟନାୟକ ୧୯୬୨ ମସିହାରେ ପଞ୍ଚାୟତ ସ୍ତରରେ ଶିଳ୍ପର ପ୍ରସାର ସମ୍ବଳିତ ପ୍ରୟୋଗାତ୍ମକ କାର୍ଯ୍ୟକୁ ସାକାର କରିବା ପାଇଁ ପ୍ରାରମ୍ଭିକ ଭାବରେ ୪୮ଟି ଶିଳ୍ପ ତାଲିମ ତଥା ଉତ୍ପାଦନ କେନ୍ଦ୍ର ପ୍ରତିଷ୍ଠା କରିଥିଲେ, ଯାହା ପରବର୍ତ୍ତୀ କାଳରେ ପଞ୍ଚାୟତ ଶିଳ୍ପ ଭାବରେ ପରିବର୍ତ୍ତିତ ହୋଇଥିଲା । ଏହି ସମୟରେ ବିଶେଷତଃ ଅନେକ ଟାଇଲ୍ କାରଖାନା ଓ କ୍ଷୁଦ୍ର ଚିନି କାରଖାନା ପ୍ରତିଷ୍ଠିତ ହୋଇଥିଲା । ୧୯୬୨ ମସିହାରୁ ପୁରସ୍କାର ବ୍ୟବସ୍ଥା ପ୍ରଚଳନ କରାଯାଇ ଗ୍ରାମ୍ୟ ଶିଳ୍ପାୟନକୁ ପ୍ରୋତ୍ସାହିତ କରାଗଲା ।

ବିଜୁ ପଟ୍ଟନାୟକ ତାଙ୍କର ଦ୍ୱିତୀୟ ଥର ମୁଖ୍ୟମନ୍ତ୍ରିତ୍ୱ କାଳରେ ନୂତନ ଉନ୍ମାଦନା ଓ ଉତ୍ସାହର ସହିତ ପଞ୍ଚାୟତିରାଜ ବ୍ୟବସ୍ଥା ପ୍ରଚଳନ ପାଇଁ ନିଷ୍ଠାପର ଉଦ୍ୟମ ଆରମ୍ଭ କଲେ । ଅତୀତର ସ୍ମୃତିକୁ ସ୍ମରଣ କରି ସେ ବକ୍ତବ୍ୟ ପ୍ରଦାନ କରିଥିଲେ, ''32 years back, when I was the Chief Minister of the state, I got incredible support from the public. At that time I tried to assimilate every people of a villgae into democratic ideals. For this, numerous steps had been taken and various new laws were passed. Unfortunately the political storms of the Sixties could not be able to accomplish this noble mission. So when I am ruminating about the past I feel hopeless and realised a lot has remained to be done.'' ବାସ୍ତବରେ ତାଙ୍କ ନେତୃତ୍ୱରେ ଓଡ଼ିଶାରେ ସର୍ବପ୍ରଥମେ ଗଣତନ୍ତ୍ରରେ ତୃଣମୂଳ ସ୍ତରରୁ ଜନଗଣଙ୍କୁ ସାମିଲ କରି ପଞ୍ଚାୟତିରାଜ ଓ ସ୍ଥାନୀୟ ସ୍ୱାୟତ୍ତଶାସନ ବ୍ୟବସ୍ଥାର ପୁନରୁଦ୍ଧାର ସମ୍ଭବପର ହୋଇପାରିଥିଲା । ସ୍ୱୟଂ ଜନସାଧାରଣ ନିଜକୁ ଶାସନ କରନ୍ତୁ ଓ ସେମାନଙ୍କ ଅଞ୍ଚଳର ବିକାଶ ସାଧନ ପାଇଁ ଯୋଜନା ପ୍ରଣୟନ ଏବଂ ତାହାକୁ କାର୍ଯ୍ୟକାରୀ କରନ୍ତୁ ବୋଲି ବିଜୁ ପଟ୍ଟନାୟକଙ୍କ ପ୍ରକୃତ ଚିନ୍ତାକଳ୍ପ ଥିଲା । ତାଙ୍କ ମତରେ ପଞ୍ଚାୟତଗୁଡ଼ିକୁ ଆର୍ଥିକ କ୍ଷମତା ହସ୍ତାନ୍ତର ନ କରିଲେ, ପଞ୍ଚାୟତିରାଜ ବ୍ୟବସ୍ଥା ସଫଳତା ହାସଲ କରିପାରିବ ନାହିଁ । ଏ ଚିନ୍ତାଧାରାକୁ କାର୍ଯ୍ୟରେ ପରିଣତ କରିବା ଉଦ୍ଦେଶ୍ୟରେ ସେ ଏକ ସ୍ୱତନ୍ତ୍ର ଅର୍ଥ କମିଶନ ନିଯୁକ୍ତ କରିଥିଲେ । ପଞ୍ଚାୟତିରାଜ ବ୍ୟବସ୍ଥାରେ ମହିଳାମାନଙ୍କୁ ସାମିଲ କରିବା ପାଇଁ ତ୍ରିସ୍ତରୀୟ ପଞ୍ଚାୟତିରାଜ କ୍ଷେତ୍ରରେ ଶତକଡ଼ା ୩୩ ଭାଗ ଆସନ ସେମାନଙ୍କ ପାଇଁ ସଂରକ୍ଷଣ କରାଗଲା । ଏହାଥିଲା ସ୍ୱାଧୀନ ଭାରତର ଇତିହାସରେ ଅଭୂତପୂର୍ବ ଘଟଣା । ତାଙ୍କର ଚିନ୍ତାଧାରାକୁ କାର୍ଯ୍ୟକରିବା ସକାଶେ ୧୯୯୧ ମସିହାରେ ଓଡ଼ିଶା ଜିଲ୍ଲା ପରିଷଦ ଆଇନ୍ ଓ ୧୯୯୨ ମସିହାରେ ପଞ୍ଚାୟତ ସମିତି ସଂଶୋଧନ ଆଇନ୍ ଓଡ଼ିଶା ବିଧାନସଭାରେ ଗୃହୀତ ହେଲା । ଏହାଫଳରେ ତଫସିଲଭୁକ୍ତ ଜାତି ଓ ଉପଜାତିର ମହିଳାମାନେ ସଂରକ୍ଷଣର ସୁବିଧା ହାସଲ କଲେ । ଭାରତ ଇତିହାସରେ ପ୍ରଥମଥର ପାଇଁ ଓଡ଼ିଶାର ବିଭିନ୍ନ ଗ୍ରାମପଞ୍ଚାୟତ, ପଞ୍ଚାୟତ ସମିତି ଓ ଜିଲ୍ଲା ପରିଷଦକୁ ୨୮ ହଜାରରୁ ଊର୍ଦ୍ଧ୍ୱ ସଂଖ୍ୟକ ମହିଳା ନିର୍ବାଚିତ ହେଲେ । ଆହୁରି ମଧ୍ୟ ଏକ ତୃତୀୟାଂଶ ଜିଲ୍ଲା ପରିଷଦର ଅଧ୍ୟକ୍ଷ ପଦବୀରେ ମହିଳାମାନେ ଅଧିଷ୍ଠିତ

ହେଲେ । ଏହା ଥିଲା ମହିଳା ସଶକ୍ତିକରଣ ଦିଗରେ ବିଜୁବାବୁଙ୍କର ଏକ ଯୁଗାନ୍ତକାରୀ ପଦକ୍ଷେପ । ଏଠାରେ ଉଲ୍ଲେଖନୀୟ ଯେ, ପରବର୍ତ୍ତୀ ସମୟରେ ବିଜୁ ପଟ୍ଟନାୟକଙ୍କ ପ୍ରଣିତ ଏହି ମହିଳା ସଂରକ୍ଷଣ ନୀତିକୁ ଦେଶର ଅନେକ ରାଜ୍ୟ ଅନୁସରଣ କରିଥିଲେ । ଭାରତୀୟ ସମ୍ବିଧାନର ୭୩ ଓ ୭୪ତମ ସଂଶୋଧନ ଆଇନ୍ ଅନୁଯାୟୀ ସମଗ୍ର ଭାରତବର୍ଷରେ ଯଥାକ୍ରମେ ଗ୍ରାମ୍ୟ ଓ ନଗର ସ୍ୱାୟତ୍ତଶାସନ କ୍ଷେତ୍ରରେ ସଂସ୍କାର ପ୍ରଚଳନ କରାଗଲା । ପୂର୍ବରୁ ୧୯୬୪ ମସିହାରେ ପ୍ରଚଳିତ ଓଡ଼ିଶା ଗ୍ରାମପଞ୍ଚାୟତ ଆଇନ୍ ଓ ୧୯୫୯ ମସିହାରେ ଓଡ଼ିଶା ପଞ୍ଚାୟତ ସମିତି ଆଇନ୍‌କୁ ୧୯୯୧, ୧୯୯୨ ଓ ୧୯୯୩ ମସିହାରେ ସଂଶୋଧନ କରାଗଲା । ୧୯୯୧ ମସିହାରେ ପ୍ରଣିତ ଓଡ଼ିଶା ଜିଲ୍ଲା ପରିଷଦ ଆଇନାନୁଯାୟୀ ପ୍ରତ୍ୟେକ ଜିଲ୍ଲା ସ୍ତରରେ ଜିଲ୍ଲା ପରିଷଦ ଗଠନ କରିବାର ବ୍ୟବସ୍ଥା ପ୍ରଚଳିତ ହେଲା । ଏହି ଆଇନ୍ ଅନୁସାରେ ଜିଲ୍ଲା ପରିଷଦକୁ ଜିଲ୍ଲା ସ୍ତରରେ ଯୋଜନା ପ୍ରଣୟନ ଓ ଉନ୍ନୟନ କାର୍ଯ୍ୟକ୍ରମଗୁଡ଼ିକର ତଦାରଖ କରିବାର କ୍ଷମତା ପ୍ରଦାନ କରାଗଲା ।

ଜାତିରଜନକ ମହାତ୍ମା ଗାନ୍ଧୀ ଭାରତରେ ପ୍ରକୃତ ଗଣତନ୍ତ୍ରକୁ ଫଳପ୍ରସୂ କରିବା ପାଇଁ ସର୍ବଦା ପଞ୍ଚାୟତ ଉପରେ ଗୁରୁତ୍ୱ ଦେଉଥିଲେ । ସେ କହୁଥିଲେ, ‘‘ମୋର ଗ୍ରାମ୍ୟ ସ୍ୱରାଜ୍ୟ ହେଲା ପ୍ରତ୍ୟେକ ଗ୍ରାମ ଏକ ପୂର୍ଣ୍ଣ ଗଣତନ୍ତ୍ର ହେଉ । ବ୍ୟକ୍ତିଗତ ସ୍ୱାଧୀନତା ଆଧାରରେ ଏଠାରେ ଜନତନ୍ତ୍ର ରହୁ । ପ୍ରକୃତ ଗଣତନ୍ତ୍ର କଦାପି କେନ୍ଦ୍ରରେ ବସିଥିବା କୋଡ଼ିଏ ଜଣ ବ୍ୟକ୍ତିଙ୍କ ଦ୍ୱାରା କାର୍ଯ୍ୟକାରୀ ହୋଇପାରିବ ନାହିଁ । ଏହା କେବଳ ତୃଣମୂଳ ସ୍ତରରେ ପ୍ରତିଟି ଗାଁର ଲୋକମାନଙ୍କ ଦ୍ୱାରା ହିଁ କାର୍ଯ୍ୟକାରୀ କରାଯାଇପାରିବ । ଭାରତର ପ୍ରକୃତ ଗଣତନ୍ତ୍ରରେ ଗାଁ ହିଁ ମୁଖ୍ୟ । ଯଦି ଗୋଟିଏ ଗାଁ ପଞ୍ଚାୟତିରାଜ ଚାହେଁ, ଯାହାକୁ ଇଂରାଜୀରେ ରିପବ୍ଲିକ୍ କହନ୍ତି, କେହି ତାକୁ ବାଧା ଦେଇପାରିବେ ନାହିଁ । ପଞ୍ଚାୟତର ଏକ ଅତି ପ୍ରାଚୀନ ସୁଗନ୍ଧ ରହିଛି । ଏହା ଗୋଟିଏ ଅତି ଉତ୍ତମ ଶବ୍ଦ । ଏହାର ଅର୍ଥ ହେଲା ଗ୍ରାମବାସୀଙ୍କ ଦ୍ୱାରା ନିର୍ବାଚିତ ପାଞ୍ଚଜଣ ବ୍ୟକ୍ତିଙ୍କର ଏକ ଗୋଷ୍ଠୀ । ଏହା ଏପରି ଏକ ବ୍ୟବସ୍ଥାର ପ୍ରତିନିଧିତ୍ୱ କରେ, ଯାହାଦ୍ୱାରା ଭାରତର ଅସଂଖ୍ୟ ଗ୍ରାମ୍ୟ ରିପବ୍ଲିକ୍ ଶାସିତ ହୋଇଥାଏ ।’’ ଏହି ପରିପ୍ରେକ୍ଷୀରେ ୧୯୯୪ ମସିହା ଅପ୍ରେଲ ୨୩ ତାରିଖରେ ପାର୍ଲିଆମେଣ୍ଟ ଭବନ ଆନେକ୍ସରେ ଅନୁଷ୍ଠିତ ‘‘ପଞ୍ଚାୟତିରାଜ, ପାର୍ଲିଆମେଣ୍ଟ ସଦସ୍ୟ ଓ ବିଧାୟକ’’ ଶୀର୍ଷକ ଜାତୀୟ ସମ୍ମିଳନୀରେ ଓଡ଼ିଶାର ପ୍ରବାଦପୁରୁଷ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକ ପ୍ରଦାନ କରିଥିବା ତାଙ୍କ ଉଦ୍‌ଘାଟନୀ ଅଭିଭାଷଣ ପ୍ରଣିଧାନଯୋଗ୍ୟ । ତାଙ୍କ ବକ୍ତବ୍ୟରେ ସେ କହିଥିଲେ, ‘‘ବହୁତ ଦିନ ତଳେ ମୁଁ ଗୋଟିଏ ନୂଆ ଭାରତବର୍ଷର ସ୍ୱପ୍ନ ଦେଖିଥିଲି । ମୋ’ ସ୍ୱପ୍ନର ଭାରତରେ ଗଣତନ୍ତ୍ର କେତେଜଣ କୁହାଳିଆ ବା ତଥାକଥିତ ବୁଦ୍ଧିଜୀବୀଙ୍କ ବିଳାସ ହୋଇ ରହିନଥା’ନ୍ତା । ମୁଁ ସ୍ୱପ୍ନ ଦେଖିଥିଲି ଏପରି ଏକ ଭାରତବର୍ଷ ଯେଉଁଠାରେ ଗଣତନ୍ତ୍ର କେବଳ ନିର୍ବାଚନ ସର୍ବସ୍ୱ ହେବ ନାହିଁ । ଏହା ହେବ ଲୋକମାନଙ୍କୁ ପ୍ରତ୍ୟେକ କ୍ଷେତ୍ରରେ ଘନିଷ୍ଠ ଭାବରେ ଜଡ଼ିତ କରାଇବାର ଏକ ମାଧ୍ୟମ । ଗାଁ ଗଣ୍ଡା ହେଉଛି ଭାରତର ଆତ୍ମା । ମୋ’ ସ୍ୱପ୍ନର ଭାରତରେ ଗାଁ ଗହଳିରୁ ଗଣତନ୍ତ୍ର ଆରମ୍ଭ ହୋଇ କ୍ରମଶଃ ଉପରକୁ ପ୍ରସାରିତ ହୋଇଥା’ନ୍ତା ।’’ ବାସ୍ତବରେ ବିଜୟାନନ୍ଦ ପଟ୍ଟନାୟକ କେବଳ ଜଣେ ବ୍ୟକ୍ତିବିଶେଷ ନୁହନ୍ତି, ସେ ଥିଲେ ଗୋଟିଏ ଜାତି ଓ ଗୋଟିଏ ରାଜ୍ୟର ପରିଚୟ । ସେ ଏଭଳି ଜଣେ ବିଚକ୍ଷଣ ବ୍ୟକ୍ତିତ୍ୱ, ଯିଏ ଓଡ଼ିଶା ରାଜନୀତିକୁ ପ୍ରାୟ ଅର୍ଦ୍ଧଶତାବ୍ଦୀ ଧରି ପ୍ରଭାବିତ କରିଥିଲେ ଏବଂ ଯାହାଙ୍କ ହୃଦୟରେ ଥିଲା ଜନଗଣଙ୍କ ପ୍ରତି ଅସୀମ ଶ୍ରଦ୍ଧା ଓ ସମବେଦନା ।

ଅବସରପ୍ରାପ୍ତ ଅଧ୍ୟକ୍ଷ
ଆନନ୍ଦପୁର ମହାବିଦ୍ୟାଳୟ, ଆନନ୍ଦପୁର



# ପଞ୍ଚାୟତିରାଜରେ ସ୍ୱ-ଶାସନ

ଡଃ. ସତ୍ୟ ନାରାୟଣ ମିଶ୍ର

ଗୋଟିଏ ଜାତିର ମୌଳିକ ମାନ୍ୟତା ସେତେବେଳେ ମିଳିଥାଏ, ଯେତେବେଳେ ଉକ୍ତ ଜାତି ସମାଜର ପ୍ରଗତିର ଉତ୍କର୍ଷରେ ଉପନୀତ ହୋଇ ଶାସନକୁ ବିକେନ୍ଦ୍ରୀକରଣ କରି ଜନକଲ୍ୟାଣ ହିତାର୍ଥେ ଉତ୍ସର୍ଗ ହୋଇଥାଏ । ଗଣତାନ୍ତ୍ରିକ ବିଧି ବ୍ୟବସ୍ଥାରେ ଜନକଲ୍ୟାଣ ରାଷ୍ଟ୍ରର ମାନ୍ୟତା ସେତେବେଳେ ଉପଲବ୍ଧି ହୋଇଥାଏ, ଯେତେବେଳେ ସମାଜର ସର୍ବନିମ୍ନ ସ୍ତରରୁ ଶାସନ ବ୍ୟବସ୍ଥା ଅଙ୍କୁରିତ ହୋଇ ସମାନ ସୁବିଧାସୁଯୋଗ ବ୍ୟକ୍ତି ହାତ ପାଆନ୍ତାରେ ପାଇଥାଏ । ବ୍ୟକ୍ତି ଓ ସମାଜ ଯେତେବେଳେ ଶାସନରେ ଆନନ୍ଦିତ ହୋଇଥାନ୍ତି, ସେଇଠି ଶାସନର ଗତିପଥ ସୁଚାରୁରୂପେ ପ୍ରଗତିର ପଥ ଦେଇ ଧାବମାନ ହେଉଛି ବୋଲି ସ୍ୱୀକାର କରିବାକୁ ପଡିଥାଏ ଓ ଉକ୍ତ ପ୍ରଗତି ସମ୍ଭବ ହୋଇଥାଏ ସମାଜର ପଞ୍ଚାୟତ ବ୍ୟବସ୍ଥାର ଶାସନ ବ୍ୟବସ୍ଥା ମଧ୍ୟରେ । ପୂର୍ବତନ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକ ଓଡିଶାରେ ଶାସନର ବିକେନ୍ଦ୍ରୀକରଣ କରି ପଞ୍ଚାୟତକୁ ଅଧିକ ଗୁରୁତ୍ୱ ଦେବା ସହିତ ପଞ୍ଚାୟତିରାଜର ଶାସନ ବ୍ୟବସ୍ଥାକୁ ଲୋକାଭିମୁଖୀ କରିଥିଲେ । ସେଥିପାଇଁ ଓଡିଶାରେ ବିଜୁ ପଟ୍ଟନାୟକଙ୍କ ଜନ୍ମ ତିଥିକୁ 'ପଞ୍ଚାୟତିରାଜ ଦିବସ' ଭାବରେ ପାଳନ କରାଯାଏ, କାରଣ ପଞ୍ଚାୟତ ହେଉଛି ଶାସନ ବ୍ୟବସ୍ଥାର ଅଙ୍କୁର । ସେଇଠୁ ସୃଷ୍ଟି ହୋଇଥାଏ ପ୍ରଗତି ପଥର ପ୍ରକୃତ ପାହାଚ । ଭାରତର ସମୁଦାୟ ଜନସଂଖ୍ୟାର ୭୦ ପ୍ରତିଶତ ଗ୍ରାମାଞ୍ଚଳରେ ବସବାସ କରୁଥିବା ବେଳେ ଶାସନ ବ୍ୟବସ୍ଥାର ସର୍ବାଧିକ ବ୍ୟବସ୍ଥା ଓ ଉପଯୋଗ ଉକ୍ତ ଜନସଂଖ୍ୟା ଉପରେ ଦୃଷ୍ଟି ଦେବା ଉଚିତ, ଯାହା ପଞ୍ଚାୟତ ଓ ସରପଞ୍ଚମାନଙ୍କ ଦ୍ୱାରା ବ୍ୟବସ୍ଥିତ ହୋଇଥାଏ । ୧୯୪୮ ମସିହାରେ ଓଡ଼ିଶା ଗ୍ରାମପଞ୍ଚାୟତ ଅଧିନିୟମ ଆଇନ ପ୍ରଣୟନ କରାଯାଇଥିଲା । ପରବର୍ତ୍ତୀ ସମୟରେ ୧୯୬୧ ମସିହାରେ ପଞ୍ଚାୟତିରାଜ ଅନୁଷ୍ଠାନର ତ୍ରିସ୍ତରୀୟ ବ୍ୟବସ୍ଥା ଓଡିଶାରେ ପ୍ରବର୍ତ୍ତିତ ହୋଇଥିଲା । ମାତ୍ର ପଞ୍ଚାୟତିରାଜ ବ୍ୟବସ୍ଥା ଓ ଚିନ୍ତାଧାରାର ଜନକ ହେଉଛନ୍ତି ବଳବନ୍ତ ରାୟ ମେହେଟ୍ଟା ଓ ସେଥିପାଇଁ ସେ ପଞ୍ଚାୟତିରାଜ ଅନୁଷ୍ଠାନର ପିତା ଭାବରେ ଜଣାଶୁଣା, ଯାହା ବଳବନ୍ତ ରାୟ ମେହେଟ୍ଟା କମିଟି (୧୯୫୭) ଭାବରେ ମଧ୍ୟ ଜଣାଯାଏ । ୨୦୧୦ ମସିହାରେ ଭାରତର ପୂର୍ବତନ ପ୍ରଧାନମନ୍ତ୍ରୀ ମନମୋହନ ସିଂଙ୍କ ଦ୍ୱାରା ଘୋଷିତ ହୋଇଥିବା ପ୍ରଥମ ଜାତୀୟ ପଞ୍ଚାୟତିରାଜ ଦିବସ ମଧ୍ୟ ପଞ୍ଚାୟତିରାଜ ଦିବସ ପାଳନ କ୍ଷେତ୍ରରେ ଉଲ୍ଲେଖନୀୟ ଭୂମିକା ଗ୍ରହଣ କରିଥାଏ । ଭାରତୀୟ ସମ୍ବିଧାନର ୭୩ତମ ସଂଶୋଧନ ଅଧିନିୟମ, ୧୯୯୨, ଯାହା ପଞ୍ଚାୟତିରାଜ କାର୍ଯ୍ୟ ବ୍ୟବସ୍ଥାକୁ ସ୍ୱୀକୃତି ପ୍ରଦାନ ପାଇଁ ପଥ ଉନ୍ମୁକ୍ତ କରିଥାଏ ଓ ଏହା କାର୍ଯ୍ୟକାରୀ ହେଲା ୨୪ ଏପ୍ରିଲ, ୧୯୯୩, ଯାହା ଭାରତର ସମ୍ବିଧାନରେ ଭାଗ ୯ରେ ନିମଜ୍ଜିତ କରି ପଞ୍ଚାୟତକୁ ଗ୍ରାମୀଣ ଭାରତ ପାଇଁ ସ୍ଥାନୀୟ ସ୍ୱ-ଶାସନର ଅନୁଷ୍ଠାନ ଭାବରେ ଏକ ସାମ୍ବିଧାନିକ ମାନ୍ୟତା ପ୍ରଦାନ କଲା । ପଞ୍ଚାୟତ ଶବ୍ଦର ଅର୍ଥ ହେଉଛି ପାଞ୍ଚଟି ବା ପଞ୍ଚର ସଭା ଓ ରାଜ ଅର୍ଥ ହେଉଛି ନିୟମ । ପାରମ୍ପରିକ ଭାବରେ ପଞ୍ଚାୟତଗୁଡିକ ସ୍ଥାନୀୟ ସମ୍ପ୍ରଦାୟ

ଦ୍ୱାରା ମନୋନୀତ ବୟସ୍କ ଓ ଜ୍ଞାନୀ ବ୍ୟକ୍ତିଙ୍କୁ ନେଇ ଗଠିତ ହେଉଥିଲା, ଯେଉଁମାନେ ବ୍ୟକ୍ତି ଓ ଗ୍ରାମ ମଧ୍ୟରେ ବିବାଦର ସମାଧାନ କରୁଥିଲେ ତଥା ସାମାଜିକ କ୍ଷେତ୍ରରେ ସେମାନଙ୍କର ଯଥେଷ୍ଟ ମାନ୍ୟତା ଥିଲା । ପଞ୍ଚାୟତ ଶାସନର ଅର୍ଥ ବିଶେଷ ଭାବରେ ଦୃଷ୍ଟିଗୋଚର କଲେ ପ୍ରତୀୟମାନ ହୋଇଥାଏ ଯେ ପଞ୍ଚାୟତ ହେଉଛି ଗ୍ରାମର ପ୍ରତ୍ୟକ୍ଷ କ୍ଷେତ୍ର ଓ ପଞ୍ଚାୟତଗୁଡ଼ିକ ଗ୍ରାମର ବ୍ୟବସ୍ଥାକୁ ନେଇ ଜଡ଼ିତ ହୋଇଥାଏ ।

ଇତିହାସ ଆରମ୍ଭରୁ ଭାରତୀୟ ଗ୍ରାମଗୁଡ଼ିକ ଶାସନର ମେରୁଦଣ୍ଡ ହୋଇଆସୁଛି । ଗାନ୍ଧିଜୀଙ୍କ ସ୍ୱପ୍ନ ଗ୍ରାମାଞ୍ଚଳର ପୁନଃ ନିର୍ମାଣରେ ଗ୍ରାମାଞ୍ଚଳ ଅଧିବାସୀଙ୍କ ଅଂଶଗ୍ରହଣକୁ ତାଲିକାଭୁକ୍ତ କରିବା ପାଇଁ ତିନି ସ୍ତରୀୟ ପଞ୍ଚାୟତିରାଜ ବ୍ୟବସ୍ଥାର ପ୍ରବର୍ତ୍ତନ ସହିତ ବାସ୍ତବରେ କାର୍ଯ୍ୟ କରିବା ପାଇଁ ବ୍ୟବସ୍ଥା କରାଯାଇଛି । କାରଣ ଗାନ୍ଧିଜୀ ଭଲ ଭାବରେ ହୃଦ୍‌ବୋଧ କରିଥିଲେ ଯେ ପଞ୍ଚାୟତ ହେଉଛି ଅର୍ଥନୀତି, ରାଜନୀତି, ସମାଜନୀତି ଓ ଶାସନ ବ୍ୟବସ୍ଥାର ବିକଳ୍ପ । ସେଥିପାଇଁ ସ୍ୱର୍ଗତ ବିଜୁ ପଟ୍ଟନାୟକ ଲୋକଙ୍କ ନିକଟରେ ଶାସନର ଫଳକୁ ପହଞ୍ଚାଇବା ପାଇଁ ପଞ୍ଚାୟତକୁ ଅଧିକ କ୍ରିୟାଶୀଳ କରିବା ପାଇଁ ଉଦ୍ୟମ କରିଥିଲେ ଓ ଅଧିକ କ୍ଷମତା ଦେବା ଦିଗରେ ସଙ୍କଳ୍ପବଦ୍ଧ ହୋଇଥିଲେ । ୨୦ ଲକ୍ଷରୁ ଅଧିକ ଜନସଂଖ୍ୟା ଥିବା ସମସ୍ତ କ୍ଷେତ୍ର ପାଇଁ ପଞ୍ଚାୟତିରାଜ ତିନି ସ୍ତରୀୟ ବ୍ୟବସ୍ଥା ଯୋଗାଇବା, ସମୟୋଚିତ ଭାବେ ପଞ୍ଚାୟତ ନିର୍ବାଚନ କରିବା, ଅନୁସୂଚିତ ଜାତି, ଅନୁସୂଚିତ ଜନଜାତି ଓ ମହିଳାଙ୍କ ପାଇଁ ଆସନ ସଂରକ୍ଷଣ ଯୋଗାଇବା ଯାହା ୩୩ ପ୍ରତିଶତରୁ କମ୍ ହୋଇ ନଥାଏ, ପଞ୍ଚାୟତର ଆର୍ଥିକ କ୍ଷମତା ସମ୍ବନ୍ଧରେ ସୁପାରିସ୍ କରିବାକୁ ରାଜ୍ୟ ଅର୍ଥ ଆୟୋଗ ନିଯୁକ୍ତ କରିବା ଇତ୍ୟାଦି ପଞ୍ଚାୟତିରାଜ ମଧ୍ୟରେ ଅନ୍ତର୍ଭୁକ୍ତ ହୋଇଥାଏ । ପଞ୍ଚାୟତର ଉନ୍ନତି ଓ ସ୍ୱୀକୃତି ହେଉଛି ପଞ୍ଚାୟତିରାଜରେ ମୂଳ ଉଦ୍ଦେଶ୍ୟ । ଯେତେବେଳେ ଶାସନର ନୀତି ନିର୍ଦ୍ଧାରଣ ମନ୍ତ୍ରୀ, ସଚିବ ଓ ବିଭାଗ ଦ୍ୱାରା ଆରମ୍ଭ ହୋଇଥାଏ, ତାହା ପଞ୍ଚାୟତ ବା ସର୍ବନିମ୍ନ ସ୍ତରରେ କାର୍ଯ୍ୟକାରୀ ହେଉଛି କି ନାହିଁ ତାହା ପଞ୍ଚାୟତ ମାଧ୍ୟମରେ କାର୍ଯ୍ୟକାରୀ କରାଯାଇଥାଏ ଓ ଶାସନର ପ୍ରକୃତ ରୂପରେଖ ସେଇଠି ପ୍ରତିପାଦିତ ହୋଇଥାଏ । ପଞ୍ଚାୟତ ମାଧ୍ୟମରେ ସମଗ୍ର ଜିଲ୍ଲା ପାଇଁ ବିକାଶ ଯୋଜନା ପ୍ରସ୍ତୁତ କରିବାକୁ ଜିଲ୍ଲା ଯୋଜନା କମିଟି ଗଠନ କରିବା ହେଉଛି ଏକ ପ୍ରମୁଖ କାର୍ଯ୍ୟ, ଯାହା ଏକ ସୁଚିନ୍ତିତ ପରିକଳ୍ପନାକୁ ଆଧାର କରିଥାଏ । ସମ୍ବିଧାନ ଅନୁଯାୟୀ, ପଞ୍ଚାୟତମାନଙ୍କୁ ସ୍ୱୟଂ ଶାସନର ଅନୁଷ୍ଠାନ ଭାବରେ କାର୍ଯ୍ୟ କରିବାକୁ କ୍ଷମତା ଓ ଅଧିକାର ଦିଆଯିବା ହେଉଛି ଶାସନ ବ୍ୟବସ୍ଥାକୁ ଉତ୍ତରଦାୟୀ ଭାବେ ବିକେନ୍ଦ୍ରୀକରଣ କରି ତାହାର ଉପଯୁକ୍ତ ରୂପାୟନକୁ ତଦାରଖ କରିବା । ଉପଯୁକ୍ତ ସ୍ତରରେ ପଞ୍ଚାୟତକୁ ଦିଆଯିବାକୁ ଥିବା କ୍ଷମତା ଓ ଦାୟିତ୍ୱଗୁଡ଼ିକ ହେଉଛି – ସମ୍ବିଧାନର ଏକାଦଶ ସୂଚୀରେ ଦିଆଯାଇଥିବା ୨୯ଟି ବିଷୟ ସହିତ ପୁନଃ ସମ୍ପର୍କରେ ଅର୍ଥନୈତିକ ବିକାଶ ତଥା ସାମାଜିକ ନ୍ୟାୟ ପାଇଁ ଯୋଜନାଗୁଡ଼ିକର କାର୍ଯ୍ୟକାରିତା ଉପଯୁକ୍ତ କର, ଶୁଳ୍କ ଆଦି ଆଦାୟ ଓ ସଂଗ୍ରହ କରିବା । ଅର୍ଥନୈତିକ ବିକାଶ ଓ ସାମାଜିକ ନ୍ୟାୟ ପାଇଁ ଯୋଜନା ପ୍ରସ୍ତୁତ । ପଞ୍ଚାୟତିରାଜ ମୁଖ୍ୟତଃ ଭାରତ, ପାକିସ୍ଥାନ, ନେପାଳ ଓ ବାଂଲାଦେଶ ଭଳି ଦେଶରେ ଦେଖିବାକୁ ମିଳେ । ମାଳଦ୍ୱୀପରେ ଏହା ହେଉଛି ସରକାରଙ୍କ ସର୍ବ ପୁରାତନ ବ୍ୟବସ୍ଥା । ଅନ୍ୟ ଅର୍ଥରେ ‘ରାଜ’ ଶବ୍ଦର ଅର୍ଥ ହେଉଛି ଶାସନ କରିବା ଓ ‘ପଞ୍ଚାୟତ’ ଶବ୍ଦର ଅର୍ଥ ହେଉଛି ସମାବେଶ । ସରପଞ୍ଚ କିମ୍ବା ମୁଖିଆ ହେଉଛନ୍ତି ପଞ୍ଚାୟତର ମୁଖ୍ୟ ନେତା ବା ମୁଖ୍ୟ । ଅତଏବ ୧୯୯୨ରେ ସାମ୍ବିଧାନିକ ସଂଶୋଧନ ଦ୍ୱାରା ପଞ୍ଚାୟତିରାଜ ପ୍ରଣାଳୀ ପ୍ରବର୍ତ୍ତିତ ହୋଇଥିଲା, ଯାହା ଦକ୍ଷିଣ ଏସିଆର ପାରମ୍ପରିକ ପଞ୍ଚାୟତ ବ୍ୟବସ୍ଥା ଉପରେ ଆଧାରିତ । ଏହାକୁ ଭାରତର ରାଜନୈତିକ ବ୍ୟବସ୍ଥାର ମୂଳଦୁଆ ଭାବରେ ପ୍ରୋତ୍ସାହିତ କରାଯାଏ ।

ମହାତ୍ମା ଗାନ୍ଧୀ ପଞ୍ଚାୟତିରାଜକୁ ଭାରତର ରାଜନୈତିକ ବ୍ୟବସ୍ଥାର ମୂଳଦୁଆ ବୋଲି କହିଥିଲେ ।

କାରଣ ତାଙ୍କର ଯୁକ୍ତି ଥିଲା ଭାରତରେ ଯଦି ଗ୍ରାମାଞ୍ଚଳ ବା ପଞ୍ଚାୟତର ଜୀବନଶୈଳୀ ସମୃଦ୍ଧ ଓ ଆର୍ଥିକ ଦୃଷ୍ଟିକୋଣରୁ ଉତ୍କୃଷ୍ଟ ହୋଇପାରିବ ତେବେ ଭାରତୀୟ ଅର୍ଥନୀତି ଏକ ବ୍ୟବସ୍ଥିତ ପୃଷ୍ଠଭୂମିରେ ଆଦୃତ ହେବାର ଆଶା କରାଯାଏ । ସେହି ଦୃଷ୍ଟିକୋଣକୁ ହୃଦୟଙ୍ଗମ କରି ସ୍ୱର୍ଗତ ବିଜୁ ପଟ୍ଟନାୟକ ଯେଉଁ ଚିନ୍ତା ବା ଉଦ୍ଦେଶ୍ୟ କରିଥିଲେ ତାହା ତାଙ୍କରି ସ୍ମୃତିକୁ ଉଜ୍ଜୀବିତ କରିବା ପାଇଁ ତାଙ୍କର ଜନ୍ମ ତିଥିକୁ ସମ୍ମାନ ଜଣାଇବା ପାଇଁ ଗ୍ରାମାଞ୍ଚଳର ପଞ୍ଚାୟତିରାଜ ଦିବସ ଏକ ସୁଦୂରପ୍ରସାରୀ ବ୍ୟବସ୍ଥା । ଯେତେବେଳେ ମଣିଷ ଜୀବନଚର୍ଯ୍ୟା ସମୟରେ ସର୍ବନିମ୍ନ ଆବଶ୍ୟକତା ଓ ନିଜଠାରେ ଉପଲବ୍ଧ ଥିବା ବ୍ୟବସ୍ଥାକୁ ବ୍ୟବହାର ନ କରିପାରିଲା, ତେବେ ଶାସନ ବ୍ୟବସ୍ଥା ସୁଚାରୁରୂପେ ଅଗ୍ରଗତି ହେଉନାହିଁ ବୋଲି ବିଚାର କରିବାକୁ ପଡିବ । ତେଣୁ ପଞ୍ଚାୟତିରାଜ ହେଉଛି ନିଜ କ୍ଷେତ୍ରରେ ବା ପରିଧି ମଧ୍ୟରେ ନିଜେ ରାଜା ବା ଶାସନର ସର୍ବେସର୍ବା । ମାତ୍ର ତାହା ନୀତି ନିୟମ ଓ ବିଧି ବ୍ୟବସ୍ଥାର ଅନୁମୋଦିତ ଗ୍ରନ୍ଥି ମଧ୍ୟରେ ବିକଶିତ ହୋଇଥାଏ । ଏହା ଏକ ବିକେନ୍ଦ୍ରୀକରଣ ସରକାର, ଯେଉଁଠାରେ ପ୍ରତ୍ୟେକ ଗ୍ରାମ ନିଜ କାର୍ଯ୍ୟ ପାଇଁ ଦାୟୀ ରହିବେ ଓ ନିଜର ସମସ୍ୟାକୁ ଆଲୋଚନା କରି ତାହାର ପ୍ରତିଷେଧ ବା ପ୍ରତିକାର କରିପାରିବାର ସୁବିସ୍ତୃତ କ୍ଷେତ୍ର ସୃଷ୍ଟି କରିଥାନ୍ତି । ଉତ୍ତମ ଶାସନ, ମାନବିକ ଅଧିକାର, ଆଇନର ଶାସନ, ଗଣତନ୍ତ୍ରକୁ ମଜବୁତ କରିବା, ସାଧାରଣ ପ୍ରଶାସନରେ ସ୍ୱଚ୍ଛତା ଓ କ୍ଷମତାକୁ ପ୍ରୋତ୍ସାହିତ କରିବା ଆବଶ୍ୟକ କରେ । ବ୍ୟକ୍ତିର ଆବଶ୍ୟକତା ଓ ଆକାଂକ୍ଷା ପ୍ରତି ରାଜ୍ୟ ତଥା ଏହାର ଅନୁଷ୍ଠାନଗୁଡ଼ିକର ପ୍ରତିକ୍ରିୟାଶୀଳତା ତଥା ଉତ୍ତମ ଶାସନ ପାଇଁ ଅନ୍ତର୍ଭୁକ୍ତ ନାଗରିକତା ଅତ୍ୟନ୍ତ ଜରୁରୀ । ଗଣତନ୍ତ୍ର ସମସ୍ତ ମଣିଷର ସମାନତା, ସାମାଜିକ ଓ ରାଜନୈତିକ ପରିବର୍ତ୍ତନରେ ଅଂଶଗ୍ରହଣ କରିବାର ଅଧିକାର ଓ ବିକାଶର ଅଧିକାର, ସମ୍ମାନରେ ବଞ୍ଚିବା ଉପରେ ନିର୍ଭର କରେ । ପଞ୍ଚାୟତିରାଜ ଏକ ଉତ୍ତମ ଶାସନ ବ୍ୟବସ୍ଥା ଓ ପ୍ରକ୍ରିୟା, ଯାହା ପ୍ରାଚୀନ କାଳରୁ ଗ୍ରାମଗୁଡ଼ିକ ସର୍ବଦା ଭାରତରେ ପ୍ରଶାସନର ମୌଳିକ ଅଙ୍ଗ ହୋଇଆସୁଅଛି । ଗ୍ରାମସଭା ସମଗ୍ର ପଞ୍ଚାୟତିରାଜ ଅନୁଷ୍ଠାନର ମୂଳଦୁଆ ହୋଇପାରେ, ଯାହାଦ୍ୱାରା ଭାରତୀୟ ଗଣତାନ୍ତ୍ରିକ ବ୍ୟବସ୍ଥା ସୁଦୃଢ ହୋଇପାରିବ । ତେଣୁ ବ୍ୟକ୍ତିର ସର୍ବାଙ୍ଗୀନ ବିକାଶ ଓ ସମାଜର ଆନୁଷ୍ଠାନିକ ବିକାଶ ହେଉଛି ଦେଶର, ଜାତିର ପ୍ରଗତି, ଯାହାର ପଥ ହେଉଛି ପଞ୍ଚାୟତ ବା ପଞ୍ଚାୟତିରାଜ ବ୍ୟବସ୍ଥା ।

ଅଭିଲେଖାଧିକାରୀ
ଜାତୀୟ ଅଭିଲେଖାଗାର, ଭାରତ ସରକାର
ଏମ-୭୯, ମଧୁସୂଦନ ନଗର
ୟୁନିଟ୍ - ୪, ଭୁବନେଶ୍ୱର



# ଦୁଃସାହସିକ ବୈମାନିକ ବିଜୁବାବୁ ଓ ଐତିହାସିକ ଡାକୋଟା

**ହର ପ୍ରସାଦ ମହାପାତ୍ର**



''ଇଣ୍ଡୋନେସିଆବାସୀଙ୍କ ଉପରେ ଡଚ୍ ଔପନିବେଶିକ ସାର୍ବଭୌମତ୍ୱକୁ ଭାରତ ସ୍ୱୀକୃତି ଦେଉନାହିଁ । ଯଦି ମୋ ବିମାନକୁ ଗୁଳି କରି ଖସାଇ ଦିଆଯାଏ, ତେବେ ଏହାର ଜବାବରେ ଭାରତୀୟ ଆକାଶରେ ଉଡୁଥିବା ପ୍ରତ୍ୟେକ ଡଚ୍ ବିମାନକୁ ଖସାଇ ଦିଆଯିବ ।''

*–ଦୁଃସାହସିକ ପାଇଲଟ୍ ବିଜୁ ପଟ୍ଟନାୟକ*

*୨୦ ଜୁଲାଇ, ୧୯୪୭*

ଡଚ୍‌ମାନଙ୍କ ପ୍ରତି ଏହି ଚରମବାଣୀ ଥିଲା ଅଦମ୍ୟ ପରାକ୍ରମ ଓ ସାହସର ପ୍ରତୀକ, ବୈମାନିକ, ସ୍ୱାଧୀନତା ସଂଗ୍ରାମୀ, ଓଡିଆ ଜନମାନସର ଗର୍ବ ଓ ଗୌରବ, ଓଡିଆମାନଙ୍କ ପ୍ରେରଣାର ସ୍ରୋତ ଏବଂ ଓଡ଼ିଶାର ପ୍ରାକ୍ତନ ଶିଳ୍ପପତି ଓ ମୁଖ୍ୟମନ୍ତ୍ରୀ ଏବଂ ଇଣ୍ଡୋନେସିଆର ଭୂମିପୁତ୍ର ସ୍ୱର୍ଗତ ବିଜୁ ପଟ୍ଟନାୟକଙ୍କର । ସ୍ୱପ୍ନ, ସଂକଳ୍ପ, ପ୍ରତିଜ୍ଞା ଓ ପ୍ରତିବଦ୍ଧତାର ମୂର୍ତ୍ତିମନ୍ତ ପ୍ରତୀକ ବିଜୁବାବୁ । ମାନବୀୟ ଓ ନିଃସ୍ୱାର୍ଥ ସେବା ପାଇଁ ଓଡିଆ ଜନମାନସରେ ସେ ଯେତିକି ପରିଚିତ, ନିର୍ଭୀକ ଓ ଦୁଃସାହସିକ ପଦକ୍ଷେପ ପାଇଁ ଜାତୀୟ ଓ ଆନ୍ତର୍ଜାତୀୟ ସ୍ତରରେ ମଧ୍ୟ ସେତିକି ଆଦୃତ । ତାଙ୍କ ପ୍ରତି ରକ୍ତବିନ୍ଦୁରେ ଥିଲା ଓଡିଶା ଓ ଓଡିଆମାନଙ୍କୁ ବିଶ୍ୱ ଦରବାରରେ ସୁପରିଚିତ କରାଇବା ସ୍ୱପ୍ନ ଏବଂ ପ୍ରାଚୀନ କଳିଙ୍ଗର ହୃତ ଗୌରବକୁ ଫେରାଇ ଆଣିବାକୁ ଦୃଢ ସଂକଳ୍ପ, ପ୍ରତିଜ୍ଞା ଓ ପ୍ରତିବଦ୍ଧତା ।

ଲକ୍ଷ୍ମୀନାରାୟଣ ଓ ଆଶାଲତାଙ୍କ ତୃତୀୟ ସନ୍ତାନ ବିଜୟାନନ୍ଦ । ପିଲାଟିବେଳୁ ଆକାଶରେ ଉଡି ବୁଲିବା ପାଇଁ ଆଖିରେ ଆଖିଏ ସ୍ୱପ୍ନ । ସେଦିନ କଟକର କିଲ୍ଲା ପଡିଆରେ ଓହ୍ଲାଇଥିବା ବ୍ରିଟିଶ ବିମାନକୁ ଅତି ନିକଟରୁ ଦେଖିବାକୁ ଯାଇ ସୁରକ୍ଷା ବାହିନୀ ଦ୍ୱାରା ତିରସ୍କୃତ ହେବା ପରେ ପ୍ରତିଜ୍ଞା କରିଥିଲେ, ବ୍ରିଟିଶ ବାୟୁସେନାରେ ବୈମାନିକ ହେବା ପାଇଁ ଏବଂ ହୋଇଥିଲେ ମଧ୍ୟ । ରେଭେନ୍ସା ମହାବିଦ୍ୟାଳୟର ବିଜ୍ଞାନ ସ୍ନାତକ ପାଠପଢାକୁ ପଛରେ ପକାଇ, ଭାରତୀୟ ବୈମାନିକ ପ୍ରଶିକ୍ଷଣ ଅନୁଷ୍ଠାନ ଏବଂ ଦିଲ୍ଲୀ ଫ୍ଲାଇଂ କ୍ଲବ୍‌ରୁ ଗ୍ରହଣ କରିଥିଲେ, ବିମାନ ଚାଳନା ତାଲିମ । ଆଉ, ସେଦିନର ସେଇ ଅପମାନର ପ୍ରତିଶୋଧ ନେବାକୁ ଯାଇ ବ୍ରିଟିଶ ବାୟୁସେନା ବିମାନରୁ ସ୍ୱାଧୀନତା ସଂଗ୍ରାମ ପ୍ରଚାରପତ୍ର ବାଣ୍ଟିବା ସହିତ ଭାରତୀୟ ଜାତୀୟ କଂଗ୍ରେସର ଗୁପ୍ତ ବୈଠକ ପାଇଁ ଜୟ ପ୍ରକାଶ ନାରାୟଣ, ରାମ ମନୋହର ଲୋହିଆ, ଅରୁଣା ଆସଫ ଅଲ୍ଲୀ ଭଳି ତୁଙ୍ଗ ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ବ୍ରିଟିଶ ବାୟୁସେନା ବିମାନରେ ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ ନେଇଯାଉଥିଲେ ।

ଯେଉଥିପାଇଁ, ସେ ଫିରୋଜପୁର ଜେଲରେ ଦୁଇବର୍ଷ ବନ୍ଦୀ ଜୀବନ ମଧ୍ୟ କଟାଇଥିଲେ ।

ଡାକୋଟା ସହିତ ବିଜୁବାବୁଙ୍କ ସମ୍ପର୍କର କାହାଣୀ ଯେତିକି ରୋମାଞ୍ଚକର, ସେତିକି ଅବିସ୍ମରଣୀୟ । ବିଜୁବାବୁଙ୍କ ପ୍ରଥମ ଡାକୋଟା ହାସଲ ବାସ୍ତବରେ ଦୁଃସାହସିକତାର ଏକ ମହାନ କାହାଣୀ । ସେତେବେଳକୁ ବିଜୁବାବୁ ଭୁବନେଶ୍ୱର ଫ୍ଲାଇଂ କ୍ଲବ୍ ଆରମ୍ଭ କରିସାରିଥିଲେ । କୋଲକାତା ନିକଟବର୍ତ୍ତୀ ପାଟଣାଗଡ଼ସ୍ଥିତ ଆମେରିକୀୟ ବାୟୁସେନା ଘାଟିରେ ବହୁ ସାମରିକ ବିମାନ ଅବ୍ୟବହୃତ ଅବସ୍ଥାରେ ପଡ଼ି ରହିଥିଲା । ଏମାନଙ୍କ ମଧ୍ୟରୁ ଅନେକ ଡାକୋଟା ଯୁଦ୍ଧସ୍ଥଳକୁ ସାମଗ୍ରୀ ପରିବହନ ବିମାନ ଭାବରେ ବ୍ୟବହୃତ ହେଉଥିଲା । ବିଜୁବାବୁ ଭୁବନେଶ୍ୱର ଫ୍ଲାଇଂ କ୍ଲବ୍ ପାଇଁ ସେଥିମଧ୍ୟରୁ ଗୋଟିଏ କିଣିବାକୁ ଚାହୁଁଥିଲେ । ବିଜୁ ଯେତେବେଳେ ପାଟଣାଗଡ଼ରୁ ବିମାନ ଉଡ଼ାଣ କରିବାକୁ ଯାଉଥିଲେ, ସେତେବେଳେ ତାଙ୍କ କିଛି ବନ୍ଧୁ ତାଙ୍କ ପାଖକୁ ଯାଇ ଖୁବ୍ ଅଳ୍ପ ସମୟ ମଧ୍ୟରେ ପ୍ରବଳ ଝଡ ସୃଷ୍ଟି ସମ୍ଭାବନା ଥିବାରୁ ବିମାନ ନ ଉଡ଼ାଇବାକୁ ଅନୁରୋଧ କରିଥିଲେ । କଳିଙ୍ଗର ଦାୟାଦ ଓଡିଆ ଜାତି କେବେ ହାରିବା ଶିଖିନି କି କାହା ପାଖରେ ମୁଣ୍ଡ ନୁଆଇଁବା ଶିଖିନି । ଦୁଃସାହସିକ ବିଜୁବାବୁ ସେମାନଙ୍କ ଅନୁରୋଧକୁ ଅଣଦେଖା କରି ''ଏହା ବିଜୁଙ୍କ ବିମାନ, ଯାହା ଝଡ଼ ସମୟରେ ଉଡ଼ିଥାଏ'' କହି ଉଡ଼ାଣ ଭରିଥିଲେ ଓ ଡାକୋଟା ନେଇ ଭୁବନେଶ୍ୱର ଫେରିଥିଲେ ।

*''ଇଣ୍ଡୋନେସିଆବାସୀଙ୍କ ଉପରେ ଡଚ୍ ଔପନିବେଶିକ ସାର୍ବଭୌମତ୍ୱକୁ ଭାରତ ସ୍ୱୀକୃତି ଦେଉନାହିଁ । ଯଦି ମୋ ବିମାନକୁ ଗୁଳି କରି ଖସାଇ ଦିଆଯାଏ, ତେବେ ଏହାର ଜବାବରେ ଭାରତୀୟ ଆକାଶରେ ଉଡୁଥିବା ପ୍ରତ୍ୟେକ ଡଚ୍ ବିମାନକୁ ଖସାଇ ଦିଆଯିବ ।''*

*– ଦୁଃସାହସିକ ପାଇଲଟ୍ ବିଜୁ ପଟ୍ଟନାୟକ*
*୨୦ ଜୁଲାଇ, ୧୯୪୭*

ଦୁଃସାହସିକ ବୈମାନିକ ବିଜୟାନନ୍ଦ ପଟ୍ଟନାୟକ ୧୯୪୭ରେ କଲିକତାଠାରେ ପ୍ରତିଷ୍ଠା କରିଥିଲେ ଦେଶର ପ୍ରଥମ ବ୍ୟକ୍ତିଗତ ଘରୋଇ ବିମାନ ପରିଚାଳନା ସଂସ୍ଥା କଳିଙ୍ଗ ଏୟାରଲାଇନ୍ସ । ନିଜ ପ୍ରିୟ ଡାକୋଟା ବିମାନ




ସମେତ ୧୫ଟି ବିମାନର ଦାୟିତ୍ୱ ନେଇ ବିଜୁବାବୁ ଥିଲେ ଏହାର ମୁଖ୍ୟ ପାଇଲଟ । ୧୯୫୩ ମସିହାରେ କଳିଙ୍ଗ ଏୟାରଲାଇନ୍ସ ସମେତ ଅନ୍ୟ ୭ଟି ଘରୋଇ ବିମାନ ପରିଚାଳନା ସଂସ୍ଥାର ଜାତୀୟକରଣ ଫଳରେ କଳିଙ୍ଗ ଏୟାରଲାଇନ୍ସ ବିଲୀନ ହୋଇଯାଥିଲା ଇଣ୍ଡିଆନ ଏୟାରଲାଇନ୍ସରେ ।

ଜାପାନଠାରୁ ସ୍ୱାଧୀନ ହେବା ପରେ ଇଣ୍ଡୋନେସିଆ ଉପରେ ପୁନର୍ବାର ଡଚ୍ ଔପନିବେଶ ତା'ର ସାର୍ବଭୌମତ୍ୱ ଜାହିର କରିବା ଯୋଗୁଁ ଇଣ୍ଡୋନେସିଆବାସୀଙ୍କ ସ୍ୱାଧୀନତା ଓ ସାର୍ବଭୌମତ୍ୱ ବିପନ୍ନ ହୋଇଥିଲା । ଡଚମାନଙ୍କ ଦ୍ୱାରା ଗୃହବନ୍ଦୀ ଥିବା ଇଣ୍ଡୋନେସିଆ ରାଷ୍ଟ୍ରପତି ସୁକର୍ଣ୍ଣ, ଉପରାଷ୍ଟ୍ରପତି ମହମ୍ମଦ ହଟ୍ଟା ଏବଂ ପ୍ରଧାନମନ୍ତ୍ରୀ ଶାହରିୟାରଙ୍କୁ ମୁକ୍ତ କରିବା ପାଇଁ ଜବାହରଲାଲ ନେହରୁଙ୍କ ଅନୁରୋଧକ୍ରମେ, ନିଜ ଡାକୋଟା ବିମାନରେ ଧର୍ମପତ୍ନୀ ଜ୍ଞାନ ଦେବୀଙ୍କୁ ସହ–ପାଇଲଟ ଭାବେ ନେଇ ଜାକର୍ତ୍ତା ଅଭିମୁଖେ ବିମାନ ଚାଳନା କରିଥିଲେ ଏବଂ ଡଚ ସୈନ୍ୟବାହିନୀଙ୍କ ଧମକକୁ ଭ୍ରୂକ୍ଷେପ ନ କରି, ସେମାନଙ୍କ ଅଗୋଚରରେ ୨୪ ଜୁଲାଇ ୧୯୪୭ରେ ଇଣ୍ଡୋନେସିଆ ରାଷ୍ଟ୍ରପତି ସୁକର୍ଣ୍ଣ, ଉପ–ରାଷ୍ଟ୍ରପତି ମହମ୍ମଦ ହଟ୍ଟା ଏବଂ

ପ୍ରଧାନମନ୍ତ୍ରୀ ଶାହରିୟାରଙ୍କୁ ସୁରକ୍ଷିତ ଭାବେ ଭାରତ ନେଇଆସିଥିଲେ । ୧୯୪୦ ଦଶକ ପ୍ରାରମ୍ଭରେ ରୟାଲ୍ ଇଣ୍ଡିଆନ୍ ଏୟାରଫୋର୍ସରେ ଅଫିସର ବିଜୁ ପଟ୍ଟନାୟକ ଡାକୋଟା ବିମାନ ଯୋଗେ ରେଙ୍ଗୁନ୍‌ରେ ଥିବା ବ୍ରିଟିଶ ପରିବାରକୁ ଉଦ୍ଧାର କରିବା ପାଇଁ ଅସଂଖ୍ୟ ଉଡ଼ାଣ ଭରିଥିଲେ । ସେହିପରି, ହିଟ୍‌ଲର୍‌ଙ୍କ ଆକ୍ରମଣ ବିରୋଧରେ ସଂଘର୍ଷ କରୁଥିବା ସୋଭିଏତ୍ ସେନାକୁ ଡାକୋଟା ବିମାନ ଯୋଗେ ଅସ୍ତ୍ରଶସ୍ତ୍ର ଏବଂ ଅନ୍ୟାନ୍ୟ ସାମଗ୍ରୀ ଯୋଗାଣ କରିଥିଲେ । ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ମଧ୍ୟ ଡାକୋଟା ବିମାନ ଯୋଗେ ବିଜୁବାବୁ ସୋଭିଏତ୍ ଋଷ୍‌କୁ ବିଭିନ୍ନ ସାମଗ୍ରୀ ପ୍ରେରଣ କରୁଥିଲେ । କାଶ୍ମୀର ଯୁଦ୍ଧ ସମୟରେ ବିଜୁବାବୁ ତାଙ୍କ ପ୍ରିୟ ଡିସି-୩ (ଡାକୋଟା) ବିମାନ ଚାଳନ କରି ଅତ୍ୟନ୍ତ କଠିନ ଓ ବିପଦପୂର୍ଣ୍ଣ ପରିସ୍ଥିତିରେ ୨୭ ଅକ୍ଟୋବର ୧୯୪୭ରେ ସୈନ୍ୟମାନଙ୍କୁ ସୁରକ୍ଷିତ ଭାବେ କାଶ୍ମୀରରେ ପହଞ୍ଚାଇଥିଲେ । ବାୟୁସେନା ଦ୍ୱାରା ଶ୍ରୀନଗରରେ ପ୍ରଥମ ପ୍ଲାଟୁନ ସୈନ୍ୟ ମୁତୟନ କରିବାରେ ଏହା ଥିଲା ପ୍ରଥମ ଘଟଣା । ବିଜୁବାବୁଙ୍କ ଅତି ପ୍ରିୟ କଳିଙ୍ଗ ଏୟାରଲାଇନ୍ସର ଡାକୋଟା ବିମାନ ଉତ୍ତର-ପୂର୍ବ ଭାରତକୁ ସାମଗ୍ରୀ ପରିବହନ କାର୍ଯ୍ୟରେ ମଧ୍ୟ ନିୟୋଜିତ ଥିଲା ।



ଇଣ୍ଡିଆନ ଏୟାରଲାଇନ୍ସ ସହିତ କଳିଙ୍ଗ ଏୟାରଲାଇନ୍ସର ସମ୍ମିଶ୍ରଣ ପରେ, ନିଜ ପ୍ରିୟ ଡାକୋଟା ବିମାନକୁ ଇଣ୍ଡିଆନ ଏୟାରଲାଇନ୍ସଠାରୁ ଲିଜ୍‌ରେ ଆଣିବା ସହିତ ଅନ୍ୟ ୫ଟି ଘରୋଇ ବିମାନ ପରିଚାଳନା ସଂସ୍ଥାର ସମ୍ମିଶ୍ରଣ କରାଇ ପୁଣିଥରେ ସେ ଆରମ୍ଭ କଲେ କଳିଙ୍ଗ ଏୟାରୱେଜ । ନନ୍‌ସିଡୁଲ୍ଡ ଚାର୍ଟର ଅପରେଟର ଭାବେ ୧୯୭୨ ଫେବୃଆରୀ ପର୍ଯ୍ୟନ୍ତ ଯାତ୍ରୀ, ମାଲ୍ ଓ ଡାକ ପରିବହନ ସେବା ଜାରି ରଖିଥିଲା କଳିଙ୍ଗ ଏୟାରୱେଜ । ପରବର୍ତ୍ତୀ ସମୟରେ ଏୟାର ଡ୍ରପ ଅପରେସନଗୁଡ଼ିକ ସଂପୂର୍ଣ୍ଣ ଭାବେ ଇଣ୍ଡିଆନ ଏୟାର ଫୋର୍ସ ଦ୍ୱାରା କାର୍ଯ୍ୟକାରୀ ହେବା ଫଳରେ, କୋଲକାତା ବିମାନ ବନ୍ଦରର ଏକ ପରିତ୍ୟକ୍ତ ହ୍ୟାଙ୍ଗରରେ ବନ୍ଦ ହୋଇଯାଇଥିଲା ଦ୍ୱିତୀୟ ବିଶ୍ୱଯୁଦ୍ଧ, ଭାରତ ଛାଡ଼ ଆନ୍ଦୋଳନ, ଇଣ୍ଡୋନେସିଆ ସ୍ୱାଧୀନତା ସଂଗ୍ରାମ, କାଶ୍ମୀର ଯୁଦ୍ଧ ଏବଂ ଭାରତ-ଚୀନ ଯୁଦ୍ଧ ଆଦି ବିଭିନ୍ନ ବିପଦପୂର୍ଣ୍ଣ ଓ କଠିନ ସମୟରେ ଗୁରୁଦାୟିତ୍ୱ ନିର୍ବାହ କରିଥିବା ତଥା ଓଡିଶା ଓ ଓଡିଆମାନଙ୍କ ଭାବାବେଗ ସହିତ ଜଡିତ ବିଜୁବାବୁଙ୍କ ସେହି ଅତିପ୍ରିୟ ଡାକୋଟା ବିମାନର ଅତୀତର ବୀରତ୍ୱର ଗାଥା ଏବଂ ତା' ସହିତ ତା'ର ଭାଗ୍ୟ ଓ ଭବିଷ୍ୟତ ।

ବିଜୁବାବୁଙ୍କ ଦ୍ୱାରା ୨୭ ମାସ ବ୍ୟବହାର ହୋଇଥିବା ୬୪ ଫୁଟ ଲମ୍ବ ଓ ୮ ଟନ୍ ଓଜନ ବିଶିଷ୍ଟ ସେହି ଡାକୋଟା ଡିସି-୩ ଭିଟି-ଏୟୁଆଇ ବିମାନକୁ ୨୦୦୯ ମସିହାରେ ପଶ୍ଚିମବଙ୍ଗ ସରକାର ଉତ୍ତରାଧିକାରୀ ବିହୀନ ଦର୍ଶାଇ, ଖଣ୍ଡଖଣ୍ଡ କରି ବିକ୍ରି କରିଦେବାକୁ ଯାଉଥିବା ଶୁଣି ଏହାକୁ ଓଡିଶା ଆଣିବା ପାଇଁ ପଦକ୍ଷେପ ନେଇଥିଲେ ବିଜୁ ପଟ୍ଟନାୟକଙ୍କ ସୁପୁତ୍ର ତଥା ଓଡିଶାର ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ । ଡାକୋଟା ବିମାନର ନିର୍ମାତା ଏବଂ ଅନ୍ୟ ନିର୍ଭରଯୋଗ୍ୟ ସଂସ୍ଥାମାନଙ୍କଠାରୁ ଆବଶ୍ୟକୀୟ ସମସ୍ତ ତଥ୍ୟ ପ୍ରମାଣ ସଂଗ୍ରହ କରି କୋଲକାତା ବିମାନ ବନ୍ଦର କର୍ତ୍ତୃପକ୍ଷଙ୍କୁ ଦେବା ପରେ ଆରମ୍ଭ ହୋଇଥିଲା ଏହାକୁ ଓଡିଶା ଆଣିବା ପ୍ରକ୍ରିୟା । ଦୀର୍ଘ ୧୩ ବର୍ଷର ନିରବଚ୍ଛିନ୍ନ ଉଦ୍ୟମ ପରେ ୨୦୨୩ ଜାନୁଆରୀ ୧୮ ତାରିଖରେ ଓଡିଶାକୁ ଫେରିଥିଲା ବିଜୁବାବୁଙ୍କ ଅତିପ୍ରିୟ ଡାକୋଟା ବିମାନ । ''କଳିଙ୍ଗାଃ ସାହସିକାଃ''ରେ ଯୋଡି ହୋଇଗଲା ଆଉ ଗୋଟିଏ ଫର୍ଦ୍ଦ ରାଜ୍ୟର ସମୃଦ୍ଧ ବିମାନ ଚଳାଚଳ ଇତିହାସ ଏବଂ ବିଜୁବାବୁ ଓ ଡାକୋଟା ।

ସହକାରୀ ପ୍ରେସ୍ ସୂଚନା ଅଧିକାରୀ
ସୂଚନା ଓ ଲୋକସମ୍ପର୍କ ବିଭାଗ
ଭୁବନେଶ୍ୱର

# ଶିଳ୍ପ ସାମ୍ରାଜ୍ୟର ସମ୍ରାଟ୍ : ବିଜୁ ପଟ୍ଟନାୟକ

ପ୍ରଫୁଲ୍ଲ କୁମାର ଦାସ

ଉତ୍କଳଗୌରବ ମଧୁସୂଦନ ଦାସ, ଉତ୍କଳ କେଶରୀ ଡଃ ହରେକୃଷ୍ଣ ମହତାବ,ଉତ୍କଳମଣି ଗୋପବନ୍ଧୁ ଦାସଙ୍କ ପରେ ବୀର ଓଡିଆ ଜାତିର ଗୌରବମୟ ଇତିହାସ ଓ ସୌରଭମୟ ସାହିତ୍ୟ ଆକାଶରେ ଯଦି କାହାର ନାମ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ, ତା ହେଲେ ସେ ହେଉଛନ୍ତି ଦୁଃସାହସୀ କଳିଙ୍ଗ କେଶରୀ ଉତ୍କଳର କୀର୍ତ୍ତିମାନ ଯୋଗଜନ୍ମା ସୁପୁରୁଷ ବିଜୁ ପଟ୍ଟନାୟକ । ସେ ଥିଲେ ଆଧୁନିକ ଓଡିଶାର ବିଶ୍ୱକର୍ମା, ସ୍ୱାଧୀନତା ସଂଗ୍ରାମୀ, ଦୁଃସାହସୀ ବୈମାନିକ, ରାଜନୀତିକ ଭାଗ୍ୟ ନିୟନ୍ତା, ସୁଶାସନର ସୂତ୍ରଧର, ଦୀନ ଦୁଃଖୀର ଆଶା ଭରସା,ଜନପ୍ରିୟ ଜନନାୟକ, ସମାଜର ସେବକ, ବିଚକ୍ଷଣ ରାଷ୍ଟ୍ରନୀତିଜ୍ଞ, ଯଶସ୍ୱୀ କିମ୍ବଦନ୍ତୀ ପୁରୁଷ ଓ ଶିଳ୍ପ ସାମ୍ରାଜ୍ୟର ସମ୍ରାଟ୍ ଆଦି ବିଭିନ୍ନ ଭୂମିକାରେ ତାଙ୍କର କର୍ମମୟ ଜୀବନର ବୈଚିତ୍ର୍ୟମୟ ସ୍ୱରୂପ ପ୍ରକଟିତ । ତାଙ୍କ ଭଳି ଆଦର୍ଶ ବ୍ୟକ୍ତିତ୍ୱ, ଉତ୍ତୁଙ୍ଗ ଉଚ୍ଚାଙ୍ଗ ପ୍ରଭାବଶାଳୀ ନେତୃତ୍ୱର ପଟ୍ଟାନ୍ତର ନାହିଁ । ଓଡିଶା ମାଟି ଓ ଓଡିଆ ଜାତି ପାଇଁ ତାଙ୍କ ଅବଦାନର ତୁଳନା ନାହିଁ କି କଳନା ନାହିଁ । ତାଙ୍କ ସେବା ତ୍ୟାଗ, ତପସ୍ୟାର ଉଦାହରଣ ନାହିଁ । ତାଙ୍କ ଭଳି ଜଣେ କୀର୍ତ୍ତିମାନ ଯୋଗଜନ୍ମା ବରପୁତ୍ରଙ୍କୁ ଜନ୍ମ ଦେଇ ବୀରପ୍ରସବିନୀ ଉତ୍କଳ ଜନନୀ ଶତଧନ୍ୟା ହୋଇଛି ।



ଏକ ସମ୍ଭ୍ରାନ୍ତ , ସଂସ୍କୃତି ସମ୍ପନ୍ନ ସ୍ୱାଧୀନତା ସଂଗ୍ରାମୀ ପରିବାରରେ ବିଜୁବାବୁ ଜନ୍ମ ହୋଇଥିଲେ ୧୯୧୬ ମସିହା ମାର୍ଚ୍ଚ ୫ ତାରିଖରେ । ପିତା ମାତାଙ୍କଠାରୁ ସେ ନିର୍ଭୀକତାର ଶିକ୍ଷା, ଦୁଃସାହସିକ ଦୀକ୍ଷା ଗ୍ରହଣ କରି ବିଶ୍ୱରେ ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିଥିଲେ । ମହାନ ସ୍ୱପ୍ନ, ଦୃଢ ସଂକଳ୍ପ ଓ କଠୋର ସାଧନା ତାଙ୍କୁ ଜୀବନର ପ୍ରତି କ୍ଷେତ୍ରରେ ସଫଳତାର ଶିଖରରେ ପହଞ୍ଚାଇ ପାରିଥିଲା । ତାଙ୍କର ଜୀବନ ଯେତିକି ଘଟଣା ବହୁଳ, ସେତିକି ରହସ୍ୟ ରୋମାଂଚକର । ବାଲ୍ୟକାଳରୁ ତାଙ୍କ ମନରେ ଜନସେବା ଓ ଦେଶଭକ୍ତିର ଜଳଗଙ୍ଗା କଳକଳ ଛଳଛଳ ନାଦରେ ପ୍ରବାହିତ ହୋଇଥିଲା । ତାଙ୍କୁ ଯେତେବେଳେ ଦଶବର୍ଷ ବୟସ ସ୍ୱରାଜ ଆଶ୍ରମରେ ମହାତ୍ମା ଗାନ୍ଧୀଙ୍କ ଦର୍ଶନ ପାଇଁ ଗାନ୍ଧିଜୀଙ୍କ ଜନଗହଳି ଠେଲି ପଶିବା ବେଳେ ପୋଲିସ ଲାଠି ମାଡରେ ତାଙ୍କର ମୁଣ୍ଡ ଫାଟି ଯାଇଥିଲା । ମୁଣ୍ଡରେ ରକ୍ତପୋଛି ସମ୍ମୁଖରେ ଶପଥ ନେଇଥିଲେ ଗୋରା ସିପାହିର ଏ ଜୁଲମର ଦିନେ

ପ୍ରତିଶୋଧ ନେବେ । ମିଶନ ସ୍କୁଲରେ ପଢୁଥିବା ବେଳେ ଜଣେ ୟୁରୋପୀୟ ସର୍ଜେଣ୍ଟ ତାଙ୍କୁ ମାଡ ମାରିଥିଲେ । ଘରକୁ ଫେରିବା ପରେ ତାଙ୍କ ବାପା ପଚାରିଲେ ନିଜର ମୁଣ୍ଡଟା ଫଟାଇ ଆସିଲୁ ସର୍ଜେଣ୍ଟର ମୁଣ୍ଡଟା ଫଟାଇ ପାରିଲୁ ନାହିଁ ? ଏ ଘଟଣାର ମାସକ ପରେ ବାରବାଟୀରେ ହକି ଖେଳିଲା ବେଳେ ବିଜୁବାବୁ ସେହି ସର୍ଜେଣ୍ଟର ଗୋଡ ହକି ଷ୍ଟିକରେ ଭାଙ୍ଗି ଦେଇଥିଲେ । ଉତ୍କଳମଣି ଗୋପବନ୍ଧୁଙ୍କ ସହିତ ଡଙ୍ଗାରେ ରିଲିଫ ବାଣ୍ଟିବା ପାଇଁ ବନ୍ୟାଂଚଳ ଯାଉଥିବା ବେଳେ ନଈ ମଝିରେ ଗୋପବନ୍ଧୁଙ୍କ ଛତା ଖସି ପଡିଲା । ବିଜୁ ବାବୁ ଡଙ୍ଗାରୁ ବଢିଲା ନଈକୁ ଡେଇଁପଡି ଛତାକୁ ନେଇ ଆସିଥିଲେ । ରେଭେନ୍ସାରେ ପଢିବା ବେଳେ ସାଥିଙ୍କ ସହିତ କଟକରୁ ପେଶୱାରକୁ ସାଇକେଲ ଯାତ୍ରା କରି ଦୁର୍ଗମ ପଥ ଅତିକ୍ରମ କରିଥିଲେ । ବି.ଏସ୍.ସି.ପଢୁଥିବା ବେଳେ ସେ ବୈମାନିକ ହେବାର ସ୍ୱପ୍ନ ଦେଖୁଥିଲେ । ପାଇଲଟ୍ ଟ୍ରେନିଂ ନେଇ ଜୀବନରେ ଜଣେ ସାହସୀ ଓ ସୁଦକ୍ଷ ପାଇଲଟ୍ ଭାବରେ ସେ ବହୁ ଅସାଧ୍ୟ ସାଧନ କରି ଜାତୀୟ ଓ ଆନ୍ତର୍ଜାତୀୟ ସ୍ତରରେ ଅଶେଷ ଖ୍ୟାତି ଅର୍ଜନ କରିଥିଲେ । ଶିକ୍ଷା ଜୀବନ ପରେ ବ୍ରିଟିଶ ସରକାରଙ୍କ ଅଧୀନରେ ପାଇଲଟ୍ ଚାକିରି କରିଥିଲେ । ଭାରତର ବଡଲାଟ୍ ଲର୍ଡ ୱାଭେଲଙ୍କର ସେ ପାଇଲଟ୍ ଥିଲେ ଏବଂ ବଡଲାଟ୍ଙ୍କ ଗୁପ୍ତ ଦଲିଲ ଗୋପନରେ ଗାନ୍ଧିଜୀଙ୍କୁ ଯୋଗାଇ ଦେଇଥିଲେ । ୧୯୪୦ରେ ଜୟପ୍ରକାଶ ନାରାୟଣଙ୍କ ସହ ତାଙ୍କର ସାକ୍ଷାତ୍ ହୋଇଥିଲା । ଚାକିରି ଛାଡି ଜାତୀୟ ରାଜନୀତିରେ ପ୍ରବେଶ କରି ୧୯୪୨ରେ ଭାରତ ଛାଡ ଆନ୍ଦୋଳନରୁ ତାଙ୍କର ରାଜନୈତିକ ଜୀବନ ଆରମ୍ଭ କରିଥିଲେ ।

୧୯୪୩ରେ ସେ ଦିଲ୍ଲୀରେ ଗିରଫ ହୋଇ ଲାଲକିଲାରେ ବନ୍ଦୀ ଜୀବନ ବିତାଇଥିଲେ । ଦ୍ୱିତୀୟ ବିଶ୍ୱ ଯୁଦ୍ଧ କାଳରେ ଜାପାନ, ବର୍ମା ଆକ୍ରମଣରେ ବିଜୁବାବୁ ନିଜକୁ ବିପନ୍ନ କରି କେତେକ ବ୍ରିଟିଶ୍ ପରିବାରଙ୍କୁ ମୃତ୍ୟୁ ମୁଖରୁ ଉଦ୍ଧାର କରିଥିଲେ । ହିମାଳୟରୁ ବିମାନ ନେଇ ଚୀନ୍ର ବିପ୍ଳବୀମାନଙ୍କୁ ସାହାଯ୍ୟ କରିଥିଲେ । ଭାରତ ଛାଡ ଆନ୍ଦୋଳନରେ ଜୟପ୍ରକାଶ ନାରାୟଣ, ଅରୁଣା ଆସଫଅଲ୍ଲୀ, ରାମ ମନୋହର ଲୋହିଆ, ଅଚ୍ୟୁତ ପଟ ବର୍ଦ୍ଧନ ପ୍ରମୁଖ ଜାତୀୟ ନେତୃବୃନ୍ଦଙ୍କୁ ନିଜ ଘରେ ଆଶ୍ରୟ ଦେଇଥିଲେ । ଗୋପନରେ ନେତାଜୀ ସୁଭାଷ ବୋଷଙ୍କ ପ୍ରଚାରପତ୍ର ବିମାନରେ ବିତରଣ କରୁଥିଲେ । ୧୯୪୬ରେ ଉତ୍ତର କଟକରୁ ନିର୍ବାଚିତ ହୋଇ ଓଡିଶା ବିଧାନସଭାକୁ ଯାଇଥିଲେ । ୧୯୪୭ରେ ଡଚ୍ ଇଣ୍ଡୋନେସିଆ ଯୁଦ୍ଧ ଚାଲିଥିବା ବେଳେ ବିଜୁବାବୁ ନେହେରୁଙ୍କ ନିର୍ଦ୍ଦେଶରେ ଇଣ୍ଡୋନେସିଆର ପ୍ରଥମ ପ୍ରଧାନମନ୍ତ୍ରୀ ସୁଲତାନ ସାରିୟାର ଓ ମହମ୍ମଦ ହଟ୍ଟା ପ୍ରଭୃତି ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ବିମାନରେ ଜାକର୍ତ୍ତାରୁ ରେଙ୍ଗୁନ ଦେଇ ଦିଲ୍ଲୀକୁ ନେଇ ଆସିଥିଲେ । ତାଙ୍କୁ ମିଳିଥିବା କୋଟି କୋଟି ଟଙ୍କା ଇଣ୍ଡୋନେସିଆର ଜନତାଙ୍କ ପାଇଁ ଉତ୍ସର୍ଗ କରିଦେଇଥିଲେ । ଇଣ୍ଡୋନେସିଆ ସ୍ୱାଧୀନତା ସଂଗ୍ରାମରେ ସହଯୋଗ ପାଇଁ ୧୯୫୦ରେ ତାଙ୍କୁ ପାଂଚଶହ କୋଟି ଟଙ୍କା ଦିଆଯାଇଥିଲା । କିନ୍ତୁ ବିଜୁବାବୁ ସେ ଟଙ୍କା ଇଣ୍ଡୋନେସିଆର କଲ୍ୟାଣ ନିମନ୍ତେ ଦାନ କରିଦେଇଥିଲେ । ୧୯୪୮ରେ ପାକିସ୍ଥାନର ଭାରତ ଆକ୍ରମଣ କାଳରେ ବିଜୁବାବୁ ଭାରତର ସୈନ୍ୟମାନଙ୍କୁ ବିମାନରେ ଶ୍ରୀନଗରରେ ପହଁଚାଇ ଦେଇଥିଲେ । ୧୯୬୨ରେ ଚୀନ୍ର ଆକ୍ରମଣ ବେଳେ ନେହେରୁଙ୍କ ନିର୍ଦ୍ଦେଶରେ ଗୋପନରେ ଆମେରିକା ଯାଇଥିଲେ । ୧୯୬୫ରେ ଭାରତ ପାକିସ୍ଥାନ ଯୁଦ୍ଧରେ ପ୍ରଧାନମନ୍ତ୍ରୀ ଲାଲ ବାହାଦୁର ଶାସ୍ତ୍ରୀ ତାଙ୍କୁ ଇଣ୍ଡୋନେସିଆ ପଠାଇଥିଲେ । ବିଜୁବାବୁଙ୍କ ପାଇଁ ଇଣ୍ଡୋନେସିଆ ପାକିସ୍ଥାନକୁ ଯୁଦ୍ଧ ବିମାନ ଯୋଗାଣ ବନ୍ଦ କରିଦେଇଥିଲେ । ଚୀନ୍ ଆକ୍ରମଣ ବେଳେ ନେହେରୁ ପ୍ରତିରକ୍ଷା ସମ୍ପର୍କରେ ବିଜୁବାବୁଙ୍କ ସହ ପରାମର୍ଶ କରୁଥିଲେ । ବୈମାନିକ ଭାବରେ ଏହି ପରାମର୍ଶ ପାରଦର୍ଶିତା ଏବଂ ସ୍ୱାଧୀନତା ସଂଗ୍ରାମରେ ବୈପ୍ଳବିକ ଭୂମିକା ତାଙ୍କର ପରବର୍ତ୍ତୀ ଜୀବନକୁ ନେପୋଲିୟନ

କରି ଗଢି ତୋଳିଥିଲା । ବିଜୁବାବୁଙ୍କ ଦୁଃସାହସିକ ପରାକ୍ରମର ଐତିହାସିକ ପ୍ରତୀକ ଡାକୋଟା ।

୧୯୪୬ରେ ବିଜୁବାବୁ ପ୍ରତ୍ୟେକ୍ଷ ରାଜନୀତିରେ ପ୍ରବେଶ କରିଥିଲେ । ସର୍ଦ୍ଦାର ପଟେଲଙ୍କ ପରାମର୍ଶକ୍ରମେ କଟକ ସହରରୁ ନିର୍ବାଚନ ଜିଣି ବିଧାୟକ ହୋଇଥିଲେ । ୧୯୫୨ ଓ ୧୯୫୭ରେ ଜଗନ୍ନାଥ ପ୍ରସାଦ ଓ ସୋରଡାରୁ ଜିତିଥିଲେ । ୧୯୬୧ରେ ରାଜ୍ୟ କଂଗ୍ରେସର ସଭାପତି ହୋଇଥିଲେ । ତାଙ୍କ ନେତୃତ୍ୱରେ ୧୪୦ ବିଧାୟକ ପ୍ରାର୍ଥୀରୁ ୮୨ଟିରେ ବିଜୟଲାଭ କରିଥିଲେ । ଚୌଦ୍ୱାରରୁ ନିର୍ବାଚିତ ହୋଇ ପ୍ରଥମ ଥର ପାଇଁ ଓଡିଶାର ମୁଖ୍ୟମନ୍ତ୍ରୀ ହୋଇଥିଲେ । କଂଗ୍ରେସକୁ ସତେଜ କରିବା ପାଇଁ ମୁଖ୍ୟମନ୍ତ୍ରୀ ପଦ ଛାଡି କାମରାଜ ଯୋଜନାରେ ଯୋଗ ଦେଇଥିଲେ । ୧୯୭୧ରେ କଂଗ୍ରେସ ଛାଡି ଉତ୍କଳ କଂଗ୍ରେସ ନାମରେ ଏକ ନୂତନ ଦଳ ଗଠନ କରିଥିଲେ ।

୧୯୭୧ରେ ତାଙ୍କ ଦଳ ଭଲ କରିଥିଲେ ହେଁ, ଜୟପ୍ରକାଶ ନାରାୟଣଙ୍କ ସହିତ ସମ୍ପର୍କ ସ୍ଥାପନ କରି ୧୯୭୪ରେ ଜୟପ୍ରକାଶ ଆନ୍ଦୋଳନରେ ଯୋଗଦେଇଥିଲେ । ୧୯୭୫ରେ ଜରୁରିକାଳୀନ ପରିସ୍ଥିତି ପାଇଁ ସେ ଗିରଫ ହୋଇଥିଲେ । ୧୯୭୭ରେ ଜେଲରୁ ମୁକୁଳି କେନ୍ଦ୍ରାପଡା ଲୋକସଭା ଆସନରୁ ଜିତିଥିଲେ ଓ ମୋରାରଜୀ ଦେଶାଇ ଓ ଚୌଧୁରୀ ଚରଣ ସିଂଙ୍କ ସରକାରରେ ଇସ୍ପାତ ଓ ଖଣି ମନ୍ତ୍ରୀ ହୋଇଥିଲେ । ୧୯୮୦ ଓ ୧୯୯୬ରେ ଲୋକସଭାକୁ ନିର୍ବାଚିତ ହୋଇଥିଲେ । ୧୯୯୦ରେ ଜନତା ଦଳରୁ ଜିତି ୧୯୯୫ ପର୍ଯ୍ୟନ୍ତ ମୁଖ୍ୟମନ୍ତ୍ରୀ ହୋଇଥିଲେ ।

ଡଃ ହରେକୃଷ୍ଣ ମହତାବଙ୍କର ସେ ଥିଲେ ଅତ୍ୟନ୍ତ ବିଶ୍ୱସ୍ତ । ତାଙ୍କ ମୁଖ୍ୟମନ୍ତ୍ରିତ୍ୱ କାଳରେ କଳିଙ୍ଗ ଟ୍ୟୁବସ୍, କଳିଙ୍ଗ ଆଇରନ୍, କଳିଙ୍ଗ ଟାଇଲସ୍, କଳିଙ୍ଗଏୟାର ଲାଇନ୍ସ,କଳିଙ୍ଗ ରିଫ୍ରାଜଟୋରିଜ୍ । ଓଡିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟ, ଆଂଚଳିକ ଶିକ୍ଷାନୁଷ୍ଠାନ, ଆଂଚଳିକ ଗବେଷଣା କେନ୍ଦ୍ର, ସୈନିକ ସ୍କୁଲ, ଏନ ଆଇଟି୍ ରାଉରକେଲା ସୁନାବେଢ଼ାରେ ମିଗ୍ ବିମାନ କାରଖାନା, ପାରାଦ୍ୱୀପ ବନ୍ଦର, ଓ.ଟି.ଏମ୍.ଚୌଦ୍ୱାର, ରାଉରକେଲା ଷ୍ଟିଲପ୍ଲାଣ୍ଟ,ତାଳଚେରରେ ଥର୍ମାଲ ପ୍ରକଳ୍ପ, ନାଲକୋ ପ୍ରକଳ୍ପ, ଦୈତାରୀ ଲୌହ ଇସ୍ପାତ କାରଖାନା, ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ, ସମ୍ବଲପୁର ବିଶ୍ୱବିଦ୍ୟାଳୟ, ବୁର୍ଲା ଇଂଜିନିୟରିଂ କଲେଜ ଓ ମେଡିକାଲ କଲେଜ,ବଡବିଲ ଲୁହାକାରଖାନା, ଓଡିଶା ରାଜ୍ୟ ବିଦ୍ୟୁତ ବୋର୍ଡ, ଓଡିଶା ଶିଳ୍ପ ବିକାଶ ନିଗମ, ଓଡିଶା କ୍ଷୁଦ୍ର ଶିଳ୍ପ ନିଗମ, ଗ୍ରାମାଞ୍ଚଳ ଶିଳ୍ପ ସଂସ୍ଥା, ପଲିଟେକନିକ୍ ବିଜ୍ଞାନ କଲେଜ ଓ ଇଂଜିନିଅରିଂ କଲେଜ ପ୍ରତିଷ୍ଠା, ପ୍ରାଥମିକ ବିଦ୍ୟାଳୟ ପାଠ୍ୟ ପୁସ୍ତକ ଜାତୀୟକରଣ, ନାରୀ ସଶକ୍ତିକରଣ, ମହିଳା ସଂରକ୍ଷଣ ଶ୍ରମିକ ମଜୁରି ବୋର୍ଡ, ବୃଦ୍ଧ, ବୃଦ୍ଧା, ବିଧବା ଓ ଅକ୍ଷମ ମାନଙ୍କୁ ଭତ୍ତା ପ୍ରଦାନ । ମହିଳା ବ୍ୟାଙ୍କ୍, ମହିଳା କମିଶନ, ମହିଳା ବିକାଶ ନିଗମ, ଦୁର୍ନୀତି ବିଲୋପ ପାଇଁ ସ୍ୱତନ୍ତ୍ର କୋର୍ଟ ପ୍ରତିଷ୍ଠା, ଅସାଧୁ ଅର୍ଜିତ ସମ୍ପତ୍ତି ଜବତ ପାଇଁ ଆଇନ ପ୍ରଣୟନ ପ୍ରଭୃତି ତାଙ୍କୁ ଯଶସ୍ୱୀ ବ୍ୟକ୍ତିତ୍ୱର ଅଧିକାରୀ ସାବ୍ୟସ୍ତ କରିଛି । ନୂଆଦିଲ୍ଲୀଠାରେ ଶେଷ ନିଃଶ୍ୱାସ ତ୍ୟାଗ କରିଥିଲେ ହେଁ ଓଡିଶା ମାଟି ଓ ଓଡିଆଜାତି ଯୁଗେ ଯୁଗେ ତାଙ୍କୁ ସ୍ମରଣ କରୁଥିବ ଏହା ନିଃସନ୍ଦେହ ।

ବିଶ୍ୱ ଇତିହାସର ଦୁଃସାହସ ଅଭିଯାନର ମହାନାୟକ ବିଜୁ ପଟ୍ଟନାୟକଙ୍କ କୃତିତ୍ୱ ହେଉଛି ଏକ ବିଶାଳ କିମ୍ବଦନ୍ତୀ । ତାଙ୍କ ଅସୀମ ସାହସ ଓ ବୀରତ୍ୱର କଥା ଗାଥାର ପରିଚୟ ସମଗ୍ର ମାନବ ଜାତିର ଇତିହାସ । ସିଏ ଥିଲେ କଳିଙ୍ଗ ଉତ୍କଳ- ଓଡିଶାର ମୁକୁଟ ବିହୀନ ସମ୍ରାଟ । ବୀର ଓଡିଆ ଜାତିର ଗର୍ବ, ଗରିମା ଓ ସ୍ୱାଭିମାନର ପ୍ରତୀକ ଏବଂ ବିଶ୍ୱର ଏକ ଯୁଗାନ୍ତକାରୀ କିମ୍ବଦନ୍ତୀ ପୁରୁଷ । ଭାରତବର୍ଷର ତ୍ରିସ୍ତରୀୟ ପଞ୍ଚାୟତିରାଜର ଜନକ, ଏକ ସୁମହାନ ରାଷ୍ଟ୍ରନୀତିଜ୍ଞ ଭାବେ ସୁପରିଚିତ ହେବାପରେ ସାରା ଦେଶ ବିଦେଶରେ ବିଭିନ୍ନ କ୍ଷେତ୍ରରେ ବିଭିନ୍ନ କାର୍ଯ୍ୟର ଉଲ୍ଲେଖନୀୟ ଅବଦାନ ପାଇଁ ତାଙ୍କୁ ଏକ ବହୁ ଚର୍ଚ୍ଚିତ ପ୍ରବାଦପୁରୁଷରେ

ପରିଣତ କରିଛି । ସ୍ୱାଧୀନତା ସଂଗ୍ରାମର ବହୁ ଗୁପ୍ତ ଅଭିଯାନ ଓ ଅନେକ ପ୍ରଶାସନିକ ଐତିହାସିକ ଅଭିଯାନ ଆଦି ତାଙ୍କ ସୁବିଶାଳ ବ୍ୟକ୍ତିତ୍ୱର ଗୋଟିଏ ଗୋଟିଏ ବିସ୍ମିତ ସ୍ମୃତିସ୍ତମ୍ଭ । ଯାହା ତାଙ୍କୁ ଯୁଗେ ଯୁଗେ ଇତିହାସ ପୃଷ୍ଠାରେ ଚିର ଜାଜ୍ୱଲ୍ୟମାନ କରିଛି । ତାଙ୍କର ଦେଶଭକ୍ତି, ଜୀବନ ଦର୍ଶନ ଓ ମାନବ ସମାଜ ପାଇଁ ଅନବଦ୍ୟ ଅବଦାନ ଏତେ ଯେ ରହସ୍ୟ ରୋମାଂଚକର, ମନୋଜ୍ଞ ତଥା ହୃଦୟସ୍ପର୍ଶୀ ସତରେ କାଳଜୟୀ ଉପନ୍ୟାସ ପରି ମନେହୁଏ । କୋଟି ଜନତାର କର୍ଣ୍ଣଧାର ବିଜୁବାବୁ ଏକାଧାରରେ ଜଣେ ଉଚ୍ଚକୋଟୀର ରାଜନୀତିଜ୍ଞ, ଦୂରଦ୍ରଷ୍ଟା, ରାଷ୍ଟ୍ରନାୟକ, କ୍ରାନ୍ତିଦର୍ଶୀ ବ୍ୟବସ୍ଥାପକ, ସୁଶାସନଗତ ସମାଜ ସଂସ୍କାରକ, ରାଜ୍ୟ ତଥା ଦେଶ ପ୍ରଗତିର ପଥ ପ୍ରଦର୍ଶକ ଓ ଅନନ୍ୟ ଅସାଧାରଣ ବ୍ୟକ୍ତିତ୍ୱ । ଆଧୁନିକ ଓଡିଶାର ଜନପ୍ରିୟ ଜନନେତା ବିଜୁବାବୁ ଶୈଶବରୁ ସବୁଜ ସ୍ୱପ୍ନ ନେଇ ସଂକଳ୍ପ ସ୍ମୃତିର ସୁରଭି ସୌଧ ନିର୍ମାଣ କରିଯାଇଛନ୍ତି । ପାରାଦୀପଠାରୁ ସୁନାବେଡା ଯାଏଁ ଯେତେ ଅଛି ଶିଳ୍ପାୟନ/ସବୁଠି ଦେଖିଲେ ମିଳିବ କେବଳ ତୁମରି ରୂପାୟନ ।

ବିଜୁବାବୁଙ୍କ ଭାଷାରେ ''ପଞ୍ଚାୟତିରାଜ ମୋ ସ୍ୱପ୍ନର ଭାରତବର୍ଷ'' । ସରପଞ୍ଚ ହେଉଛନ୍ତି ପଞ୍ଚାୟତିରାଜର ମୁଖ୍ୟମନ୍ତ୍ରୀ । ଗଣତନ୍ତ୍ରର ରାମରାଜ୍ୟ ପଞ୍ଚାୟତିରାଜ । ଗାଁଟିଏ ହେଉଛି ଲଘୁ ଭାରତ । ଯେଉଁଠି ଗଣତନ୍ତ୍ର ଆରମ୍ଭ ହୁଏ । ଗାଁ ଗଣ୍ଡା ହେଉଛି ଭାରତର ଆତ୍ମା ତା'ର ବିକାଶ ତ୍ରିସ୍ତରୀୟ ପଞ୍ଚାୟତିରାଜର ପ୍ରୟାସ । ଗଣତନ୍ତ୍ରକୁ ଅଧିକ ଦକ୍ଷ, ସକ୍ରିୟ ଓ ମଜଭୁତ୍ ଏବଂ କ୍ରିୟାଶୀଳ କରିବା ପାଇଁ ସ୍ୱତନ୍ତ୍ର ଆଇନ ପ୍ରଣୟନ କରି ସେ ନୂଆ ସ୍ୱପ୍ନ ଓ ସମ୍ଭାବନାର ଭାରତବର୍ଷ ନିର୍ମାଣ କରିଥିଲେ । ଓଡିଶା ହେଇଥିଲା ଏହାର ଏକ୍ସପେରିମେଣ୍ଟାଲ ଓ ପ୍ରୟୋଗଶାଳା, ତାଙ୍କ ଜନ୍ମଦିନ ମାର୍ଚ୍ଚ ୫ ତାରିଖକୁ ୧୯୯୨ରେ 'ପଞ୍ଚାୟତିରାଜ ଦିବସ' ଭାବରେ ପ୍ରତିବର୍ଷ ପାଳନ କରିବାକୁ ଘୋଷଣା କରିଥିଲେ । ଫଳରେ ରାଜନୀତିରେ ମହିଳାମାନେ ସ୍ୱତନ୍ତ୍ର ସୁବିଧା ସୁଯୋଗ ପାଇଲେ । କ୍ଷମତାର ବିକେନ୍ଦ୍ରିକରଣ ଯୋଗୁଁ ମଣିଷଟିଏ ସୁଶାସନର ସ୍ୱାଦ ପାଇବା ସଙ୍ଗେ ସଙ୍ଗେ ବୁଦ୍ଧିଜୀବୀଙ୍କ ବିଳାସ ସୌଧର ଅବସାନ ହେଲା । ଶାସନ ବ୍ୟବସ୍ଥାର ବିକେନ୍ଦ୍ରିକରଣ ପାଇଁ ଗ୍ରାମାଞ୍ଚଳରେ ନାରୀମାନଙ୍କର ସୃଜନ ଶୀଳତା ଓ ଶକ୍ତିକୁ ଉପଯୋଗ କରି ମିଶନ ଶକ୍ତି ସୃଷ୍ଟି ହେଲା । ବିଜୁବାବୁ ୧୯୬୧ ମସିହାରେ ଯେଉଁ ସ୍ୱପ୍ନ ଦେଖିଥିଲେ ୧୯୯୩ ମାର୍ଚ୍ଚ ୫ ତାରିଖରେ, ସେହି ତ୍ରିସ୍ତରୀୟ ଗଣତାନ୍ତ୍ରିକ ଶିଶୁଟି ୨୦୨୩ରେ ବଳିଷ୍ଠ ଯୁବକରେ ପରିଣତ ହୋଇଛି ।

ବିଜୁଙ୍କ ସ୍ୱପ୍ନ ଆଜି ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କ ସଂକଳ୍ପ ପାଲଟିଛି । ଭାରତୀୟ ସମ୍ବିଧାନର ୭୩ତମ ସଂଶୋଧନ ଆଇନ ଅନୁଯାୟୀ ଶାସନ ବ୍ୟବସ୍ଥାର ବିକେନ୍ଦ୍ରିକରଣ କରାଯାଇ ଗ୍ରାମାଂଚଳର ଯୋଜନା ଓ ବିକାଶ ଇତିହାସରେ ସ୍ୱତନ୍ତ୍ର ସୁବର୍ଣ୍ଣ ମାଇଲଖୁଣ୍ଟ ସୃଷ୍ଟି ହୋଇଛି । ଗ୍ରାମପଞ୍ଚାୟତ, ପଞ୍ଚାୟତ ସମିତି ଓ ଜିଲ୍ଲା ପରିଷଦ ବାସ୍ତବରେ ଗଣତନ୍ତ୍ରର ମାଷ୍ଟର ଚାବିକାଠି ପାଲଟିଛି ଏବଂ ତୃଣମୂଳ ସ୍ତରରେ ଗଣତନ୍ତ୍ରର ବାସ୍ତବ ରୂପାୟନ ସହ ଏକ ସ୍ୱଚ୍ଛ ଓ ଉତ୍ତରଦାୟୀ ସରକାର ଗଠନ ହୋଇଛି । ଯାହା ଜାତିର ଜନକ ମହାତ୍ମା ଗାନ୍ଧୀ ଚିନ୍ତା କରିଥିଲେ ।

ଗଣର ଗଜପତି ଓ ସମୟର ସ୍ଥପତି ବିଜୁବାବୁ ବୀର ଓଡିଆ ଜାତିକୁ ସବୁକ୍ଷେତ୍ରରେ ଆତ୍ମନିର୍ଭରଶୀଳ କରିବା ପାଇଁ ଓଡିଶାକୁ ଶିଳ୍ପ ସାମ୍ରାଜ୍ୟରେ ପରିଣତ କରିଥିଲେ । ଫଳରେ କୀର୍ତ୍ତି କୋଣାର୍କର କାରିଗର ଓଡିଆ ଶିଳ୍ପୀଙ୍କୁ କଳା ନୈପୁଣ୍ୟର ଯାଦୁକର ସୃଷ୍ଟି କରିପାରିଥିଲା । ଦିଲ୍ଲୀର ସ୍ୱପ୍ନ ଦେଖିଲା ପଲ୍ଲୀ । ତରୁଣ ଅରୁଣ ଆଭାରେ ମହକିତ ଓ ବିକଶିତ ହେଲା ଉତ୍କଳର ଆକାଶ ବତାସ । ବଦଳିଗଲା ଓଡିଶା ବିକାଶର ନୂତନ ପରିଭାଷା । ଆମ ଗାଁ ଆମ ବିକାଶ ପଞ୍ଚାୟତିରାଜର ଅଭିନବ ପ୍ରୟାସ । ଏକ ଉତ୍ତମ ସମ୍ବେଦନଶୀଳ ଲୋକଶାସନ ହିଁ ପଞ୍ଚାୟତିରାଜର ଅନୁଶାସନ । ସ୍ୱଚ୍ଛତା,

ଉତ୍ତରଦାୟିତ୍ୱ ବୋଧ ଓ ଜନସହଭାଗିତା ଏବଂ ସାମାଜିକ ସମୀକ୍ଷା ପଞ୍ଚାୟତିରାଜ ବ୍ୟବସ୍ଥାର ଚାରୋଟି ଗୁରୁତ୍ୱପୂର୍ଣ୍ଣ ସ୍ତମ୍ଭ । ତାଙ୍କର ସ୍ୱଳ୍ପକାଳୀନ ଶାସନ ଓଡିଶାର ମୁଖ୍ୟମନ୍ତ୍ରୀ ପଦବୀକୁ ନୂତନ ଦିଗନ୍ତର ଆହ୍ୱାନରେ ପ୍ରତିନିଧିତ୍ୱ ଓ ପ୍ରତିଧ୍ୱନିତ କରିଛି । ଅନେକ ରାଜନୈତିକ ଝଡର ସେ ସାମ୍ନା କରିଥିଲେ ହେଁ, ହାରିବା କଣ ଜାଣି ନ ଥିଲେ ।

ଏ ରତ୍ନଗର୍ଭା ମାଟି ମଧ୍ୟ ଗର୍ବ କରେ ତାର ସାମାଜିକ, ଅର୍ଥନୈତିକ, ରାଜନୈତିକ, ଶିକ୍ଷା, କ୍ରୀଡା ଓ ସ୍ୱାସ୍ଥ୍ୟ କ୍ଷେତ୍ରରେ ପାରଦର୍ଶିତା ହାସଲ କରି ବୀର ଓଡିଆ ଜାତିର ଯଶ ବାନା ବିଶ୍ୱ ଆକାଶ ବତାସରେ ଉଡାଇ ଗୌରବ, ଗରିମା ଆଣିଥିବା ବ୍ୟକ୍ତି ବିଜୁଙ୍କୁ ନେଇ । ଇତିହାସର ଆଇନାରେ ତାଙ୍କର ବିସ୍ମୟ ଜୀବନ କାହାଣୀକୁ ନେଇ ଓଡିଶା ଆଜି ଯାଏ ଜାତୀୟ ତଥା ଆର୍ନ୍ତଜାତୀୟ ସ୍ତରରେ ଅନେକ ସୁଖ୍ୟାତି ଅର୍ଜନ କରିପାରିଛି । ପଞ୍ଚାୟତିରାଜ ଇତିହାସରେ ତାଙ୍କ ପ୍ରୟୋଗାତ୍ମକ କୌଶଳର ଛାୟା ଯୁଗେ ଯୁଗେ କାୟା ବିସ୍ତାର କରୁଛି । ଶାସନ କ୍ଷେତ୍ରରେ ତାଙ୍କର ଅନନ୍ୟ କାର୍ଯ୍ୟଶୈଳୀରେ ବୌଦ୍ଧିକ ଜନସମାଜ ଏବେ ମଧ୍ୟ ବିସ୍ମୟାଭିଭୂତ ହୋଇଥାଆନ୍ତି । ଜୀବନ ପୃଷ୍ଠାରେ ଦିନ ସରିଗଲେ ତାର କାଳଜୟୀ ଗରିମା ଚିରକାଳ ସଜୀବ ହୋଇ ରହିଥାଏ । ବିଜୁ ବାବୁଙ୍କ ନାମ ହିଁ ଓଡିଶା ଇତିହାସ ପାଇଁ ଯଥେଷ୍ଟ । ସତରେ ''କୀର୍ତ୍ତିର ପତାକା ତଳେ ବିଶ୍ୱବାସୀ ଠୁଳ ନିଜ ହାତେ ଗଢିଗଲା, ସ୍ମୃତିର ସେ ଅକ୍ଷୟ ଦେଉଳ/ ବିଜୁ ବାବୁଙ୍କ ଜୀବନ ଘଟଣା ବହୁଳ । କେବେ ରୋମାଂଚକର ତ କେବେ ବିଶ୍ୱର ବିରଳ''। ଏଇ ସେଇ ଓଡିଶା ସମୃଦ୍ଧି ଓ ସ୍ୱାଭିମାନ ଯାର ଇତିହାସ, ଯାହାଙ୍କ ବ୍ୟକ୍ତିତ୍ୱ ଓ ନେତୃତ୍ୱ ସ୍ୱାଭିମାନୀ ସାହସୀ ଓଡିଆ ଜାତି ପାଇଁ ମହାଦ୍ରୁମର ମହାଛାଇ । ଯେଉଁଠି ଶିଳ୍ପ ଓ ଶିଳ୍ପୀ ଆତୁର ଅଧିରରେ ମଥା ପିଟୁଥିଲେ ବିଜୁ ସ୍ୱପ୍ନର ଓଡିଶା ମାଟିରେ, ଚାକିରି ଓ ରାଜନୀତି କ୍ଷେତ୍ରରେ ମହିଳାଙ୍କ ପାଇଁ ସ୍ଥାନ ସଂରକ୍ଷଣ ପ୍ରଭୃତି ଐକାନ୍ତିକ, ଐତିହାସିକ ଯୋଜନା ବିଜୁବାବୁଙ୍କୁ ଭିନ୍ନ ଏକ ବ୍ୟକ୍ତି କୋଣାର୍କ କରି ଗଢି ତୋଳିଛି । ବିଜୁବାବୁ ଉପଲବ୍ଧି କରିଥିଲେ ମାଆମାନେ ଗଢି ପାରିବେ ସ୍ୱାଭିମାନୀ ଓଡିଶା ଓ ସାହସୀ ବୀର ଓଡିଆ ଜାତି । ସେ ବୁଝିଥିଲେ ଯେ, ମହିଳାମାନେ ହିଁ ସୀତା,ସାବିତ୍ରୀ, ଝାନ୍ସି, ରାଣୀଲକ୍ଷ୍ମୀବାଈ ଓ ଦୁର୍ଗାବତୀ ଏବଂ ସୁନେଲି ଭବିଷ୍ୟତର ଦିଗ ବାରେଣୀ । ସେମାନଙ୍କ ଉନ୍ନତିରେ ଓଡିଶାର ପ୍ରଗତି । ମହିଳାମାନଙ୍କ ଆତ୍ମବିଶ୍ୱାସ ଓ ସାହସକୁ ସମୟର ସାହାଣୀ ବକ୍ଷରେ ଅଲିଭା ସ୍ୱାକ୍ଷରରେ ଲିପିବଦ୍ଧ କରିବା ପାଇଁ 'ମା'କୁ ସମ୍ମାନ, ଗାଁକୁ କାମ' ଓ ବୀର ଉତ୍କଳର କନ୍ୟାଶ୍ରୀ ନିବେଦିତା ଆଚାର୍ଯ୍ୟଙ୍କୁ ନୌଯାତ୍ରାରେ ବାଲିଦ୍ୱୀପ ପଠାଇଥିଲେ । ରାଜ୍ୟରେ ମହିଳା ସଶକ୍ତି କରଣର ସ୍ୱପ୍ନ ବିଜୁବାବୁ ସର୍ବପ୍ରଥମେ ଦେଖିଥିଲେ । ମାଆର ନାମ ସ୍କୁଲ ରେଜିଷ୍ଟର ଓ ମାଟ୍ରିକ ସାର୍ଟିଫିକେଟରେ ରଖିବା ପାଇଁ ବ୍ୟବସ୍ଥା ପ୍ରଚଳନ କରିଥିଲେ ।

ଆଜି ସେହି ସୁନେଲି ସ୍ୱପ୍ନକୁ ସାକାର କରିବା ଲକ୍ଷ୍ୟରେ ତାଙ୍କ ସୁପୁତ୍ର ଓଡିଶାର ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ବିଜୁଙ୍କ ବ୍ୟକ୍ତିତ୍ୱକୁ ନିଜର ନେତୃତ୍ୱର ପ୍ରତୀକ ଭାବରେ ଗ୍ରହଣ କରି ସମୃଦ୍ଧ ଓଡିଶା ଗଠନ ଦିଗରେ ତନୁ ମନ ଅର୍ପଣ କରିଛନ୍ତି । ଯାହାର ଯାଦୁକରୀ ପ୍ରଭାବରେ ଓଡିଶାର ଦାରିଦ୍ର୍ୟ କମିଛି । ଆର୍ଥିକ ସ୍ଥିତିରେ ଦ୍ରୁତ ଉନ୍ନତି ଆସିଛି । ସ୍ୱାଭିମାନ ବଢିଛି, ସାହିତ୍ୟ, ସଂସ୍କୃତି, ଐତିହ୍ୟ ପରମ୍ପରାରେ ଅଭିନବ ଜୁଆର ଉଠିଛି । ରାଜନୈତିକ ସଶକ୍ତି କରଣରେ ଓଡିଶା ଆଜି ଭାରତବର୍ଷରେ ଅଗ୍ରଣୀ ଭୂମିକା ଗ୍ରହଣ କରିଛି । 'ଫଳରେ ଓଡିଶାର ସାମାଜିକ, ଆର୍ଥିକ ଓ ରାଜନୈତିକ ପରିବର୍ତ୍ତନର ଜଳଗଙ୍ଗା ମାଟିରୁ ଆକାଶ ବହୁଛି । ଶକ୍ତି ହିଁ ପ୍ରେରଣା , ଶକ୍ତି ହିଁ ପୂଜା, ମିଶନ ଶକ୍ତିର ଆଜି ଉଡୁଛି ଧ୍ୱଜା । କୃଷି କ୍ଷେତ୍ରରେ ମଧ୍ୟ ମହିଳାଙ୍କ ପାଇଁ ସୁବର୍ଣ୍ଣ ସୁଯୋଗ ସୃଷ୍ଟି ହୋଇଛି । ରାଜ୍ୟ ପୋଲିସ ପ୍ରଶାସନରେ ମହିଳାଙ୍କ ନିଯୁକ୍ତି, ମହିଳା ଥାନା, ମହିଳା

ବ୍ୟାଙ୍କ, ଖାଦ୍ୟ ସୁରକ୍ଷା ଯୋଜନାରେ ମହିଳାଙ୍କ ନାମରେ ରେସନ କାର୍ଡ, ସରକାରୀ ଜମି ପଟ୍ଟାରେ ମହିଳାଙ୍କ ଗୁରୁତ୍ୱ ବୃଦ୍ଧି ପାଇଛି ।

ବିଜୁଙ୍କ ସ୍ୱପ୍ନ ନବୀନଙ୍କ ସଂକଳ୍ପ । ସ୍ୱାବଲମ୍ବି ସ୍ୱାଭିମାନୀ ସମୃଦ୍ଧ ସୁଖୀ ଓଡିଶା ଗଠନ ଦିଗରେ ଏକ ଐତିହାସିକ ଅଭିଯାନ । ଉଜୁଡି ଯାଇଥିବା ଚାଷ ଓ ସାହସ ଆଜି ଭିନ୍ନ ଏକ ଇତିହାସ ପାଲଟିଛି । ଓଡିଶାର ମାଟି, ପାଣି, ପବନ, ଆକାଶ ଓ ମଣିଷ ନବୀନଙ୍କ ପ୍ରଗତିରେ ପୁଞ୍ଜି ପାଲଟିଛି । ବିଜୁଙ୍କ ବ୍ୟକ୍ତିତ୍ୱ ଓ ନବୀନଙ୍କ ନେତୃତ୍ୱର ରଙ୍ଗୀନ ପ୍ରଭାବରେ ଓଡିଶାର ପ୍ରଗତି ମାନଚିତ୍ର ଆକର୍ଷଣର କେନ୍ଦ୍ରବିନ୍ଦୁ ପାଲଟିଛି । କ୍ରୀଡା କ୍ଷେତ୍ରରେ ସ୍ୱର୍ଣ୍ଣପ୍ରସୂ ଓଡିଶାର ସ୍ୱାଭିମାନର, ଐଶ୍ୱର୍ଯ୍ୟ ଗାଥା ଗଗନ ପବନ ମୁଖରିତ ହେଉଛି । ଓଡିଶା ରାଜନୀତି ଓ ଅର୍ଥନୀତିରେ ନୂତନ ସୂର୍ଯ୍ୟୋଦ୍ୱୟ ହୋଇଛି । ରାଜନୈତିକ ସ୍ଥିରତା ଓ ଦକ୍ଷ ନେତୃତ୍ୱ ରାଜ୍ୟ ପାଇଁ ଅନୁକୂଳ ହୋଇଛି । ଶିଳ୍ପ,କୃଷି ଓ ସ୍ୱାସ୍ଥ୍ୟସେବା କ୍ଷେତ୍ରରେ ଓଡିଶା ଭାରତବର୍ଷରେ ସର୍ବାଗ୍ରେ ରହିଛି । ସମାଜର ମୁଖ୍ୟସ୍ରୋତରେ ହରିଜନ ଓ ଗିରିଜନ ସାମିଲ ହେବା ପାଇଁ ମୋ ଜମି ମୋ ଘରଡିହ 'ଜାଗା ମିଶନ' ଯୋଜନା ଚାଲିଛି । ସେଦିନର ନବୀନ ଆଜି ପ୍ରବୀଣ ରାଜନୀତିଜ୍ଞ । ଓଡିଶାର ତୃଣମୂଳ ସ୍ତରରେ ପ୍ରଗତି ଆଣି ସେ ଭାରତର ଏକ ନମ୍ବର ମୁଖ୍ୟମନ୍ତ୍ରୀ ଭାବରେ ନିଜକୁ ପ୍ରତିଷ୍ଠା କରିପାରିଛନ୍ତି ।

ବିଭିନ୍ନ ଜନ କଲ୍ୟାଣକାରୀ ଯୋଜନା ଆଜି ଓଡିଶା ମାଟି ଓ ମଣିଷ ହୃଦୟ ସାଗର ବେଳାଭୂମିରେ ମୁଣ୍ଡ ପିଟୁଛି । ଓଡିଶାର, ଶ୍ରୀମନ୍ଦିର, କୋଣାର୍କ, ଲିଙ୍ଗରାଜ ମନ୍ଦିରର ନବକଳେବର ଓ ସୌନ୍ଦର୍ଯ୍ୟ କରଣ ଦୁଇଦୁଇ ଥର ବିଶ୍ୱ କପ୍ ହକି ମହାକୁମ୍ଭ ଆୟୋଜନ କରି ଓଡିଶା ଏକ ସଂସ୍କୃତି ସମ୍ପନ୍ନ ଓ ଐତିହାସିକ ବୀର ଓଡିଆ ଜାତିକୁ ସୁନେଲି ସ୍ୱପ୍ନ ଓ ସମ୍ଭାବନାରେ ଚିର ଅଧିର କରିଛି । ବିଜୁଙ୍କ ଅମ୍ଳାନ ସ୍ୱର ଓ ସୁବର୍ଣ୍ଣ ସ୍ୱାକ୍ଷରକୁ ଏ କ୍ଷୁଦ୍ର ପ୍ରବନ୍ଧରେ ଶ୍ରଦ୍ଧାଂଜଳି ବାଢୁଛି । ଆଜି କେବଳ ନୁହଁ, ଯେତେଦିନ ପର୍ଯ୍ୟନ୍ତ କଳିଙ୍ଗ ସାଗର କଲ୍ଲୋଳିତ ତରଙ୍ଗ ଜିହ୍ୱାରେ ସ୍ମିତ ହାସ୍ୟରେ ମୃଦୁମନ୍ଦ ହସୁଥିବ ସେତେଦିନ ପର୍ଯ୍ୟନ୍ତ ବିଜୁବାବୁଙ୍କ ଅଲିଭା ଅଭୁଲା ସ୍ମୃତି କୀର୍ତ୍ତି ସୁନା ବୋଇତର ସ୍ୱର୍ଣ୍ଣ ଶାମୁକା ସାଜି ମୁକ୍ତା ହୋଇ ଝରୁଥିବ ଓ ବିଚିତ୍ର ଚରିତ୍ରର ଚିତ୍ରଶାଳାରେ ସେ ଏକ ବୈଚିତ୍ର୍ୟମୟ ସୁଗନ୍ଧ ଯାହାର ସ୍ମୃତିର ସୁରଭି ରାଗର ମହ୍ଲାର ହୋଇ ଦିଗ ବିଦିଗ ପହଁରି ଚାଲିଥିବ ।

ସମ୍ପାଦକ, ଗୋପବନ୍ଧୁ ସାହିତ୍ୟ ସଂସଦ
ଚାନ୍ଦବାଲି, ଜି– ଭଦ୍ରକ



# ନାଗରିକ ସମାଜ ପାଇଁ ଏକାଦଶ ବ୍ରତ

ଡଃ. ଭଗବାନ ପ୍ରକାଶ

'ଇଣ୍ଡିଆ ଏଗେନେଷ୍ଟ କରପସନ୍' ବା 'ଭ୍ରଷ୍ଟାଚାର ବିରୋଧରେ ଭାରତ' ଆନ୍ଦୋଳନର ଗୁରୁ ଶିଷ୍ୟ ଆନ୍ନା ହଜାରେ ଓ ଅରବିନ୍ଦ କେଜରିୱାଲ୍ ପରସ୍ପରଠାରୁ ଅଲଗା ହୋଇଗଲା ପରେ ଏବେ ନାଗରିକ ସମାଜ ଓ ନିର୍ବାଚନ ରାଜନୀତି ସମ୍ପର୍କରେ ଦେଶରେ ପୁଣିଥରେ ଆଲୋଚନା ଆରମ୍ଭ ହୋଇଛି । ଏ ଉଭୟଙ୍କର ଲକ୍ଷ୍ୟର ଲକ୍ଷ୍ମଣ ରେଖା କେଉଁଠି ଆରମ୍ଭ ଓ କେଉଁଠି ଶେଷ କାହାକୁ ଜଣା ନାହିଁ । ନାଗରିକମାନଙ୍କୁ ନେଇ ନାଗରିକ ସମାଜ ଏବଂ ସେଇମାନଙ୍କୁ ନେଇ ନିର୍ବାଚନ ରାଜନୀତି । ଅଠର ବର୍ଷରୁ ଊର୍ଦ୍ଧ୍ୱ ପ୍ରତ୍ୟେକ ନାଗରିକଙ୍କର ଭୋଟ ଅଧିକାର ରହିଛି । ନିର୍ବାଚନ ଏକ ରାଜନୈତିକ ପ୍ରକ୍ରିୟା ଓ ରାଜନୈତିକ ଦଳ ବିନା ଗଣତନ୍ତ୍ର ଅସମ୍ପୂର୍ଣ୍ଣ । ତେଣୁ ଆନ୍ନା ଓ ଅରବିନ୍ଦ ଉଭୟ ଏହି ପ୍ରକ୍ରିୟାର ଅଙ୍ଗ । ଭାରତର ରାଷ୍ଟ୍ରପତି ବି ଭୋଟ୍ ଦିଅନ୍ତି । ସେ ଦେଶର ପ୍ରଥମ ନାଗରିକ । ଆନ୍ନା ଓ ଅରବିନ୍ଦ ସେହିପରି ଭୋଟର ବା ମତଦାତା । ତେଣୁ ଭୋଟ ଦେବା ଓ ନିର୍ବାଚନ ଲଢିବା କେତେ ସାମାଜିକ ଓ କେତେ ରାଜନୀତିକ କହିବା ସହଜ ନୁହେଁ । ଗାନ୍ଧୀ, ଜୟପ୍ରକାଶ, ବିନୋବା ସାମାଜିକ, ମାନବିକ ଓ ରାଜନୈତିକ ଅଧିକାର ପାଇଁ ଆନ୍ଦୋଳନ କରୁଥିଲେ କିନ୍ତୁ ନିର୍ବାଚନ ଲଢୁନଥିଲେ । ଆମ୍ବେଦକର, ଲୋହିଆ, ମୌଲାନା ଆଜାଦ ରାଜନୀତିରେ ପ୍ରବେଶ କରି ସାମାଜିକ ପରିବର୍ତ୍ତନ ଆଣିବାକୁ ଚାହୁଁଥିଲେ । ଜୟପ୍ରକାଶ ସମ୍ପୂର୍ଣ୍ଣ କ୍ରାନ୍ତି ଆନ୍ଦୋଳନ ବେଳେ ପରସ୍ପର ଆଦର୍ଶ ବିରୋଧୀ ରାଜନୈତିକ ଦଳମାନଙ୍କୁ ଏକାଠି କରି ନିର୍ବାଚନ ଜରିଆରେ ସରକାର ପରିବର୍ତ୍ତନ କରି ଦେଇଥିଲେ ଏବଂ ସେ କହୁଥିଲେ ଲୋକନୀତି ଦ୍ୱାରା ରାଜନୀତିରେ ଗୁଣାତ୍ମକ ପରିବର୍ତ୍ତନ ଆଣି ହେବ । ଲୋକଶକ୍ତି ଓ ରାଜଶକ୍ତି ଏକାଠି ମିଳିମିଶି କାମ କଲେ ଲୋକ କଲ୍ୟାଣ ସହଜ ହେବ । ତେଣୁ ଅରବିନ୍ଦଙ୍କ ପାଇଁ ଆନ୍ନା ଯେତିକି ଦରକାର, ଆନ୍ନାଙ୍କ ପାଇଁ ଅରବିନ୍ଦଙ୍କ ଭଳି ବ୍ୟକ୍ତି ସେତିକି ଦରକାର । ଆଜି ବି ବିଭିନ୍ନ ରାଜନୈତିକ ଦଳରେ ଏପରି ବ୍ୟକ୍ତି ଅଛନ୍ତି । ଦର୍ଦ୍ଦୁର ରବ ଶୁଣି ନିରବ ପିକ-ଭଳି, ଏମାନଙ୍କ ସ୍ୱର ଆଉ ଶୁଭୁନାହିଁ ବା ବନ୍ଦ ହୋଇ ଯାଇଛି ।

ଯେକୌଣସି ଦଳ ବା ଅନୁଷ୍ଠାନ ଗଢିବା ବେଳେ ତା' ପାଇଁ ଏକ ଆଚାର ସଂହିତା ପ୍ରସ୍ତୁତ କରାଯାଏ । ଗାନ୍ଧୀ ତାଙ୍କ ଆଶ୍ରମବାସୀ ଓ ଗାନ୍ଧୀଆନ୍‌ଙ୍କ ପାଇଁ ଏଗାରଟି ଆଚରଣ ବା ଏକାଦଶ ବ୍ରତ ବ୍ୟବସ୍ଥା ରଖିଥିଲେ । ସେଗୁଡ଼ିକ ହେଲା ଅହିଂସା, ସତ୍ୟ, ଅସ୍ତେୟ (ଚୋରି ନ କରିବା), ବ୍ରହ୍ମଚର୍ଯ୍ୟ (ପବିତ୍ର ସଂଯତ ଯୌନ ଜୀବନ), ଅସଂଗ୍ରହ (ଲୋଭ ଶୂନ୍ୟତା) ଶରୀର ଶ୍ରମ, ଅସ୍ୱାଦ (ଜିହ୍ୱା ଲାଳସା ନିୟନ୍ତ୍ରଣ), ସର୍ବତ୍ର ଭୟ ବର୍ଜନ, ସର୍ବଧର୍ମ ସମାନତ୍ୱ, ସ୍ୱଦେଶୀ ଏବଂ ସ୍ପର୍ଶ ଭାବନା (ଅସ୍ପୃଶ୍ୟତା ନିବାରଣ) ।

ସେମିତି ନାଗରିକ ସମାଜ କେଉଁ ବାଟରେ ଯିବ ଓ କିପରି ଚାଲିବ ସେଥିପାଇଁ ଆଦର୍ଶ ଆଚାର ସଂହିତା ଓ ସହମତି ରହିଛି । ଏହି ସହମତି ଅନୁସାରେ ସରକାର,

ବଜାର ଓ ପରିବାରକୁ ନାଗରିକ ସମାଜର ସୀମା ବାହାରେ ରଖାଯାଇଛି । କାରଣ ସରକାରକୁ ନିୟନ୍ତ୍ରଣ କରୁଥିବା ଶାସକ ଦଳ ନିଜ ହାତରେ ଅଧିକାର ଓ କ୍ଷମତା ରଖିଥାନ୍ତି । ବଜାର ନିୟନ୍ତ୍ରଣ କରିଥାନ୍ତି ବ୍ୟବସାୟୀମାନେ । ପରିବାର ନିଜ ସ୍ୱାର୍ଥ ପାଇଁ ବ୍ୟସ୍ତ ଥାଏ । ଦେଶ ଓ ସମାଜ କଲ୍ୟାଣ ପାଇଁ ଏମାନଙ୍କର ସମୟ ନଥାଏ । ଏହି କାରଣରୁ ରାଜନୈତିକ ଦଳମାନେ ନାଗରିକ ସମାଜର ଅଂଶ ହୋଇଥିବା ବେଳେ ସକ୍ରିୟ ରାଜନେତା ଓ ଶାସକ ଦଳକୁ ଏଥିରୁ ବାଦ୍ ଦିଆଯାଇଥାଏ । କେବଳ ଯେଉଁ ବ୍ୟକ୍ତି ଓ ଅନୁଷ୍ଠାନ, ରାଷ୍ଟ୍ରର ନିୟନ୍ତ୍ରଣ ବାହାରେ ଥାଆନ୍ତି ସେଇମାନଙ୍କୁ ନାଗରିକ ସମାଜର ଅଙ୍ଗ ବୋଲି କୁହାଯାଇ ପାରିବ । ଏମାନେ ରାଜନୈତିକ ଦଳ ସହ ସମ୍ପର୍କ ରଖି ପାରିବେ କିନ୍ତୁ ସ୍ୱତନ୍ତ୍ର ରହିବେ ।

ଏପରି ସ୍ୱାଧୀନ ନାଗରିକ ସମାଜର ପ୍ରଥମ ବ୍ରତ ହେଲା ଦେଶର ଆଇନ, କାନୁନକୁ ସମ୍ମାନ କରିବା ଏବଂ ଯେଉଁ ଆଇନ ନ୍ୟାୟସଂଗତ ନୁହେଁ ତାକୁ ସଂଶୋଧନ କରିବା ପାଇଁ ଉଦ୍ୟମ କରିବା । ମଣିପୁରରେ ଇରମ୍ ଚାନୁ ଶର୍ମିଳା ଏବେ ତେର ବର୍ଷ ହେଲା ଆର୍ମିଡ୍ ଫୋର୍ସ ଆକ୍ଟ ବିରୋଧରେ ଅନଶନ କରି ଆସୁଛନ୍ତି । ଆମ ସମ୍ବିଧାନ ୧୧୭ ଥର ସଂଶୋଧନ ହେଲାଣି । ଏସବୁ ସଂଶୋଧନ ପଛରେ ନାଗରିକ ସମାଜର ଉଦ୍ୟମ ରହିଛି ।

ଦ୍ୱିତୀୟ ବ୍ରତ ହେଲା ନାଗରିକ ସମାଜ ସର୍ବଦା ରାଷ୍ଟ୍ରର ଅର୍ଥବଳ, ବାହୁବଳ ଓ କ୍ଷମତା ବଳ ଆଦିର ଅପପ୍ରୟୋଗ ନିୟନ୍ତ୍ରଣ ପାଇଁ କାମ କରିବେ । ସିଭିଲ୍ ସୋସାଇଟିର ଅନ୍ୟନାମ 'ସଭ୍ୟ ସମାଜ' । ତେଣୁ ଏମାନେ ଅସଭ୍ୟ ଉପାୟରେ ନିଜର ମତାମତ ବ୍ୟକ୍ତ କରିବେ ନାହିଁ ଓ ପ୍ରତ୍ୟେକ ବ୍ୟକ୍ତିଙ୍କ ଅଧିକାର ଓ ଅଭିମତକୁ ସମ୍ମାନ ଦେବେ ।

ତୃତୀୟ ବ୍ରତ ହେଲା ନାଗରିକ ସମାଜର ସଭ୍ୟମାନେ ନିଜେ ଦୁର୍ନୀତଗ୍ରସ୍ତ ହେବେ ନାହିଁ ଏବଂ ସରକାରୀ କର୍ମଚାରୀ ତଥା ଶାସକ ବର୍ଗଙ୍କର ଦୁର୍ନୀତିକୁ ଜନସାଧାରଣଙ୍କ ଗୋଚରକୁ ଆଣିବେ । ସୂଚନା ଅଧିକାରକୁ ନଷ୍ଟାପର ଭାବେ ବ୍ୟବହାର କରି ସାଧାରଣ ଜନତାଙ୍କ ସ୍ୱାର୍ଥ ରକ୍ଷା ପାଇଁ କାମ କରିବେ । ଶାସନ ସଂସ୍କାର ଓ ସୁଶାସନ ପାଇଁ ସରକାର ରାଜନୈତିକ ଦଳ ଓ ବିଧାନସଭା ତଥା ଲୋକସଭା ସଦସ୍ୟଙ୍କୁ ପ୍ରଭାବିତ କରିବେ ଓ ଚାପ ସୃଷ୍ଟି କରିବେ ।

ଚତୁର୍ଥ ବ୍ରତ ହେଲା ଗଣତନ୍ତ୍ର ଓ ନିର୍ବାଚନ ଭଳି ରାଜନୈତିକ ପ୍ରକ୍ରିୟାରେ ସଚେତନ ଓ ସକ୍ରିୟ ଅଂଶଗ୍ରହଣ ପାଇଁ ନାଗରିକଙ୍କୁ ଉତ୍ସାହିତ କରିବା । ଆମ ଦେଶରେ ଶତକଡ଼ା ଚାଳିଶ ଭାଗ ନାଗରିକ ଭୋଟ ଦିଅନ୍ତି ନାହିଁ । ଏହାଦ୍ୱାରା ଜନମତର ଶକ୍ତି ଦୁର୍ବଳ ହୋଇଯାଏ । ସାମାଜିକ ନ୍ୟାୟ ଓ ଅର୍ଥନୈତିକ ସମସ୍ୟାଗୁଡ଼ିକ ଠିକ୍ ଭାବରେ ବିଧାନସଭା ଓ ସଂସଦରେ ଉପସ୍ଥାପିତ କରାଯାଇପାରେ ନାହିଁ । ଅଯୋଗ୍ୟ ଓ ଦୁର୍ନୀତିଗ୍ରସ୍ତ ବ୍ୟକ୍ତିମାନେ ନିର୍ବାଚନ ଜିତିବାର ସମ୍ଭାବନା ବଢେ । ଅଠର ବର୍ଷରୁ ଅଧିକ ପ୍ରତ୍ୟେକ ନାଗରିକ ଜଣେ ଜଣେ ମତଦାତା । ମତଦାନ ଅଧିକାର ପ୍ରୟୋଗ ନ କଲେ ଅନ୍ୟ ସବୁ ଅଧିକାର ଅସୁରକ୍ଷିତ ହୋଇଯାଏ ।

ପଞ୍ଚମ ବ୍ରତ ହେଲା ଗଣତନ୍ତ୍ର ଓ ବ୍ୟକ୍ତି ସ୍ୱାଧୀନତା ପ୍ରତି ସମ୍ମାନ । ସମାଜର ବିଭିନ୍ନ ଗୋଷ୍ଠୀ, ସଂପ୍ରଦାୟ ଓ ସେମାନଙ୍କର ବିଚାରଧାରା ପ୍ରତି ଉଦାରତା ଓ ବୁଝାମଣା ଭାବ । ଏହା ସହ ନାଗରିକ ଅନୁଷ୍ଠାନ ଭିତରେ ''ଇନର ଡ଼େମୋକ୍ରାସି'' ବା ଅନ୍ତର୍ଗଣତନ୍ତ୍ର । ଯେଉଁ ଅନୁଷ୍ଠାନଗୁଡ଼ିକ ନିଜ କାର୍ଯ୍ୟ ପ୍ରଣାଳୀରେ ଗାଣତାନ୍ତ୍ରିକ ମୂଲ୍ୟବୋଧକୁ ଅନୁସରଣ କରନ୍ତି ନାହିଁ, ସେମାନେ ସରକାରଙ୍କୁ ସମାଲୋଚନା କରିବାର ନୈତିକ ଅଧିକାର ହରାଇ ବସନ୍ତି ।

ଷଷ୍ଠବ୍ରତ ହେଲା ମାନବ ଅଧିକାର ପାଇଁ କାମ କରିବା । ମାନବ ଅଧିକାର ସୁରକ୍ଷିତ ହେଲେ, ଗଣତନ୍ତ୍ର ସୁରକ୍ଷିତ ରହିବ । ପୃଥିବୀରେ ଏପର୍ଯ୍ୟନ୍ତ ଯେତେ ସ୍ୱାଧୀନତା ଆନ୍ଦୋଳନ ହୋଇଛି ମାନବ ଅଧିକାର ସୁରକ୍ଷା ତାର ମୂଳମନ୍ତ୍ର । ମାର୍କସ୍, ଗାନ୍ଧୀ, ଆବ୍ରାହାମ୍ ଲିଙ୍କନ୍, ମାର୍ଟିନ୍ ଲୁଥର କିଙ୍ଗ୍, ନେଲ୍ସନ୍ ମାଣ୍ଡେଲାଙ୍କଠାରୁ ଆରମ୍ଭ କରି ମାମଲା ୟୁସଫ୍‌ଜାଇଙ୍କ ପର୍ଯ୍ୟନ୍ତ ବ୍ୟକ୍ତି ସ୍ୱାଧୀନତା ଓ ଆତ୍ମସମ୍ମାନ ପ୍ରେରଣାର ସ୍ରୋତ ହୋଇ ଆସିଛି ।

ସମାଜ, ସରକାର, ବଜାର ଓ ପରିବାର ଏ ସବୁକୁ ଚଳାନ୍ତି ବ୍ୟକ୍ତି । କିନ୍ତୁ ଏସବୁ ବ୍ୟକ୍ତି କୈନ୍ଦ୍ରିକ ହୋଇଗଲେ ନାଗରକ ଅଧିକାର ବିପର୍ଯ୍ୟସ୍ତ ହୁଏ ।

ନାଗରିକ ସମାଜର ଅଙ୍ଗ ପ୍ରତ୍ୟଙ୍ଗ ହେଲେ ମହିଳା, କୃଷକ, ଭୂମିହୀନ, ଶ୍ରମିକ, ଟ୍ରେଡ୍, ୟୁନିଅନ୍, ଯୁବ ଛାତ୍ର ସଂଗଠନ, ବୁଦ୍ଧିଜୀବୀ ଓ ବୁଦ୍ଧିବାଦୀ, ସ୍ୱେଚ୍ଛାସେବୀ ଇତ୍ୟାଦି ଅନୁଷ୍ଠାନ । ଏମାନଙ୍କୁ ଇଂରେଜୀରେ କୁହାଯାଏ 'ଇଣ୍ଟରେଷ୍ଟ ଗ୍ରୁପ୍', ଲବି ଓ ପ୍ରେସର୍ ଗ୍ରପ୍ । ଏହାଛଡ଼ା, ଜାତି, ଧର୍ମ, ସମ୍ପ୍ରଦାୟ, ଭାଷା ଏବଂ ଅଞ୍ଚଳର ସ୍ୱାର୍ଥରକ୍ଷା ପାଇଁ କାମ କରୁଥିବା ଅନୁଷ୍ଠାନଗୁଡିକୁ ସମାଜର ମୁଖ୍ୟ ସ୍ରୋତ ଓ ସମୂହ ସ୍ୱାର୍ଥ ସହ ସାମିଲ କରିବା ନାଗରିକ ସମାଜର ଲକ୍ଷ୍ୟ ହେବା ଉଚିତ୍ । ଏହା ହେଉଛି ସପ୍ତମ ବ୍ରତ ।

ଅଷ୍ଟମ ବ୍ରତ: ନାଗରିକ ସମାଜ ଭବିଷ୍ୟତର ସାମାଜିକ ଓ ରାଜନୈତିକ ନେତାମାନଙ୍କର ପ୍ରାଇମେରି ସ୍କୁଲ ଓ ତାଲିମ କେନ୍ଦ୍ର ହେବା ଆବଶ୍ୟକ । ସାବରମତୀ, ସେବାଗ୍ରାମ, ପୌନାର ଆଶ୍ରମ ଦେଶର ବହୁ ନେତାଙ୍କୁ ତାଲିମ ଦେଇଥିଲେ । ନାଗରିକ ସମାଜର ବିଚାରଧାରା ଓ କାର୍ଯ୍ୟ ପ୍ରଣାଳୀରେ ତାଲିମପ୍ରାପ୍ତ ବ୍ୟକ୍ତିମାନେ ଜନପ୍ରିୟ ନେତା ହେବାର ସମ୍ଭାବନା ଅଧିକ । ସେହି ଦୃଷ୍ଟିରୁ ନାଗରିକ ସମାଜ ଏକ ନର୍ସ୍ରି, ବିଶେଷ କରି ମହିଳାଙ୍କ ପାଇଁ ।

ନବମ ବ୍ରତ ହେଲା ଦେଶର ବିକାଶ ପାଇଁ ଯେଉଁ ପଲିସି ବା ନୀତି ଓ ରଣନୀତି ତିଆରି ହୁଏ ସେଥିରେ ନାଗରିକ ସମାଜର ପ୍ରମୁଖ ଭୂମିକା ରହିଛି । ତେଣୁ ଜନକଲ୍ୟାଣ, ଦେଶ କଲ୍ୟାଣ ଓ ବିଶ୍ୱ କଲ୍ୟାଣ ପାଇଁ ଯେଉଁ ନୀତି ସବୁ ପ୍ରଣୟନ ହୁଏ, ଅନୁମୋଦନ ପୂର୍ବରୁ ନାଗରିକ ସମାଜ ଓ ଅନୁଷ୍ଠାନ, ସେଗୁଡ଼ିକୁ ପରୀକ୍ଷା ନିରୀକ୍ଷା, ଗବେଷଣା କରି ସରକାରଙ୍କ ସାମ୍ନାରେ ରଖିବା ଏକ କର୍ତ୍ତବ୍ୟ । ଇଂରେଜୀରେ କହନ୍ତି ପଲିସି ରିସର୍ଚ୍ଚ, ପଲିସି ଆନାଲିସିସ୍, ପଲିସି ସପୋର୍ଟ୍ । ପବ୍ଲିକ୍ ପଲିସି ପ୍ରଣୟନରେ ଅଂଶଗ୍ରହଣ ନ କଲେ ନାଗରିକ ସମାଜ ଗୁରୁତ୍ୱ ହରାଏ ।

ଦଶମ ବ୍ରତ: ଆମ ସମାଜରେ ବିଭିନ୍ନ କାରଣରୁ କଳି, ତକରାଳ, ବିବାଦ, ବିଦ୍ୱେଷ ଲାଗି ରହିଥାଏ । ଗରିବ ଦେଶମାନଙ୍କରେ ଏ ସମସ୍ୟା ବେଶି । ଭାରତ ଭଳି ଦେଶରେ ବହୁଧର୍ମ, ସଂପ୍ରଦାୟ, ଭାଷାଭାଷୀ ଲୋକେ ରହନ୍ତି । ସେମାନଙ୍କ ମଧ୍ୟରେ ବୁଝାମଣା ଓ ଶାନ୍ତିପୂର୍ଣ୍ଣ ସହାବସ୍ଥାନ ପାଇଁ କାମ କରିବା ନାଗରିକ ସମାଜ ଓ ଅନୁଷ୍ଠାନମାନଙ୍କର ଏକ ପ୍ରଧାନ ଦାୟିତ୍ୱ । ତେଣୁ ଅନେକ ଦେଶରେ 'ପିସ୍ ରିସର୍ଚ୍ଚ' ସେଣ୍ଟର ଓ ବିବାଦ ସମାଧାନ କେନ୍ଦ୍ର ନାଗରିକ ସମାଜ ତତ୍ତ୍ୱାବଧାନରେ ପ୍ରତିଷ୍ଠା କରାଯାଇଛି । ନାଗରିକ ସମାଜର ଆଉ ଏକ ଅଙ୍ଗ ବିଶ୍ୱବିଦ୍ୟାଳୟ ଏ ଦିଗରେ ଅଧିକ କାମ କରିପାରିବେ ।

ଏକାଦଶ ବ୍ରତ: ଏକ ନିରପେକ୍ଷ, ମୁକ୍ତ, ସ୍ୱଚ୍ଛ ଓ ଭୟଶୂନ୍ୟ ନିର୍ବାଚନ ପାଇଁ ଜନମତ ସୃଷ୍ଟି କରିବା ଓ ନିର୍ବାଚନ ପ୍ରକ୍ରିୟା ଉରେ ତୀକ୍ଷ୍ଣ ଦୃଷ୍ଟି ରଖିବା, ଆଦର୍ଶ ଆଚାର ସଂହିତା ଲଙ୍ଘନ କରୁଥିବା ପ୍ରାର୍ଥୀ ଦଳ ଓ ସରକାରୀ କଳର କ୍ରିୟାକଳାପକୁ ଗଣମାଧ୍ୟମ ଓ ଅନ୍ୟାନ୍ୟ ଫୋରମ୍ ଜରିଆରେ ପଦାକୁ ଆଣିବା ମଧ୍ୟ ନାଗରିକ ସମାଜର ରାଷ୍ଟ୍ରୀୟ ଦାୟିତ୍ୱ ।

ସର୍ବୋପରି ନାଗରିକ ସମାଜ ସଦାବେଳେ ଦଳଗତ ଓ କ୍ଷମତା ରାଜନୀତିରୁ ଊର୍ଦ୍ଧ୍ୱରେ ରହିବେ, ସରକାର ଓ ବଜାରଠାରୁ ସମ୍ମାନଜନକ ଦୂରତ୍ୱ ରଖିବେ । ବିଧାନସଭା ଓ ଲୋକସଭାରେ ଶାସକ ଓ ବିରୋଧୀ ଦଳଥାନ୍ତି । ମନେ ରଖିବାକୁ ହେବ ଯେ ନାଗରିକ ସମାଜ ବିରୋଧୀ ଦଳର ବିକଳ୍ପ ନୁହେଁ ଏବଂ ସରକାରକୁ ସବୁବେଳେ ସବୁ କଥାରେ ବିରୋଧ କରିବା ଏହାର କାମ ବା ଧର୍ମ ନୁହେଁ । ସରକାର ବାଟବଣା ହେଲେ, ଅହିଂସା ପନ୍ଥାରେ ତାଙ୍କୁ ଠିକ୍ ବାଟକୁ ଆଣିବା ଓ ଭଲ କାମରେ ସମର୍ଥନ କରିବା ନାଗରିକ ସମାଜର ଦାୟିତ୍ୱ । ସେହିପରି ବିରୋଧୀ ଦଳ ମଧ୍ୟ ସଦାବେଳେ ଖାଣ୍ଟି ସୁନା ନୁହନ୍ତି । ତେଣୁ ଏହାର ଦୋଷ ତ୍ରୁଟି ଦର୍ଶାଇବା ମଧ୍ୟ ଏକ ସ୍ୱାଧୀନ ନାଗରିକ ସମାଜର କର୍ତ୍ତବ୍ୟ ।



# ଓଡ଼ିଶାର ଜୁଆଙ୍ଗ ଜନଜାତିଙ୍କ ଲୋକକଳା

ଇନ୍ଦ୍ରମଣି ତ୍ରିପାଠୀ

'ଜୁଆଙ୍ଗ' ବିଷୟରେ କିଛି ଜାଣିବାର ଜିଜ୍ଞାସା ଆସିଲେ ମନେପଡ଼େ ପ୍ରଫେସର ନିର୍ମଳ କୁମାର ବୋଷଙ୍କ ସେହି କେତୋଟି ବାକ୍ୟ । ତାଙ୍କ ଭାଷାରେ 'ମୋର ମନେପଡେ ଏକ ଜହ୍ନ ରାତିରେ, ଯେତେବେଳେ ଆକାଶ ଆଲୁଅରେ ଭରି ଥିଲା ସେମାନେ ନାଚୁଥିଲେ ଦିନ ଲାଗିବା ପର୍ଯ୍ୟନ୍ତ ଏବଂ ଜଣେ ପରେ ଜଣେ ମଜାଙ୍ଗ ପାଖ ଆଖଡ଼ା ଛାଡି ଯାଉଥିଲେ ନିଜର ନିତ୍ୟ ନୈମିତ୍ତିକ କାର୍ଯ୍ୟ ସଂପାଦନ ପାଇଁ ।



ସକାଳେ ମୁଁ ଜଣକୁ ପ୍ରଶ୍ନ କଲି, ତୁମେ ରାତିସାରା ଅନିଦ୍ରା ରହି କିପରି ନାଚ ଓ ଗୀତରେ ସାରାରାତିକୁ କଟାଇ ଦେଉଛ । ଜଣେ ବରିଷ୍ଠ ଜୁଆଙ୍ଗ ନୃତ୍ୟାଙ୍ଗନା ଉତ୍ତର ଦେଇଥିଲେ 'ଅଜସ୍ର ଦୁଃଖରେ ଭରା ଆମର ସାରାଦିନ ଆମେ ପୁଣି କାହିଁକି ଦୁଃଖକୁ ଆମନ୍ତ୍ରଣ କରି ରାତିଟାକୁ ନଷ୍ଟ କରିବୁ' ।

ଜୁଆଙ୍ଗର ଏହି ଅର୍ଥପୂର୍ଣ୍ଣ ଅଭିବ୍ୟକ୍ତି ଯଥାର୍ଥରେ ମହତ୍ୱ ରଖେ ଏକ ସରଳ ଓ ନିରାଡମ୍ବର ଅଥଚ ସାଂସ୍କୃତିକ ଆଭିଜାତ୍ୟଭରା ସମାଜର ମର୍ମାର୍ଥ । ବହୁ ଉଦ୍ଦେଶ୍ୟ ଓ ଅର୍ଥଭରା ଜୁଆଙ୍ଗ ସାଂସ୍କୃତିକ ଜଗତକୁ ନ ଦେଖିଲେ ଉକ୍ତିର ମହତ୍ୱ ବୁଝା ପଡ଼େନାହିଁ ।

ଜୁଆଙ୍ଗ କେବଳ ଓଡ଼ିଶାରେ ବସବାସ କରୁଥିବା ଏକ ପ୍ରାଚୀନ ଜନଜାତି ସମ୍ପ୍ରଦାୟ ଅଟନ୍ତି । ୨୦୧୧ ଜନଗଣନା ଅନୁସାରେ ଏମାନଙ୍କ ଜନସଂଖ୍ୟା ୪୭୦୯୫ । ସରକାରଙ୍କ ଦ୍ୱାରା ସ୍ଥାପିତ ଜୁଆଙ୍ଗ ଉନ୍ନୟନ ସଂସ୍ଥା ୮୫୯୨ ଜନସଂଖ୍ୟାକୁ ନେଇ ଗଠିତ । ସେମାନେ ଜୁଆଙ୍ଗ ପୀଢ଼ର ଆଦି ମଣିଷ ହିସାବରେ ନିଜକୁ ଋଷିପୁତ୍ର ବୋଲି ପରିଚୟ ଦେଇଥାନ୍ତି । ଏମାନଙ୍କର ଦୁଇଟି ଗୋଷ୍ଠୀ, ଯେଉଁମାନେ ପୀଢ଼ ଅଂଚଳର ବାସିନ୍ଦା, ସେମାନେ ଥାନିଆ । ପୀଢ଼ ବାହାରେ ସ୍ଥାନାନ୍ତରିତ ଢେଙ୍କାନାଳ, ଅନୁଗୁଳ ଅଂଚଳରେ ବସବାସ କରୁଥିବା ଜୁଆଙ୍ଗମାନେ ହେଲେ ଭାଗୁଡ଼ିଆ ।

ଅନ୍ୟ ଜନଜାତିଙ୍କ ପରି ଜୁଆଙ୍ଗମାନେ ସେମାନଙ୍କ ଅନନ୍ୟ ଲୋକସଂସ୍କୃତି ହେତୁ ସ୍ୱତନ୍ତ୍ର ପରିଚୟ ବହନ କରିଥାନ୍ତି । ଲୋକ ପରମ୍ପରା ଯାହା, ଜଗତ ଦୃଷ୍ଟି, ଆଚାର ବ୍ୟବହାର, ଦୁଃଖ-ସୁଖ, ଲୋକକାହାଣୀ, ଗୀତ, ସୃଷ୍ଟିକଥା, କିମ୍ବଦନ୍ତୀ, ନାଁଦିଆ, କଥନିକା, ମନ୍ତ୍ର, ଚିତ୍ରକଳା, ଆଭୂଷଣ, ଖୋଦେଇ କଳା, ନୃତ୍ୟସଂଗୀତରୁ ସେମାନଙ୍କ ମୌଳିକତାର ପରିଚୟ ମିଳିଥାଏ । ସେମାନଙ୍କ ଜୀବନ ଦର୍ଶନ ଲୋକ ପରମ୍ପରା

ସହିତ ଓତଃପ୍ରୋତଃ ଭାବେ ଜଡ଼ିତ । ଅଜସ୍ର ଅଲିଖିତ ପରମ୍ପରା, ପିଢ଼ି ପରେ ପିଢ଼ି ପରିବର୍ତ୍ତିତ ହୋଇ ସେମାନଙ୍କ ସ୍ମୃତିରେ ସାଇତି ହୋଇ ରହିଛି ।



ମଜାଙ୍ଗ ହେଉଛି ସେମାନଙ୍କ କଳାତ୍ମକ ପାରଦର୍ଶିତାକୁ ଫୁଟାଇବାର, ନାନ୍ଦନିକ ଅଭିବ୍ୟକ୍ତିକୁ ବ୍ୟାଖ୍ୟାନ କରିବାର, ନିଜ ଚଉହଦି ମଧ୍ୟରେ ଘସି ମାଜି ହେଉଥିବା ଜ୍ଞାନ କୌଶଳକୁ ଶିଖିବାର ଓ ଶିଖାଇବାର ଏକ ମଂଚ । ଏହା ସେମାନଙ୍କ ଜୀବନର ପ୍ରାଣକେନ୍ଦ୍ର । ସମ୍ମୁଖ ଭାଗ ଖୋଲାଥାଇ ତିନି ଆବଦ୍ଧ ପାର୍ଶ୍ୱ ଆଶ୍ଚର୍ଯ୍ୟ କଳାର ଜଗତ । କାଛ ଖୁଂଟ ଓ କଡ଼ିରେ ସୁନ୍ଦର ସୁନ୍ଦର ପାରମ୍ପରିକ କଳାକୃତି ଦେଖିଲେ ସେଥିରେ ପ୍ରାଚୀନତାର ସ୍ୱାଦ ଯେତିକି ମିଳେ ପରିବର୍ତ୍ତନର ପ୍ରଚ୍ଛନ୍ନ ପ୍ରୟାସ ସେତିକି ପ୍ରତୀତ ହୋଇଥାଏ । ଘର ମଧ୍ୟରେ ବିବିଧ ବାଦ୍ୟଯନ୍ତ୍ର, ପତ୍ରଛତା, ଖଜୁରୀ ମସିଣା, କାଠଷ୍ଟୁଲ, ମାଠିଆ, ଶିକାର ଉପକରଣ ପ୍ରଭୃତି ସୁସଜ୍ଜିତ ଓ ସଯତ୍ନ ସହକାରେ ରଖିଥାନ୍ତି । ବର୍ଷ ତମାମ ନିଆଁ ଧୂନିଟିଏ ଘରର ଉଷ୍ମତା ସନ୍ତୁଳିତ କରି ରଖିଥାଏ । ବାହାରୁ କେହି ଆସିଲେ ଏଠାରେ ବିଶ୍ରାମ ନେବାର ପରମ୍ପରା, ଆତିଥ୍ୟ ଦେବାର ଅକୁଣ୍ଠିତ ଭାବନା, ଗ୍ରାମବାସୀଙ୍କ ସହଭାବ ଦିଆନିଆ ହେବାର ବିଧି । ଏହା ଛଡା ଯୁବାବର୍ଗଙ୍କ ମନୋରଂଜନ ଓ ଶିକ୍ଷା କେନ୍ଦ୍ରର ଅନନ୍ୟ ଅନୁଷ୍ଠାନ ମଧ୍ୟ । ସାମାଜିକ ଓ ସାଂସ୍କୃତିକ ଜୀବନଚର୍ଯ୍ୟାର ଏହା ଏକ ପବିତ୍ର ପୀଠ ।

କଳା ସଂରଚନାକୁ ଜୀବନ୍ତ ଭାବରେ ସଜାଇବାର ଏକ ଯଥାର୍ଥ ଆଖଡ଼ା ଘର ହେଉଛି ମଜାଙ୍ଗ । ଜୁଆଙ୍ଗ ଏଠି ନିଜେ ଶିଖେ, ନିଜକୁ ପ୍ରସ୍ତୁତ କରେ, ସମାଜ ଦ୍ୱାରା ସଂସ୍ଥାପିତ ନିୟମକାନୁନ ଭିତରେ ଶୃଙ୍ଖଳିତ ଜୀବନ ଜିଏଁ ଜୁଆଙ୍ଗ ।

ଜୁଆଙ୍ଗ କଳାତ୍ମକ ସଂସ୍କୃତିର ଅବନଦ୍ୟ ପରିପ୍ରକାଶ ହେଉଛି ପାନିଆ । ପାନିଆର ବ୍ୟବହାର ସିନ୍ଧୁ ସଭ୍ୟତାର ଶିଳ୍ପକଳାରେ ମଧ୍ୟ ଲକ୍ଷ୍ୟ କରାଯାଇଥାଏ । ଏହା ଅତି ପ୍ରାଚୀନ । ଉଭୟ ଜୁଆଙ୍ଗ ପୁଅ ଝିଅ, ପାନିଆ ବ୍ୟବହାରେ ନିଜର ଦୁର୍ବଳତା ରଖନ୍ତି । କେଶ ମଣ୍ଡନ କରିବା ଏବଂ ପରସ୍ପରକୁ ଆକୃଷ୍ଟ କରିବା-କରାଇବାର ଅଭିପ୍ରାୟ ଏଥିରେ ଲୁକ୍କାୟିତ । ଯୁବକଟିଏ ତାର ସମସ୍ତ କଳାଜ୍ଞାନ ପ୍ରୟୋଗ କରି ସୁନ୍ଦର ପାନିଆଟିଏ ତିଆରି କରି ପ୍ରେୟସୀକୁ ଉପହାର ସ୍ୱରୂପ ଭେଟି ଦିଏ । ଭଲ ପାଇବା, ଆନୁଗତ୍ୟତା ତଥା ଆନ୍ତରିକତା ଓ ନିବିଡ଼ତାର ଲକ୍ଷଣ ହେଉଛି ଏ ପାନିଆ । ଏ ପାନିଆ ଉପହାରଟି ଭଲ ପାଇବାର, ଭବିଷ୍ୟତ ସଂସାର ଗଠନ କରିବାର ପ୍ରଥମ ପ୍ରତିଶ୍ରୁତି ବହନ କରିଥାଏ ।



ସଉରା, କୁଟିଆ କନ୍ଧ, ବୈଗାଙ୍କ ଅନୁରୂପ ଜୁଆଙ୍ଗମାନେ ମଧ ବାଉଁଶ, କାଠ ତଥା ହାଡରେ ପାନିଆ ପ୍ରସ୍ତୁତ କରିଥାନ୍ତି । ପାନିଆର ଉପର ପାର୍ଶ୍ୱର ଦଣ୍ଡିରେ ମଣିଷ, ଜୀବଜନ୍ତୁର ଚିତ୍ର ଅଂକନ କରିଥାନ୍ତି । ଏହାଛଡା ରୈଖିକ ଆକୃତିମାନ ମଧ ଖୋଦନ କରି ପାନିଆର ସୌନ୍ଦର୍ଯ୍ୟ ବୃଦ୍ଧି କରିଥାନ୍ତି ।



ଜୁଆଙ୍ଗ ପାନିଆ ସାଧାରଣତଃ ତିନିପ୍ରକାର । ପ୍ରଥମଟିର ଗୋଟିଏ ପାର୍ଶ୍ୱ ଦନ୍ତଯୁକ୍ତ । ଉପର ପାର୍ଶ୍ୱର ମଧ୍ୟଭାଗରେ ପୁରୁଷ ଓ ସ୍ତ୍ରୀର ଆକୃତି ଖୋଦିତ ହୋଇଥାଏ, ତୀକ୍ଷ୍ଣତୀର ମୂନ ସାହାଯ୍ୟରେ ଏହି କାର୍ଯ୍ୟ ଅତ୍ୟନ୍ତ ସତର୍କତାର ସହ ପ୍ରସ୍ତୁତ କରାଯାଏ ଯେପରି, ତା'ର ସୌନ୍ଦର୍ଯ୍ୟ ହାନି ନ ହେବ । ଅତି ସରଳ ଭାବରେ ଚିତ୍ରଗୁଡ଼ିକ ଖୋଦିତ ବା ଅଂକିତ ହୋଇଥିଲେ ମଧ୍ୟ ତାର ନାନ୍ଦନିକତା ହିଁ ଜୁଆଙ୍ଗ ପାନିଆର ବିଶେଷତ୍ୱ । ବେଳେବେଳେ ପଶୁ ପକ୍ଷୀଙ୍କ ଚିତ୍ର ମଧ ଦେଖାଦେଇ କରି ପାନିଆକୁ କଳା ବିମଣ୍ଡିତ କରିବା ସେମାନଙ୍କ କଳା ଦକ୍ଷତାକୁ ବୁଝାଇଥାଏ ।





ଦ୍ୱିତୀୟଟି ପ୍ରାୟତଃ, ଉଭୟ ପାର୍ଶ୍ୱ ଦାନ୍ତ ଯୁକ୍ତ ହୋଇଥାଏ । ପ୍ରଥମ ପରି ଏହାର କାରୁକାର୍ଯ୍ୟ ହୋଇଥିଲେ ମଧ୍ୟ ଆକାର ବଡ଼ ଯୋଗୁଁ ସାଂଗରେ ନେବା ବା ମୁଣ୍ଡରେ ଖୋସି ରଖିବାରେ ବେଳେବେଳେ ଅସୁବିଧା ଦେଖାଯାଇଥାଏ । ଘରୋଇ ବ୍ୟବହାର ପାଇଁ ଏହାର ପ୍ରାୟତଃ ପ୍ରଚଳନ ରହିଥାଏ ।

ତୃତୀୟଟି ମଧ ପ୍ରଥମ ରକମ ପରି ହେଲେ ସୁଦ୍ଧା ଏହାର ଏକ ପାର୍ଶ୍ୱ ବା ଉଭୟ ପାର୍ଶ୍ୱ ଦଣ୍ଡଯୁକ୍ତ ହୋଇଥାଏ ସୁନ୍ଦର କଳାତ୍ମକ ଅଭିବ୍ୟଞ୍ଜନର ପରିପ୍ରକାଶ ଏ ପାନିଆ । ବେଳେବେଳେ ବାଉଁଶ, କାଠରେ ଏକ ପକ୍ଷୀର ମୂର୍ତ୍ତିରୂପଟିଏ ଯେପରି ନିର୍ମିତ ହୋଇଥିବାର ଭ୍ରମ ସୃଷ୍ଟି ହୁଏ । ଗୋଟିଏ ପାର୍ଶ୍ୱ ଶୀର-ଶରୀରକୁ ସୂଚିତ କରୁଥିବା ବେଳେ ଅପର ପାର୍ଶ୍ୱ ଲାଞ୍ଜକୁ ବ୍ୟକ୍ତ କରିଥାଏ । ଦେହ ଭାଗରେ ବିଭିନ୍ନ ଚିତ୍ର ଖୋଦେଇ କରି ଖୁବ୍ ଆକର୍ଷକ କରାଯାଇଥିବାର ଦେଖାଯାଏ । ଏକ ନିପୁଣ କାରିଗରୀର ଉତ୍କୃଷ୍ଟ ନିଦର୍ଶନ ଏ ପାନିଆକୁ ଶ୍ରେଷ୍ଠତର ଗଢ଼ି ତୋଳିଥାଏ ।



ଜୁଆଙ୍ଗମାନଙ୍କ କଳାକାରିଗରୀ କେବଳ ପାନିଆରେ ସୀମିତ ରହେନାହିଁ । ଦୋକ୍ତାଦାନି ଏମାନଙ୍କର ସୌନ୍ଦର୍ଯ୍ୟାନୁଭବର ଅନ୍ୟତମ ପରିପ୍ରକାଶ ମଧ । ଦୋକ୍ତାଦାନି, କନ୍ଧ, ବଣ୍ଡା, ସଉରା, ଗଣ୍ଡମାନଙ୍କ ବ୍ୟବହାର୍ଯ୍ୟ ଜିନିଷ ହିସାବରେ ମଧ୍ୟ ନଜରକୁ ଆସେ । ସେମାନେ ମଧ୍ୟ ଏହାକୁ ସୁନ୍ଦର ଭାବରେ ଅଳଂକରଣ ପୂର୍ବକ ନିଜ ନିତ୍ୟ ବ୍ୟବହାର୍ଯ୍ୟ ବସ୍ତୁ ହିସାବରେ ଆଦରରେ ରଖିଥାନ୍ତି । ବାଉଁଶ ମୂଳିକୁ ଛୁରୀ ସାହାଯ୍ୟରେ ଅଣ୍ଡାକୃତି କରି ପ୍ରସ୍ତୁତ କରିଥାନ୍ତି । ପ୍ରଥମେ ବାଉଁଶ ମୂଳିକୁ ସିଲିଣ୍ଡର ବା ଅଣ୍ଡାକୃତି କରି ତା' ମଧ୍ୟ ଭାଗରେ ଏକ ବଡ ଗାତ କରିଥାନ୍ତି । ଗାତ ମୁଖକୁ ଆଉ ଏକ ଛୋଟ କାଷ୍ଠ ଖଣ୍ଡ ଦେଇ ଠିପି ତିଆରି କରିଥାନ୍ତି ଭିତର ଗାତରେ ତମାଖୁ / ଧୂଆଁପତ୍ର ରଖି ଅବସର ସମୟରେ ତାକୁ ବ୍ୟବହାର କରନ୍ତି । ତମାଖୁ ଦାନି ପ୍ରାୟତଃ ଅଂଟାରେ ଖୋସାଯାଏ ବା ଝୁଲାଯାଏ । ଅଧିକାଂଶ ଜୁଆଙ୍ଗ ଏହାକୁ ଏକ ଛୋଟ ଝୁଲା ମୁଣ୍ଡିରେ ପୂରାଇ ରଖିଥାନ୍ତି । ତମାଖୁ ପାତ୍ରର ବାହ୍ୟ ପାର୍ଶ୍ୱ ଖୁବ୍ ମସୃଣ ଏବଂ ବିଭିନ୍ନ ରୈଖିକ ଚିତ୍ର ଦ୍ୱାରା ମଣ୍ଡିତ ହୋଇ ଖୁବ୍ ଆକର୍ଷକ ହୋଇଥାଏ ।

ତମାଖୁ ପାତ୍ର ପରି ମଦପାତ୍ର ଓ ଡଙ୍କି ପାକଳ ଲାଉତୁମ୍ବାରେ ପ୍ରସ୍ତୁତ ହେଉଥିଲେ ମଧ୍ୟ ଏହାର ବାହ୍ୟ ପ୍ରଦେଶକୁ ଆକର୍ଷଣୀୟ ରୈଖିକ ଚିତ୍ର ଖୋଦିତ କରିଥାନ୍ତି । ବ୍ୟବହାର୍ଯ୍ୟ ବସ୍ତୁ କଳାତ୍ମକ ହୋଇଥିଲେ

ମନରେ ଶାନ୍ତି ଆସିଥିବାର ଜୁଆଙ୍ଗମାନଙ୍କ ଅଭିମତ ଏହା ତାଙ୍କ ନାନ୍ଦନିକ ଅଭିବ୍ୟକ୍ତିକୁ ହିଁ ସୂଚିତ କରିଥାଏ ।

କଳାତ୍ମକ ଅଭିବ୍ୟକ୍ତିର ଅନ୍ୟତମ ପରିପ୍ରକାଶ ହେଉଛି ବଂଶୀ । ବଂଶୀବାଦନରେ ଏମାନଙ୍କ ସ୍ୱତନ୍ତ୍ର ଅଭିରୁଚି ରହିଛି ନିଶ୍ଚିତ । ମାତ୍ର, ବଂଶୀ ପ୍ରସ୍ତୁତିରେ ଏହାର ନାନ୍ଦନିକତା ଦିଗକୁ ଏମାନେ ଯଥେଷ୍ଟ ଧ୍ୟାନ ଦେଇଥାନ୍ତି । ବଂଶୀକୁ ଏମାନେ ବିଭିନ୍ନ ବିଭାଗରେ ବିଭକ୍ତ କରିଥାନ୍ତି । ପ୍ରତ୍ୟେକ ବିଭାଗରେ ସ୍ୱତନ୍ତ୍ର ଚିତ୍ର ଖୋଦିତ ହୋଇଥାଏ । ମଣିଷ, ପକ୍ଷୀ, ପଶୁ, ବିଭିନ୍ନ ପୁଷ୍ପ ସହ ପ୍ରତ୍ୟେକ ବିଭାଗ ଜ୍ୟାମିତିକ ରେଖାରେ ଖୋଦିତ ହୋଇଥାଏ । ସଂଗୀତ ଓ ସୂକ୍ଷ୍ମକଳାର ସୁନ୍ଦର ସଂଯୋଜନ ବଂଶୀ ମଧ୍ୟରେ ପରିପ୍ରକାଶ ଜୁଆଙ୍ଗ କଳା ପ୍ରାଣତାର ସୁନ୍ଦର ଅଭିବ୍ୟକ୍ତି ।



ଏମାନଙ୍କ କଳାପ୍ରାଣତା ଏତିକିରେ ସମାପ୍ତ ନୁହେଁ । ଜୁଆଙ୍ଗମାନେ କାଷ୍ଠ କାରୁକାର୍ଯ୍ୟରେ ମଧ୍ୟ ସିଦ୍ଧହସ୍ତ । କାଠର ବିଭିନ୍ନ ଖେଳଣା, ପକ୍ଷୀପରରୁ ସୁନ୍ଦର ତଥା ଲୋଭନୀୟ କଣ୍ଢେଇ ଏପରିକି କାଠ ଓ ସୁତାରୁ ସୁନ୍ଦର ସୁନ୍ଦର ଖେଳଣା, ଘୋଡ଼ା, ପକ୍ଷୀ ପ୍ରସ୍ତୁତ କରିଥାନ୍ତି । ଅଧିକାଂଶ ଘରକରଣା ସାମଗ୍ରୀ ମଧ୍ୟ ଡୀରମୂନରେ ଆକର୍ଷକ କରିଥାନ୍ତି ଏପରିକି ଧନୁ, ଟାଙ୍ଗିଆ, ଛୁରୀ ବେଂଟରେ ମଧ୍ୟ ଏହି ନାନ୍ଦନିକତାର ନିଦର୍ଶନ ଦେଖିବାକୁ ମିଳିଥାଏ ।

ମହିଳାମାନଙ୍କ ଶରୀରରେ ଚିତା କୁଟାଇବାର ପରମ୍ପରା ରହିଛି । ସେମାନଙ୍କ ବିଶ୍ୱାସ ସର୍ବଶକ୍ତିମାନ ସୂର୍ଯ୍ୟ ଦେବତାଙ୍କ ପ୍ରତିଛବି ଦେହରେ ଯଦି କୁଟାଯାଇଥିବ ତେବେ, ସବୁ ଅମଙ୍ଗଳ/ଅଶୁଭ ଦୂର ହେବ । ତେଣୁ ସୂର୍ଯ୍ୟଙ୍କ ପ୍ରତୀକ ଆଙ୍କିବାକୁ ଖୁବ୍ ପସନ୍ଦ କରିଥାନ୍ତି । ବିଶ୍ୱାସ ରହିଛି, ମୃତ୍ୟୁ ପରେ ଶରୀରର ଅଂକିତ ସୂର୍ଯ୍ୟ ଦେବତା ହିଁ ସାଥିହେବେ ଅନ୍ୟ କିଛି ନେଇଯିବେ ନାହିଁ । ତେଣୁ ହାତ, ଗୋଡ଼, ଛାତିରେ ସୂର୍ଯ୍ୟ ଚିହ୍ନ ବ୍ୟତୀତ ଅନ୍ୟାନ୍ୟ ଚିତ୍ର ମଧ୍ୟ ଅଂକନର ନଜିର ରହିଛି ।

ସେମାନଙ୍କ ଦଉଡ଼ିଆ ଖଟ ବୁଣିବା ମଧ୍ୟ ଖୁବ୍ କଳାତ୍ମକ । ଦଉଡ଼ିକୁ ଖଟରେ ଛନ୍ଦି ବିବିଧ ପଶୁପକ୍ଷୀର ପ୍ରତୀକ ଫୁଟାଇବା ଏମାନଙ୍କ ବାହାଦୁରୀ । ଜୁଆଙ୍ଗମାନଙ୍କ କଳାକୁଶଳତା କାଠ ଖୋଦେଇରେ ମଧ୍ୟ ପ୍ରଦର୍ଶିତ ହୋଇଥାଏ । ଏଥିପାଇଁ ବ୍ୟବହୃତ କାଠ ପ୍ରାୟତଃ ଗମ୍ଭୀର, କୁରୁଡ଼, କୁରେଇ ଗଛ ସହଜରେ ନିକଟସ୍ଥ ଜଙ୍ଗଲରୁ ମିଳିଥାଏ । କାଠ ଖୋଦେଇରୁ ତାଙ୍କ ଉତ୍କୃଷ୍ଟ କଳା ପ୍ରବଣତାର ନିଦର୍ଶନ ମିଳିଥାଏ । ଏହା ମଧ୍ୟ ସେମାନଙ୍କ କାରିଗରୀର ପରିଚୟ ପ୍ରଦାନ କରିଥାଏ ।  ଘର ଖୁଂଟ ଯାହା ଶାଳକାଠ ବ୍ୟବହାର କରାଯାଏ ଆବଶ୍ୟକ ପରିମାପ ହିସାବରେ ପ୍ରଥମେ ଭାଗ କରାଯାଏ । ତା'ପରେ ପ୍ରତ୍ୟେକ ଭାଗରେ ଉତ୍କୀର୍ଣ୍ଣ ହୁଏ ସୁନ୍ଦର ସୁନ୍ଦର ଡିଜାଇନର ଚିତ୍ର । ସକଳ ଶକ୍ତିର ଆଧାର ସୂର୍ଯ୍ୟ ତାଙ୍କ ଆରାଧ୍ୟ ଦେବତା । ସୂର୍ଯ୍ୟଙ୍କ ଚିତ୍ର ପ୍ରତ୍ୟେକ ଖୁଂଟରେ ବିଭିନ୍ନ ଆକାରରେ ଖୋଦେଇ କରିବା ସେମାନଙ୍କ ବୈଶିଷ୍ଟ୍ୟ । ସାଧାରଣତଃ



ଖୁଂଟର ତଳଭାଗରେ ସୂର୍ଯ୍ୟ, ଚନ୍ଦ୍ର, ତାରା ଗଣଙ୍କୁ ଉତ୍କୀର୍ଣ୍ଣ କରିଥାନ୍ତି । ମଧ୍ୟଭାଗ ବିଭିନ୍ନ ବିଘ୍ନ କାରକ ତଥା ବିନାଶକ ଆସୁରିକ ଶକ୍ତିଗଣଙ୍କ ମସ୍ତକର ପ୍ରତି କୃତି ଚିତ୍ରିତ କରିଥାନ୍ତି । ଉପର ଅଂଶ ଉଦ୍ଭିଦ ଜଗତକୁ ପ୍ରତିନିଧିତ୍ୱ କରିଥାଏ । ଏହା ତାଙ୍କ କୃଷି ସଂସ୍କୃତିର ପ୍ରତିନିଧିତ୍ୱ କରିଥାଏ । ଆଉ କେତେକ ଖୁମ୍ବରେ ମଣିଷ ଆକୃତି ଖୋଦିତ ହୋଇଥାଏ, ଯାହା ତାଙ୍କର ପ୍ରାଚୀନ ଚିତ୍ର ଅଭିରୁଚିର ମହନୀୟତା ପ୍ରଖ୍ୟାନ କରିଥାଏ । ଏହିସବୁ ଚିତ୍ର ଖୋଦିତ ଖୁଂଟ ସବୁ କେବଳ ମଣ୍ଡଘରର ଶୋଭା ବର୍ଦ୍ଧନ କରିଥାଏ ତା’ ନୁହେଁ, ଅପରନ୍ତୁ ଏକ ପ୍ରାଚୀନ ସମାଜର ପ୍ରତିନିଧିତ୍ୱ କରିବା ସହ ସେମାନଙ୍କ ପ୍ରକୃତି ସହ ସଂପର୍କକୁ ଯୋଡ଼ିଥାଏ । ଏପରିକି ମଣ୍ଡଘର କାନ୍ଥରେ ମାଟି ଲିପିବାବେଳେ ବିଭିନ୍ନ ମାନବୀୟ ପ୍ରତିଛବି ଅଙ୍କନ କରିବା ସେମାନଙ୍କ ଅନନ୍ୟ ସଉକ ଜୀବଜନ୍ତୁଙ୍କ ପ୍ରତିମୂର୍ତ୍ତି ମଧ୍ୟ ଅଂକନ କରି ନିଜର କଳା ପ୍ରାଣତାର ନିଦର୍ଶନ ଦେବାରେ ସେମାନେ କୁଣ୍ଠିତ ନୁହନ୍ତି ।

ସମୟ ବଦଳୁଛି । ବିକାଶର ଅନୁପ୍ରବେଶ ସହ କେବଳ ଜୁଆଙ୍ଗ କାହିଁକି ସମସ୍ତ ମଣିଷ ସମାଜରେ ପରିବର୍ତ୍ତନ ଆସୁଛି । ଶିକ୍ଷା, ବାହ୍ୟ ସଂସ୍କୃତିର ଅନୁପ୍ରବେଶ, ସହଜଲବ୍ଧ ଚାକଚକ୍ୟରେ ମୋହଗ୍ରସ୍ତ ଜୁଆଙ୍ଗର ଜୀବନଚର୍ଯ୍ୟା ଆଜି କବଳିତ । ସେମାନେ ମୋହଗ୍ରସ୍ତ । ପରମ୍ପରା କ୍ରମଶଃ ପରିବର୍ତ୍ତିତ ରୂପରେ ଆତ୍ମପ୍ରକାଶ କରୁଛି । ସେଦିନର ମଣ୍ଡଘର ଯାହା ଜୁଆଙ୍ଗ ଜନମାନସର କଳାକୁ ସରଳତାର ଉତ୍କୃଷ୍ଟ କେନ୍ଦ୍ର ଥିଲା ଆଜି ବୈଷୟିକ ଜ୍ଞାନ କୌଶଳରେ ସରକାର ପ୍ରାୟୋଜିତ ହେଉଛି । ମଜାଂଗ Community Centreରେ ପରିଣତ ହେଲାଣି । ଶିକ୍ଷାପ୍ରାପ୍ତ ଜୁଆଙ୍ଗ ଯୁବଗୋଷ୍ଠୀ ପରମ୍ପରାଠାରୁ ଦୂରେଇ ଯାଉଛନ୍ତି । ଯେଉଁଠି ଏମାନଙ୍କ ଅତୀତ ଆର୍ଥିକ ଦିଗକୁ ଛାଡ଼ିଦେଲେ ଖୁବ୍ ବିଭବଶାଳୀ ଥିଲା ଆଜି ତାହା ଧୂମାଭ । ପରମ୍ପରାର ଭବିଷ୍ୟତ ଖୁବ୍ ଅନ୍ଧକାର ତାହା, ଜଳଜଳ ଦିଶୁଛି । ସାଂସ୍କୃତିକ ପୁନର୍ବିନ୍ୟାସରେ ଯୁବଗୋଷ୍ଠୀ ଯଦି ନିଜ ଅତୀତକୁ ନ ନିରେଖିବେ ସାମାଜିକ ସାଂସ୍କୃତିକ ବୈଭବକୁ ପର୍ଯ୍ୟାଲୋଚନା ନ କରିବେ, ତେବେ, ଅତୀତର ଇତିହାସ ବିସ୍ମୃତିର ଗର୍ଭରେ ଯେ ବିଲୀନ ନ ହେବ, ଏହା ସମୟ ହିଁ କହିପାରିବ । ପରିବର୍ତ୍ତନ ବିକାଶକୁ ଗ୍ରହଣ କରିବାକୁ ଆମେ ବାଧ୍ୟ ମାତ୍ର ତା’ ସହ ସାମାଜିକ ବିକାଶ ଓ ପାରମ୍ପରିକ ନିକାୟ ସମୂହକୁ ମଧ୍ୟ ଆମକୁ ଆପଣାଇବାକୁ ପଡ଼ିବ ।

ନିର୍ଦ୍ଦେଶକ
ଅନୁସୂଚିତ ଜନଜାତି ଓ ଜାତି ଗବେଷଣା ପ୍ରତିଷ୍ଠାନ
ଭୁବନେଶ୍ୱର



# ସମାଜରେ ଅପରାଧ ବୃଦ୍ଧି ଓ ତା'ର ନିରାକରଣ

**ରାଜକିଶୋର ସ୍ୱାଇଁ**

ସ୍ରଷ୍ଟା ଯେତେବେଳେ ଜଗତକୁ ସୃଷ୍ଟି କଲେ, ଏହି ଜଗତକୁ ସୁଚାରୁ ରୂପେ ପରିଚାଳନା କରିବା ପାଇଁ ଓ ସବୁ ପ୍ରାଣୀଙ୍କର ମଙ୍ଗଳ ପାଇଁ କେତେକ ଶାଶ୍ୱତ ନିୟମ ପ୍ରଣୟନ କଲେ । ତାହାକୁ ଶ୍ରୁତି କୁହାଗଲା । ପରବର୍ତ୍ତୀ କାଳରେ ଏହି ଶ୍ରୁତିକୁ ବେଦ ବୋଲି ନାମ ଦିଆଗଲା । ଆମର ଆଦି ଗ୍ରନ୍ଥ ବେଦ, ଉପନିଷଦ, ଗୀତା କେଉଁ ଅନାଦି କାଳରୁ ଗାନ କରୁଛନ୍ତି : ''ଶୃଣନ୍ତୁ ସର୍ବେ ଅମୃତସ୍ୟ ପୁତ୍ରା, ପୃଥିବୀ ଶାନ୍ତି, ବନସ୍ପତୟଃ ଶାନ୍ତି, ଅନ୍ତରୀକ୍ଷଃ ଶାନ୍ତି, ଆପ୍ ଶାନ୍ତି, ଶାନ୍ତି ଏବ ଶାନ୍ତି'' । ମଧୁମତୀ ସୂକ୍ତରେ ଆର୍ଯ୍ୟ ଋଷିମାନେ ଗାନ କରିଛନ୍ତି : ''ମଧୁବାତା ରିତାୟତେ, ମଧୁ କ୍ଷରନ୍ତି ସିନ୍ଧବଃ'' । ତେଣୁ ଶାସ୍ତ୍ର ମତରେ :

''ପରୋପକାରାୟ ଫଳନ୍ତି ବୃକ୍ଷାଃ<br>ପରୋପକାରାୟ ବହନ୍ତି ନଦ୍ୟଃ<br>ପରୋପକାରାୟ ଦୋହନ୍ତି ଗାବୋଃ<br>ପରୋପକାରାୟ ଇଦଂ ଶରୀରଂ ।''

ବ୍ୟାସଦେବ ୧୮ ଖଣ୍ଡ ପୁରାଣ ଲେଖିସାରିଲା ପରେ ମଧ୍ୟ ସାରାଂଶରେ ଦୁଇଟି ବାଣୀ ଲିପିବଦ୍ଧ କରିଯାଇଛନ୍ତି ତାହା ହେଲା :

'ଅଷ୍ଟାଦଶ ପୁରାଣେଷୁ ବ୍ୟାସସ୍ୟ ବଚନଦ୍ୱୟଂ<br>ପରୋପକାରଃ ପୁଣ୍ୟାୟ ପାପାୟ ପରପୀଡ଼ନଂ ।'

ମୋଟ ଉପରେ କହିବାକୁ ଗଲେ ସରଳ ଜୀବନଯାପନ, ଉଚ୍ଚ ଚିନ୍ତା ଓ ଅନ୍ୟର ହିତ ସାଧନ କରିବା ଆମର ସାଂସ୍କୃତିକ ବିଭବ, ଆଦର୍ଶ ଓ ପରମ୍ପରା । ଏହା ଆମର ପ୍ରାଚୀନ ସଭ୍ୟତାର ମର୍ଯ୍ୟାଦା । ସେବା, ତ୍ୟାଗ ଓ ଈଶ୍ୱର ସମର୍ପିତ ଭାବ ଦ୍ୱାରା ଯେଉଁ ଆନନ୍ଦ ମିଳେ, ତାହା ଅବର୍ଣ୍ଣନୀୟ । କିନ୍ତୁ ବଡ଼ କ୍ଷୋଭ ଓ ପରିତାପର ବିଷୟ ବର୍ତ୍ତମାନ ଭୋଗବାଦର ଭବ୍ୟ ଭୂତ ଆମ ଅନ୍ତଃଚେତନାକୁ ବିକାରଗ୍ରସ୍ତ କରିଦେଉଛି । ଯେକୌଣସି ଉପାୟରେ ଅର୍ଥ ଉପାର୍ଜନର ପ୍ରବଳ ଇଚ୍ଛା ଆମକୁ ଟାଣିନେଉଛି ଏକ ଭୟଙ୍କର ସାମଗ୍ରିକ, ନୈତିକ ଅବକ୍ଷୟ ଆଡ଼କୁ । ଭଲ-ମନ୍ଦ, ଧର୍ମ-ଅଧର୍ମ, ନୀତି-ଅନୀତି, ପାପ-ପୁଣ୍ୟ, ନ୍ୟାୟ-ଅନ୍ୟାୟର ବିଚାରବୋଧ ଓ ବିବେକବୋଧ କ୍ରମେ ଜନମାନସରୁ ହଜିଯାଉଛି । ଆଦର୍ଶ ପ୍ରତି ଶ୍ରଦ୍ଧା ନାହିଁ, ବୃତ୍ତି ପ୍ରତି ନିଷ୍ଠା ଓ ସମ୍ମାନ ନାହିଁ, ଐତିହ୍ୟ, ସଂସ୍କୃତି ଓ ପରମ୍ପରା ସହ ଯୋଗସୂତ୍ର ନାହିଁ, କେବଳ କଳେବଳେ କୌଶଳେ କିଛି ପୁସ୍ତକ ଅଧ୍ୟୟନ କରି ଉପାଧି ହାସଲ କରି ଏହାକୁ ଅର୍ଥ ଉପାର୍ଜନର ପନ୍ଥା ଭାବେ ବ୍ୟବହାର କରାଯାଉଛି । ଅର୍ଥ ପାଇଁ ନୀତି, ନିୟମ, ବିବେକ ସବୁ କିଛି ବଳି ଦେବାପାଇଁ ଭୋଗବାଦୀ ମଣିଷ ଆଜି ପ୍ରସ୍ତୁତ । ଅର୍ଥ ଉପାର୍ଜନ ପାଇଁ ବିବେକ ହତ୍ୟା କାର୍ଯ୍ୟ ଓ ଆହରିତ ଜ୍ଞାନର ପ୍ରୟୋଗ ଅତି ଘୃଣ୍ୟ ଓ ନିନ୍ଦନୀୟ ଏକଥା ମଣିଷ ଭୁଲିଯାଉଛି । ଯାହାକି ଅପରାଧ ବଢ଼ିବାରେ ସହାୟକ ହେଉଛି ।

ଅପରାଧ ବଢ଼ିବାର ଦ୍ୱିତୀୟ କାରଣ ହେଉଛି, ସମାଜରେ ଲୋକମାନଙ୍କ ଭିତରେ ଭଗବତ୍ ବିଶ୍ୱାସ ଓ

ଈଶ୍ୱର ଭୟର ଅଭାବ । ଆଧ୍ୟାତ୍ମିକତା ହିଁ ବ୍ୟକ୍ତି, ସମାଜ ଓ ଧର୍ମର ମୂଳଭିତ୍ତି । ସମାଜରୁ ଆଧ୍ୟାତ୍ମିକତାର ବିଲୋପ ହେତୁ ଅପରାଧ ଦିନକୁ ଦିନ ବଢ଼ିଚାଲିଛି ଓ ସମାଜରେ ସାମାଜିକ ଶୃଙ୍ଖଳା ରହୁନାହିଁ । ଯେଉଁ ଦେଶର ଲୋକଙ୍କ ଭିତରେ ଯେତେ ଊଣା ଈଶ୍ୱର ଭୟ ସେ ଦେଶରେ ସେତେ ଅଧିକ ଦୁର୍ନୀତି ଓ ଭ୍ରଷ୍ଟାଚାର ।

ମଶା ପାଇଁ ଧୂଆଁର ଆବଶ୍ୟକତା ଥିଲା ପରି ସମାଜରୁ ଅପରାଧ ନିରାକରଣ ପାଇଁ ନୈତିକତାର ଆସ୍ତରଣ ନିତାନ୍ତ ଜରୁରୀ । ପୂତିଗନ୍ଧମୟ ପରିବେଶ ଅନିଷ୍ଟକାରୀ ମଶା, ମାଛି ଓ ମୂଷାଦିଙ୍କର ସଂଖ୍ୟା ବୃଦ୍ଧି ପାଇଁ ସହାୟକ ହୋଇଥାଏ ଏବଂ ଏମାନଙ୍କ ପ୍ରାଦୁର୍ଭାବ ଆମମାନଙ୍କ ପାଇଁ ଦୁର୍ଦ୍ଦଶା ଡାକିଆଣେ । ଏମାନଙ୍କଠୁଁ ବର୍ତ୍ତିବା ପାଇଁ ଚତୁଃପାର୍ଶ୍ୱ ସ୍ୱଚ୍ଛ ରଖିବା ହିଁ ବଳିଷ୍ଠ ପନ୍ଥା । ଠିକ୍ ସେହିପରି ଏକ ସୁସ୍ଥ, ସୁନ୍ଦର ସମାଜଟିଏ ଗଢ଼ିବାକୁ ହେଲେ, ବ୍ୟକ୍ତିର ମାନସିକ ସ୍ୱଚ୍ଛତା ସର୍ବାଗ୍ରେ ଲୋଡ଼ା । କିନ୍ତୁ ବଡ଼ ଦୁଃଖ ଓ ପରିତାପର ବିଷୟ ଯୋଗୀ ଭାରତ ଆଜି ଭୋଗୀ ଭାରତରେ ପରିଣତ ହୋଇଛି । ସ୍ୱଚ୍ଛତା ବଦଳରେ ଅଧିକରୁ ଅଧିକ ମଇଳା ଭର୍ତ୍ତି ହେବାର ବ୍ୟବସ୍ଥା ବଢ଼ିବଢ଼ି ଚାଲିଛି । ଫଳରେ ସବୁଆଡ଼େ ଅସାମାଜିକତା ଓ ଅରାଜକତାର ଆଧିପତ୍ୟ ।

ନୀତି ନୈତିକତା ପ୍ରତି ଲୋକମାନଙ୍କର ପ୍ରେରଣା ବା ସ୍ପୃହା ନାହିଁ । ନୈତିକତାର ଅସଲ ଆଧାର ଆଧ୍ୟାତ୍ମିକତା ପ୍ରତି ବି ଆଦର ନାହିଁ । ମଶା ପାଇଁ ଧୂଆଁର ଆବଶ୍ୟକତା ଥିଲା ପରି ସମାଜରୁ ଯାବତୀୟ ଦୁର୍ନୀତି, ବିଶୃଙ୍ଖଳା ଓ ଅପରାଧ ନିରାକରଣ ପାଇଁ ନୈତିକତାର ଆସ୍ତରଣ ନିତାନ୍ତ ଜରୁରୀ । ଏହା ଆମ ଚେତନା ସ୍ତରକୁ ଉଦ୍ଭାସିତ କରିଥାଏ । ବିବେକକୁ ବିକଶିତ କରିଥାଏ । ତେଣୁ ସମାଜକୁ ଶୃଙ୍ଖଳିତ ଓ ଅପରାଧମୁକ୍ତ କରିବାକୁ ହେଲେ ପ୍ରଥମ ସର୍ତ୍ତ ହେଲା କଲ୍ୟାଣ ପାଇଁ ନିଷ୍ଠା, ଏକାଗ୍ରତା, ଦେଶପ୍ରୀତି ଓ ସାଧୁ ହେବା ପାଇଁ ଈଶ୍ୱର ଭକ୍ତିର ଆବଶ୍ୟକତା ରହିଛି । ଆମେ ଆଇନ୍‌କୁ ଯେତେ କଡ଼ାକଡ଼ି କଲେ ମଧ୍ୟ ବା ସେଥିରେ ଯେତେ କଠୋର ଦଣ୍ଡର ବ୍ୟବସ୍ଥା କରୁ ନା କାହିଁକି ନୈତିକତା ଓ ଆଧ୍ୟାତ୍ମିକତା ବିନା ବର୍ତ୍ତମାନ ସମାଜ ବ୍ୟବସ୍ଥାର ବିଶେଷ କିଛି ପରିବର୍ତ୍ତନ ହେବନାହିଁ । ଶିଶିର ଯେପରି ଅଦୃଶ୍ୟ ଓ ଅଶ୍ରୁତ ଭାବେ ଗୋଲାପ କଢ଼ିକୁ ବିକଶିତ କରିଥାଏ, ନୈତିକତା ମଧ୍ୟ ଠିକ୍ ସେହିପରି ଭାବେ ସାମାଜିକ ଜୀବନକୁ ଉଦ୍ଭାସିତ ଓ ବିକଶିତ କରିଥାଏ ।

ଭାରାକ୍ରାନ୍ତ ମନକୁ ଟିକେ ହାଲୁକା କରିବାପାଇଁ ସିନେମା, ଟେଲିଭିଜନ, ଯାତ୍ରା, ସଙ୍ଗୀତ କାର୍ଯ୍ୟକ୍ରମ ଆଦିର ବ୍ୟବସ୍ଥା କରାହୋଇଛି । ମାତ୍ର ଏ ସବୁଥିରେ ଯେଉଁ ପ୍ରକାର ଅଶ୍ଳୀଳତାର ଅଶୋଭନୀୟ ଅଙ୍ଗ ପ୍ରଦର୍ଶନ ଚାଲିଛି, ତାହା ଆଜି ଚିନ୍ତାର କାରଣ ସାଜିଛି । ଗହଳି ଗୋଟାଇବା ପାଇଁ ସେହି ଅଶ୍ଳୀଳତା ଓ ଉଦ୍ଦଣ୍ଡ ନୃତ୍ୟ ଆଜି ସାହାରା ସାଜିଛି । ଟିଭି ଧାରାବାହିକଠାରୁ ଆରମ୍ଭ କରି ସିନେମା, ସମ୍ବାଦ ପରିବେଷଣ ପର୍ଯ୍ୟନ୍ତ ସବୁଥିରେ ଅତି ନିମ୍ନମାନର ପରିବେଷଣ ଓ ବିଜ୍ଞାପନ ଦିଆଯାଉଛି । ଆଜି ପରିବାରର ସବୁ ସଦସ୍ୟଙ୍କ ସହ ସିନେମା କି ଟିଭି ଦେଖି ହେଉନାହିଁ ।

ଅର୍ଥ ଉପାର୍ଜନ ପାଇଁ କଳାକାରମାନେ ନିମ୍ନ ସ୍ତରକୁ ଚାଲି ଯାଉଛନ୍ତି । ଏହା ମଧ୍ୟ ଅପରାଧ ବୃଦ୍ଧିରେ ସହାୟକ ହେଉଛି । ସମାଜର ଜାଗ୍ରତ ପ୍ରହରୀ ଭାବେ ଗଣମାଧ୍ୟମ ତା'ର ଗୁରୁଦାୟିତ୍ୱ ତୁଲାଇବା କଥା । ସମାଜକୁ ସଜାଡ଼ିବାକୁ ଚତୁର୍ଥ ସ୍ତମ୍ଭଟି ଯଥେଷ୍ଟ ଯତ୍ନବାନ୍ ହେବା କଥା ।

ଅପହରଣ, ଦୁଷ୍କର୍ମ ଇତ୍ୟାଦି ନାରକୀୟ ନିନ୍ଦନୀୟ ଘଟଣା ସହିତ ମଡ଼େଲ୍‌ମାନଙ୍କର ଅଶ୍ଳୀଳ ଛବି ଓ ଅଶ୍ଳୀଳ ବିଜ୍ଞାପନ ଗଣମାଧ୍ୟମରେ ପାଉଛି ପ୍ରାଥମିକତା । ଏହିପରି ବିଭିନ୍ନ ଭାବରେ ସମାଜକୁ ପ୍ରଲୁବ୍ଧ କରାଇ ବିକଳାଙ୍ଗ ଓ ଭ୍ରଷ୍ଟ କରାଯାଉଛି । ଭଲ ସମ୍ବାଦ ପରିବେଷଣକୁ ପ୍ରାଥମିକତା ଦିଆଯାଉନି ।

ମୋବାଇଲ୍ ଯନ୍ତ୍ରଟି ଆଜି ସାଜିଛି ମାରଣାସ୍ତ୍ର । କିଶୋର କିଶୋରୀଙ୍କ ହାତରେ ପଡୁଥିବା ଏହି ମାରାତ୍ମକ ଯନ୍ତ୍ରଟିର ଅସଦ୍ ଉପଯୋଗ ହେତୁ ଆଜି ସମାଜରେ ଭୟଙ୍କର କ୍ଷତି ଘଟୁଛି । ତେଣୁ ଅପରାଧ ଘଟିବାର ଏହା ମଧ୍ୟ ଏକ କାରଣ ।

ନିଶା ସମାଜରେ ନାନାଦି ବିଶୃଙ୍ଖଳା ଓ ଭ୍ରଷ୍ଟାଚାର ସୃଷ୍ଟି କରୁଛି ଯାହାକି ଅପରାଧ ବୃଦ୍ଧିପାଇଁ ଖୋରାକ ଯୋଗାଉଛି ।

ଠିକ୍ ଯେପରି ଜିଭର ଲାଳସା ମେଣ୍ଟାଇବାକୁ ଯାଇ ଜୀବ ହତ୍ୟା ଅପରାଧ ସମେତ ମାଂସ ବିକ୍ରେତା, କ୍ରେତା, ଭୋଜନକାରୀ, ପ୍ରସ୍ତୁତକାରୀ ସମସ୍ତେ ଯେପରି ଦାୟୀ, ଠିକ୍ ସେହିପରି ସମାଜରେ ଅପରାଧ ବଢ଼ିବାପାଇଁ ପ୍ରତ୍ୟକ୍ଷ ବା ପରୋକ୍ଷରେ ଆମେ ସମସ୍ତେ ଦାୟୀ ।

ଏ ସବୁର ଏକମାତ୍ର ପ୍ରତିକାର ହେଉଛି ସବୁଠି ସକାରାତ୍ମକ ଚିନ୍ତନ ଓ ସ୍ୱଚ୍ଛତାର ସଞ୍ଚରଣ ନିତାନ୍ତ ଜରୁରୀ । ପ୍ରତ୍ୟେକ ବ୍ୟକ୍ତିକୁ ବୁଝିବାକୁ ହେବ ଯେ, ମଣିଷର ସବୁ ଜ୍ଞାନ, ବୁଦ୍ଧି ଓ ଶକ୍ତି ଉପରେ ଆଉ ଏକ ଶକ୍ତି ରହିଛି ତାହା ହେଉଛି ଐଶ୍ୱରିକ ଶକ୍ତି । ପରମେଶ୍ୱର ହିଁ ସତ୍ୟ, ପରମେଶ୍ୱର ହିଁ ଜୀବନ ଓ ପରମେଶ୍ୱର ହିଁ ଆଲୋକ । ଈଶ୍ୱର ହିଁ ପ୍ରେମ ଓ ପରମ ମଙ୍ଗଳ । ତାଙ୍କ ଉପରେ ଆସ୍ଥା ଓ ବିଶ୍ୱାସ ହିଁ ଭକ୍ତି । ତାଙ୍କୁ ଆଶ୍ରା କଲେ ମୁକ୍ତି । ଏକ ପରିଚ୍ଛନ୍ନ ହୃଦୟ ହିଁ ଈଶ୍ୱରଙ୍କୁ ଉପଲବ୍ଧି କରିପାରେ । ସେ ହିଁ ଏକମାତ୍ର ଶକ୍ତି ଯେ କି ସମସ୍ତ ଦୁଃଖ, ବେଦନା, ବ୍ୟାଧି ଦୂର କରିବା ପାଇଁ ସମର୍ଥ । ଧର୍ମ ହେଉଛି ସତ୍ୟ, ଅହିଂସା, ସାମ୍ୟ, ମୈତ୍ରୀ ଆଉ ପ୍ରେମ । ଯେଉଁଠି ଏହାର ରାଜୁତି ତାହା ହିଁ ରାମ ରାଜ୍ୟ । ସମାଜରୁ ହିଂସା, ଦ୍ୱେଷ, ଅନୀତି, ଅନାଚାର, ବିଶୃଙ୍ଖଳା ଓ ନାନାଦି ଅପରାଧ ଦୂର କରି ଶାନ୍ତି, ମୈତ୍ରୀର ମଧୁର ବାତାବରଣ ପ୍ରତିଷ୍ଠା କରିବାକୁ ହେଲେ ପ୍ରତ୍ୟେକ ବ୍ୟକ୍ତି ସତ୍ୟକୁ ଶ୍ରଦ୍ଧାର ସହ ଗ୍ରହଣ କରନ୍ତୁ । ତାହା ହିଁ ହେବ ଅନୁତାପ ଦଗ୍ଧ ଅନ୍ତରର ଗଭୀର ଉପଲବ୍ଧି । ସ୍ନେହ, ପ୍ରେମ, ସମ୍ବେଦନା, ଦୟା, କ୍ଷମା ଓ ନିଃସ୍ୱାର୍ଥପର ସେବା ମାଧ୍ୟମରେ ହିଂସା ଓ ଦ୍ୱେଷରେ ପ୍ରଦୂଷିତ ସମାଜ ପ୍ରଦୂଷଣମୁକ୍ତ ହୋଇପାରିବ । ଧର୍ମର ଏହି ଅନ୍ତର୍ନିହିତ ଅର୍ଥକୁ ସମସ୍ତେ ଉପଲବ୍ଧି କଲେ ଧର୍ମୀୟ ଅସହିଷ୍ଣୁତା, ବିଭେଦ, ଘୃଣା ସବୁ ଛାଏଁ ଛାଏଁ ଦୂର ହୋଇଯିବ । ସମାଜରୁ ଅପରାଧର ମାତ୍ରା ହ୍ରାସ ପାଇବା ସଙ୍ଗେସଙ୍ଗେ ଆଇନର ମାତ୍ରାଧିକ ପ୍ରୟୋଗ କମିବ ଏବଂ ତତ୍ ସହିତ ବାହ୍ୟ ଓ ଅନ୍ତଃ ପରିବେଶ ହେବ ମଧୁମୟ ।

ଅବସରପ୍ରାପ୍ତ ଉପ ଆରକ୍ଷୀ ଅଧୀକ୍ଷକ
ନୂଆପଡ଼ା, ନୂଆବଜାର, କଟକ–୭୫୩୦୦୪



# 'ପରଜା' ଆଦିବାସୀ : ଏକ ନୃତାତ୍ତ୍ୱିକ ଅଧ୍ୟୟନ

ଡକ୍ଟର ପ୍ରଦୀପ କୁମାର ସ୍ୱାଇଁ

କୋରାପୁଟ ଜିଲ୍ଲା ଏକ ଆଦିବାସୀ ଅଧ୍ୟୁଷିତ ଜିଲ୍ଲା । ଓଡିଶାରେ ବସବାସ କରୁଥିବା ୬୨ ପ୍ରକାର ଆଦିବାସୀ ଗୋଷ୍ଠୀ ମଧ୍ୟରୁ ଅଧିକାଂଶ ଗୋଷ୍ଠୀ କୋରାପୁଟ ଜିଲ୍ଲାରେ ବସବାସ କରନ୍ତି । ସେହି ଆଦିବାସୀ ଗୋଷ୍ଠୀ ମଧ୍ୟରୁ ପରଜା ଏକ ମୁଖ୍ୟ ଗୋଷ୍ଠୀ । ସେମାନେ କୋରାପୁଟ, ନନ୍ଦପୁର, ସେମିଳିଗୁଡା, ପାଡୁଆ, ଲକ୍ଷ୍ମୀପୁର, କୁନ୍ଦା, କୁମୁଣି ଓ ଦାମନଯୋଡି ଆଦି ଅଞ୍ଚଳରେ ବହୁଳ ଭାବରେ ବସବାସ କରନ୍ତି ।

ପରଜାମାନେ ସ୍ୱଭାବରେ ସରଳ ଓ ନିଷ୍କପଟ । ନିଜର କର୍ମପ୍ରବଣ ମନୋବୃତ୍ତି ଓ ଆତିଥେୟତା ଗୁଣରୁ ସେମାନେ 'ପରଜା' ବୋଲି ଚିହ୍ନି ହୁଅନ୍ତି । ସେମାନେ କଠିନ ପରିଶ୍ରମୀ ଓ ପରୋପକାରୀ । ପାପ, ହିଂସା ପ୍ରଭୃତି ଆସୁରିକ ଗୁଣଠାରୁ ସେମାନେ ବହୁ ଦୂରରେ ରୁହନ୍ତି । ମାତ୍ର, ଅନ୍ୟାୟ ଓ ଅନୀତି ଦେଖିଲେ ସେମାନଙ୍କଠାରେ ହିଂସ୍ର ପ୍ରବୃତ୍ତି ଜାଗି ଉଠେ । ଫଳରେ ପ୍ରତିଶୋଧ ନେବାକୁ ସେମାନେ କୁଣ୍ଠା ପ୍ରକାଶ କରନ୍ତି ନାହିଁ । ପରଜାମାନେ କନ୍ଧ, ଗାଦବା ତଥା ଅନ୍ୟ ଆଦିବାସୀ ଗୋଷ୍ଠୀଙ୍କଠାରୁ ଚାଲାକ୍ ଓ ଚତୁର । ସେମାନେ ଭଲ ପାହାଡ ଚଢି ପାରନ୍ତି । ସକାଳୁ ସନ୍ଧ୍ୟା ଯାଏଁ ନିଜ ପିଲାମାନଙ୍କ ସହିତ ଚାଷ ଜମିରେ ଖଟି ପାରନ୍ତି ।

ପରଜାମାନଙ୍କ ସୃଷ୍ଟି ସମ୍ପର୍କରେ ଏକ ଲୋକକଥା ପ୍ରଚଳିତ । ଭଗବାନଙ୍କର ଭୀମ ନାମରେ ଏକ ଚାକର ଥିଲା । ସେ ଠିକ୍ ଭାବରେ ତା'ର ଦାୟିତ୍ୱ ଓ କାର୍ଯ୍ୟ ସମ୍ପାଦନ କରେ ନାହିଁ । ଥରେ ଭଗବାନ ଭୀମକୁ କହିଲେ ଚାଷ କରିବା ପାଇଁ । କାରଣ କୌଣସି ମଣିଷ ତାଙ୍କ କଥା ସେତେବେଳେ ମାନୁ ନ ଥଲେ । ଭୀମ ମନୁଷ୍ୟମାନଙ୍କୁ ବାଧ କରି ସାଙ୍ଗରେ ନେଇ ଚାଷ କରାଇଲେ । ଫଳରେ ଚାଷ କାର୍ଯ୍ୟ ଶୀଘ୍ର ସରିଗଲା । ବିହନ ମଧ ବୁଣା ସରିଲା । ବିହନରୁ ଗଜା ବାହାରି ଚାଷ ଜମି ଶସ୍ୟଶ୍ୟାମଳା ହେଲା । ଅମଳ ସମୟରେ ଭଗବାନ ସେହି ଚାଷ ଜମି ଦେଖିବାକୁ ଗଲେ । ସେଠାରେ ଭୀମ ସହ ମଣିଷମାନଙ୍କୁ ଦେଖି ସୃଷ୍ଟି କାର୍ତ୍ତା ଭଗବାନ ରାଗିଗଲେ ଓ କହିଲେ ଭୀମ ତୁ ଯେଉଁ ବୋକା କାମ କଲୁ ଆଜିଠାରୁ ତୁ ବୋକା ହୋଇ ରହିବୁ ଏବଂ ଅଖାଦ୍ୟ ଖାଇ ବଞ୍ଚିବୁ । କେହି ତୋ କଥା ଶୁଣିବେ ନାହିଁ କି ବିଶ୍ୱାସ କରିବେ ନାହିଁ । ସେହି ଭୀମ ହେଉଛି ପରଜାମାନଙ୍କର ପୂର୍ବ ପୁରୁଷ ।

**ପରଜା ବସତି**

ସାଧାରଣତଃ ଜଳାଧାରର ସୁବିଧା ଥିବା ପାହାଡ ପର୍ବତର ପାଦ ଦେଶରେ ପରଜାମାନେ ବସତି ସ୍ଥାପନ କରନ୍ତି । ସେମାନଙ୍କ ଘରଗୁଡିକ କାଠ ଓ ବାଉଁଶ ଦ୍ୱାରା ନିର୍ମିତ ହୋଇ, ପିରି ଛଣରେ ଛାତ ଛପର ହୋଇଥାଏ । ଘରର କାନ୍ଥ ସବୁ ପଥରରେ କାଦୁଅ ଲେଶି କିମ୍ବା ଝାଟିମାଟିରେ ତିଆରି ହୋଇଥାଏ । ସାଧାରଣତଃ ଏହି ଘରଗୁଡିକ ଦୁଇ ବା ତିନି ବଖରାରେ ବିଭକ୍ତ । ଉକ୍ତ ଘର

ଭିତରକୁ ଯିବା ପାଇଁ ଗୋଟିଏ ମାତ୍ର ପ୍ରବେଶ ପଥ ଥାଏ । ଘର ବାହାର ସର୍ବଦା ପରିଷ୍କାର ଓ ପରିଚ୍ଛନ୍ନ ହେବା ସଙ୍ଗେ ସଙ୍ଗେ କାନ୍ଥ ଓ ଅଗଣା ରଙ୍ଗ ମାଟିରେ ଲିପା ଯାଇ ସୁନ୍ଦର ଦିଶେ । ସମ୍ପ୍ରତି ଶିକ୍ଷା ସଭ୍ୟତାର ବିକାଶ ଫଳରେ ଅନେକ ପରଜା ଇଟା, ସିମେଣ୍ଟ ଓ ବାଲିର ବ୍ୟବହାର କରି ଘରର କାନ୍ଥ ଦେବା ସହିତ ଛାତ ଘର ବା ଆଜବେଷ୍ଟସ୍ ବା ଟିଣ ଛପର କଲେଣି ।

ଗାଁ ମଧ୍ୟରେ ଘରଗୁଡିକ ଧାଡି ଧାଡି ବା ଏଠି ସେଠି ନିର୍ମିତ ହୋଇଥାଏ । ପ୍ରତି ପରଜା ଗ୍ରାମରେ 'ବେରଣମୁଣ୍ଡା' ଓ 'ନିଶାଣମୁଣ୍ଡା' ଥାଏ । ଗାଁ ମଝିରେ ଗୋଟିଏ ସ୍ଥାନରେ ପଥର ଗଦା ଯାଇ ବସିବା ପାଇଁ ସ୍ଥାନ ବା ଆସନ ତିଆରି କରାଯାଏ । ଏହାକୁ ବେରଣମୁଣ୍ଡା କୁହାଯାଏ । ଏହି ବେରଣମୁଣ୍ଡା ଗ୍ରାମ ମୁଖିଆଙ୍କ ଘର ନିକଟରେ କିମ୍ବା ଗ୍ରାମ ମଝିରେ ତିଆରି ହୁଏ । ଏଠାରେ ପୂଜା ପର୍ବ, ନ୍ୟାୟ ନିଶାପ ବା ଭଲମନ୍ଦର ବିଚାର ଆଲୋଚନା ସମସ୍ତଙ୍କ ଉପସ୍ଥିତିରେ ହୋଇଥାଏ ।

ମାତ୍ର, ନିଶାଣ ମୁଣ୍ଡା ହେଉଛି ପୂଜା ଆରାଧନାର ଘର । ଏହି ଘର ମଧ୍ୟରେ ମାଟିହାଣ୍ଡି, ଲୁହା କାତି ଓ ଏକ ଲୁହା ଖମ୍ବ ଥାଏ । ଏହିସବୁ ବସ୍ତୁ ପରଜାମାନଙ୍କର ଆରାଧ୍ୟ ଦେବତା ଅଟନ୍ତି । ଏହାକୁ ସେମାନେ ହୁଣ୍ଡି ଦେବତା ବୋଲି ମଧ୍ୟ କହିଥାଆନ୍ତି । ବର୍ଷରେ ଦୁଇ ତିନି ଥର ପୂଜାପାଠ କରାଯାଇ ମାଟିହାଣ୍ଡି ଓ ଲୁହା କାତିକୁ ବଦଳାଯାଏ ।

ଜାନି, ମୁଦୁଲି, ଚଲାଣ, ଦିଶାରି, ଗୁଣିଆ, ଗୁରୁମାଇ ଓ ଭାତନାୟକ ହେଉଛନ୍ତି ପରଜା ଗ୍ରାମର କେତେକ ମୁଖ୍ୟ ଓ ପରାକ୍ରମୀ ବ୍ୟକ୍ତି । ଜାନିର ସ୍ଥାନ ସବୁଠାରୁ ଉଚ୍ଚରେ ଓ ସେ ଗ୍ରାମ ମୁଖିଆ । ମୁଦୁଲି ଗାଆଁର ଭଲମନ୍ଦ ବୁଝାସୁଝା କରିଥାଏ । ଚଲାଣର କାମ ହେଲା ଜାନି ଓ ମୁଦୁଲିଙ୍କର ଆଦେଶକୁ ଗାଁ ଲୋକଙ୍କ ପାଖରେ ପହଞ୍ଚାଇବା । ଦିଶାରୀ ଶୁଭ ଲଗ୍ନ ସ୍ଥିର କରେ ଓ ନବଜାତ ସନ୍ତାନର ନାମକରଣ କରେ । ଗୁଣିଆ ଚେରମୂଳି ଓ ମନ୍ତ୍ର ତନ୍ତ୍ର ଦ୍ୱାରା ଲୋକଙ୍କୁ ଆରୋଗ୍ୟ କରେ । ସାଧାରଣତଃ ପରଜା ସ୍ତ୍ରୀ ଗୁରୁମାଇର ଭୂମିକା ନିଭାଇ ପୂଜାପାଠ କରେ । ଭାତନାୟକ ନ୍ୟାୟ ନିଶାପ କରେ । ସ୍ୱାଧୀନୋତ୍ତର ଭାରତରେ ପଞ୍ଚାୟତ ବ୍ୟବସ୍ଥା କାର୍ଯ୍ୟକାରୀ ହେବା ପରେ ଏମାନଙ୍କ ମଧ୍ୟରୁ ଅନେକ ପଦବୀର ଆଉ କୌଣସି ମୂଲ୍ୟ ନାହିଁ କହିଲେ ଚଳେ ।

**ଭାଷା**

ଐତିହାସିକମାନଙ୍କ ତଥ୍ୟ ଅନୁଯାୟୀ କୋରାପୁଟ ପୂର୍ବେ ଗଙ୍ଗବଂଶର ରାଜାମାନଙ୍କ ଦ୍ୱାରା ଶାସିତ ହେଉଥିଲା । ସେତେବେଳେ ଏହାର ନାମ ଥିଲା ଓଡବାଡି । ଏହି ଓଡବାଡିର ପ୍ରଜାମାନଙ୍କୁ ସେତେବେଳେ ପରଜା କୁହାଯାଉଥିଲା । ସେମାନଙ୍କ ଭାଷାରେ ଉଡ୍ର–ପ୍ରାକୃତ ଭାଷାର ସ୍ୱରୂପ ଲକ୍ଷ୍ୟ କରାଯାଏ । ପରଜାମାନେ ସ୍ୱତନ୍ତ୍ର ଭାଷା ବ୍ୟବହାର କରୁଥିଲେ ହେଁ ସେମାନଙ୍କ ଭାଷାର ଲିପି ନାହିଁ । ଏହା ଓଡିଆ ଭାଷା ଦ୍ୱାରା କେତେକ କ୍ଷେତ୍ରରେ ପ୍ରଭାବିତ । ସମ୍ପ୍ରତି ସେମାନେ ଘର ପରଜା ଓ ବାହାରକୁ ଆସିଲେ ଦେଶିଆ ଭାଷା ବ୍ୟବହାର କରନ୍ତି । ଏମାନଙ୍କ ସାହିତ୍ୟ ଲୋକ ସାହିତ୍ୟ ପର୍ଯ୍ୟାୟଭୁକ୍ତ ।

**ପରଜାମାନଙ୍କର ଜାତି ଓ ଗୋତ୍ର**

ପରଜାମାନେ ବିଭିନ୍ନ ଭାଗରେ ବିଭକ୍ତ, ଯଥା – ବଡ ପରଜା, ସାନ ପରଜା, ପେଙ୍ଗୁ ପରଜା, ପାରେଙ୍ଗ ପରଜା, ଯୋଡିଆ ପରଜା, ଛେଳିଆ ପରଜା ଇତ୍ୟାଦି । ଏହାବ୍ୟତୀତ ଆହୁରି କେତେକ ଭାଗରେ ମଧ୍ୟ ଏମାନେ ବିଭକ୍ତ – ଯଥା ଞ ବଣ୍ଡା ପରଜା, କନ୍ଧ ପରଜା ଇତ୍ୟାଦି । କେତେକ ଅଞ୍ଚଳରେ ଝୋଡିଆ ପରଜାମାନେ ବଡ ପରଜା, ଝୋଡିଆ ପରଜାମାନେ ସାନ ପରଜା ଭାବରେ ପରିଚିତ ହୋଇଥାନ୍ତି । ସାଧାରଣତଃ ବଡ ପରଜାମାନେ ସବୁଠାରୁ ଉଚ୍ଚ ଶ୍ରେଣୀର ଓ ଏମାନେ ଅନ୍ୟ କୌଣସି ପରଜା ଗୋଷ୍ଠୀଙ୍କଠାରୁ ଖାଦ୍ୟଗ୍ରହଣ କରନ୍ତି ନାହିଁ କିମ୍ବା ସେମାନଙ୍କ ସହିତ ବୈବାହିକ ସମ୍ପର୍କ ସ୍ଥାପନ କରନ୍ତି ନାହିଁ ।

ପରଜାମାନେ ନିଜକୁ ବିଭିନ୍ନ ଗୋତ୍ରରେ ବିଭକ୍ତ କରନ୍ତି । ବାଘ, ଚିଲ, କୁକୁର, ଛେଳି, କଇଁଛ, ଏଣ୍ଡୁଅ ଆଦିକୁ

ସେମାନେ ନିଜର ଗୋତ୍ରର ସଙ୍କେତ ଭାବରେ ଗ୍ରହଣ କରନ୍ତି । ନିଜ ଗୋତ୍ରର ଜୀବଜନ୍ତୁମାନଙ୍କୁ ସେମାନେ ପୂଜା କରି ସମ୍ମାନ ପ୍ରଦର୍ଶନ କରନ୍ତି । କୌଣସି ପରିସ୍ଥିତିରେ ସେମାନଙ୍କୁ ଆଘାତ କରନ୍ତି ନାହିଁ କିମ୍ବା ଭକ୍ଷଣ କରନ୍ତି ନାହିଁ ।

**ଖାଦ୍ୟ ଓ ପାନୀୟ**

ପରଜାମାନେ ଭାତ ଖାଆନ୍ତି । ପେଜ ଓ ମାଣ୍ଡିଆ ଜାଉ ହେଉଛି ସେମାନଙ୍କର ନିତିଦିନିଆ ଖାଦ୍ୟ । ସକାଳୁ ସେମାନେ ପେଜ ପିଇ କାମକୁ ବାହାରି ଯାଆନ୍ତି । ରାତିରେ ଭାତ ତରକାରୀ ଖାଆନ୍ତି । ଧାନ, ମକା, ଜହ୍ନା, ସୁଆଁ, କନ୍ଦମୂଳ ଆଦି ପରଦା ସମ୍ପ୍ରଦାୟର ମୁଖ୍ୟ କୃଷିଜାତ ଦ୍ରବ୍ୟ ହୋଇଥିବାରୁ ସେମାନେ ସେଗୁଡିକୁ ଖାଦ୍ୟ ପଦାର୍ଥ ଭାବରେ ବ୍ୟବହାର କରନ୍ତି । ଆମ୍ବ କୋଇଲିକୁ ଶୁଖାଇ ସେମାନେ ଏକ ପ୍ରକାର ଖାଦ୍ୟ ପ୍ରସ୍ତୁତ କରିଥାଆନ୍ତି । ପର୍ବପର୍ବାଣି ସମୟରେ କୁକୁଡା ଓ ଛେଳି ମାରି ସେମାନଙ୍କ ମାଂସକୁ ଖାଦ୍ୟ ଭାବରେ ବ୍ୟବହାର କରନ୍ତି । ସମସ୍ତ ପରଜା ମଦ୍ୟ ପାନ କରନ୍ତି । 'ଲନ୍ଦା' ପରଜାମାନଙ୍କର ପ୍ରିୟ ପାନୀୟ ।

**ବେଶଭୂଷା**

ପରଜାମାନେ ସାଧାରଣତଃ ସରଳ ଜୀବନଯାପନ କରନ୍ତି । ସେଥିପାଇଁ ସେମାନେ ପୋଷାକପତ୍ର ଉପରେ ସେତେ ଗୁରୁତ୍ୱ ଦିଅନ୍ତି ନାହିଁ । ପୁରୁଷମାନେ ସାଧାରଣତଃ ଲେଙ୍ଗୁଟି ମାରନ୍ତି । ନାରୀମାନେ ରଙ୍ଗବେରଙ୍ଗର ଶାଢୀ ପିନ୍ଧନ୍ତି । ପୂର୍ବେ ହାତ ତିଆରି ଛୋଟ ଶାଢୀ ପିନ୍ଧୁଥିଲେ । ଏବେ ମିଲ୍ ତିଆରି ଶାଢୀ ପିନ୍ଧୁଛନ୍ତି । ପରଜା ସ୍ତ୍ରୀମାନେ ବେଶି ଅଳଙ୍କାର ପ୍ରିୟ । ଏକ ସ୍ୱତନ୍ତ୍ର ଶୈଳୀରେ ସେମାନେ ବସ୍ତ୍ର ପରିଧାନ କରନ୍ତି । ସେମାନେ କାନରେ ଆଠ ଦଶଟି ବଳା ଓ ନାକରେ ତିନୋଟି ବଳା ପିନ୍ଧିବାର ଦେଖାଯାଏ । ସେମାନଙ୍କ କେଶ ବିନ୍ୟାସରେ ମଧ୍ୟ ସ୍ୱତନ୍ତ୍ରତା ପରିଲକ୍ଷିତ ହୁଏ । ପରଜା ରମଣୀ ସେମାନଙ୍କର ଲମ୍ବା ଲମ୍ବା କେଶଗୁଡିକୁ କୁଣ୍ଡାଇ ପଛପଟକୁ ମୋଡି ଭିତରକୁ ପୂରାଇବାର ଦେଖାଯାଏ । ଏହାକୁ ଚେକା ଜୁଡା କୁହନ୍ତି । ଜୁଡା ନ ଫିଟିବା ପାଇଁ ଜୁଡାରେ ଆଠ ଦଶଟି କଣ୍ଟା ମାରନ୍ତି । ଏହାକୁ ଡାଲିଆ ଖୋସା ମଧ୍ୟ କୁହାଯାଏ । ହାତ ଆଙ୍ଗୁଠିଗୁଡିକରେ ରୁପା ଟଙ୍କା ବା ଆଠଣିରେ ନିର୍ମିତ ମୁଦି ପିନ୍ଧନ୍ତି । ସେମାନେ ବେକରେ ତିନିଚାରିଟା ରଙ୍ଗୀନ ମାଳି କିମ୍ବା ସୁଉକି ହାର ପିନ୍ଧନ୍ତି । କେତେକ ସ୍ତ୍ରୀ ଲୋକ ପିତଳ କିମ୍ବା ରୁପାରେ ନିର୍ମିତ ବଳା ଓ ଅଳଙ୍କାର ପିନ୍ଧିଥିବା ଦେଖାଯାଏ । ସେମାନେ ଏକ ସ୍ୱତନ୍ତ୍ର ଶୈଳୀରେ ଲୁଗା ପିନ୍ଧନ୍ତି । ପିନ୍ଧା ଲୁଗାଟିକୁ ପ୍ରାୟ ତିନି ଚାରି ପରସ୍ତ କରି ଅଣ୍ଟା ଠାରୁ ଆଣ୍ଠୁ ଯାଏ ଗୁଡାଇ ଗୋଟିଏ ପରସ୍ତ ପିଠିରେ ଗୁଡାଇ ଆଣି ବାମ କାନ୍ଧରେ ଗୋଟିଏ ଗଣ୍ଠି ପକାଇ କାନିକୁ ଅଟକାଇ ରଖନ୍ତି । ଏପରି ଲୁଗା ପିନ୍ଧିବା ଦ୍ୱାରା ନାଚିବାକୁ ସହଜ ହୁଏ ବୋଲି ସେମାନେ କୁହନ୍ତି । ପରଜା ରମଣୀ ପାଦରୁ ମୁଣ୍ଡ ଯାଏ ଚିତା କୁଟାଇବାର ଦେଖାଯାଏ ।

**ଜୀବନ ଓ ଜୀବିକା**

ପରଜାମାନେ ସାଧାରଣତଃ କୃଷିଜୀବୀ । ଧାନ, ହରଡ, ଲଙ୍କା ଆଦି ଶସ୍ୟ ଉତ୍ପନ୍ନ କରି ସେଗୁଡିକୁ ବିକ୍ରୟ କରି ବେଶ୍ ଦି ପଇସା ରୋଜଗାର କରନ୍ତି । ହାଟ ହେଉଛି ଏମାନଙ୍କ କାରବାରର ପ୍ରଧାନ ପେଣ୍ଠସ୍ଥଳୀ । ପରଜା ସ୍ତ୍ରୀ ଭଲ ବ୍ୟବସାୟ କରିପାରେ । ସେମାନେ ନିଜ ଉତ୍ପନ୍ନ ସାମଗ୍ରୀକୁ ହାଟକୁ ଆଣି ବିକ୍ରୟ କରି ସେଇ ପଇସାରେ ନିଜ ପରିବାର ପାଇଁ ଆବଶ୍ୟକ ପଡୁଥିବା ଲୁଣ, ତେଲ, କିରୋସିନ, ସାବୁନ ଆଦି ନିତ୍ୟ ବ୍ୟବହାର୍ଯ୍ୟ ପଦାର୍ଥ କିଣନ୍ତି । ହାଟବଜାରରେ ପରଜା ରମଣୀ ପିତଳ ଅଳଙ୍କାର, କାଚମାଳି, କାଠପାନିଆ, ଆରିସି ଓ ଶାଢୀ ଦୋକାନରେ ଅଧିକ ଭିଡ କରନ୍ତି । କେତେକ ପରଜା ରମଣୀ ପରିବା ପତ୍ର କ୍ରୟ କରି ନିଜେ ମଧ୍ୟ ଅନ୍ୟ ସାଧାରଣ ଲୋକଙ୍କୁ ବିକନ୍ତି । ପରଜାମାନେ ପରିଶ୍ରମୀ ହୋଇଥିବାରୁ ନିଜର ଉତ୍ପନ୍ନ ସାମଗ୍ରୀକୁ ପ୍ରାୟ ଦଶ ପନ୍ଦର କିଲୋମିଟର ଭାରରେ ବା ମୁଣ୍ଡେଇ କରି ବିକ୍ରି କରିବାକୁ ଯାଆନ୍ତି । ଜଙ୍ଗଲ ଜାତ ଦ୍ରବ୍ୟ ଯଥା ଝୁଣା, ଶାଳପତ୍ର, କନ୍ଦା, କାଠ, ଝାଡୁ, ମହୁଲ, ତେନ୍ତୁଳି ଆଦି ସଂଗ୍ରହ କରି ମଧ ସେମାନେ

ହାଟ ବଜାରରେ ବିକ୍ରୟ କରନ୍ତି । ଆମ୍ବ ମାସରେ ଆମ୍ବ, ପଣସ ସମୟରେ ପଣସ ଓ ଜାମୁକୋଳି ଆଦି ମଧ୍ୟ ସେମାନେ ସଂଗ୍ରହ କରି ବିକ୍ରୟ କରନ୍ତି ।

**ପର୍ବପର୍ବାଣି**

ପରଜାମାନଙ୍କ ସାଂସ୍କୃତିକ ଜୀବନର ମୁଖ୍ୟ ଆକର୍ଷଣ ହେଉଛି ପର୍ବପର୍ବାଣି ପାଳନ କରି ଆନନ୍ଦ ବିଭୋର ହୋଇ ଜୀବନକୁ ଉପଭୋଗ କରିବା । କାରଣ ନୃତ୍ୟଗୀତ ହେଉଛି ସେମାନଙ୍କ ଜୀବନର ହସ ଖୁସି ଆଣିବାର ମୁଖ୍ୟ ଆୟୁଧ । ଋତୁଚକ୍ର ଆବର୍ତ୍ତନରେ ସେମାନେ ବର୍ଷସାରା ବିଭିନ୍ନ ପର୍ବପର୍ବାଣି ପାଳନ କରିଥାନ୍ତି । ଆଷାଢ଼ ମାସରେ ଟାକୁ ପର୍ବ, ଶ୍ରୀବଣ ମାସରେ ଲଙ୍ଗଳଧୁଆ ପୁନେଇ ବା ବନ୍ଦାପଣା, ଭାଦ୍ରବ ମାସରେ ନାଚୁଣୀ ପର୍ବ, ନୂଆଖିଆ ପର୍ବ, କାର୍ତ୍ତିକ ମାସରେ ଦୀପାବଳୀର ଦୁଇ ଦିନ ପୂର୍ବରୁ ଦୀପାଳୀ ପର୍ବ, ମାଘ ମାସରେ ନାନ୍ଦୀ ପର୍ବ, ପୁଷ ମାସରେ ପୁଷ୍ ପର୍ବ ଏବଂ ଚଇତ ମାସରେ ଚଇତି ପର୍ବ ପାଳନ କରିଥାନ୍ତି ।

ଡଙ୍ଗର ଧାନ ପାଚିଲେ ପରଜାମାନେ ନୂଆଖିଆ ପର୍ବ ପାଳନ କରିଥାନ୍ତି । ଦିଶାରୀର କହିବାନୁସାରେ ଗ୍ରାମର ସବୁ ନୂଆଖିଆ କରିଥାନ୍ତି । ଆମର ଚିତଉ ଅମାବାସ୍ୟା ପରି ପରଜାମାନେ ଆମୁଷ୍ ପରବ ପାଳନ କରନ୍ତି । ମାଣ୍ଡିଆ ଚୂନାରେ ପିଠା କରି ନିଜ ଜମିରେ ପୂଜା କରି ସେହି ପିଠାକୁ ପୋତି ଦିଅନ୍ତି । ସେମାନଙ୍କର ବିଶ୍ୱାସ ଯେ ଏପରି କଲେ ଆଉ ଧାନ ଗଛରେ ପୋକ ଲାଗେ ନାହିଁ । ଆମର ଗହ୍ମାପୁନେଇଁ ପର୍ବ ପରି ସେମାନେ ଲଙ୍ଗଳ ଧୁଆପର୍ବ ପାଳନ କରନ୍ତି । ଏହି ଦିନ ପରଜା ଚାଷୀମାନେ ବଳଦମାନଙ୍କୁ ଗାଧୋଇ ପାଧୋଇ ଦେଇ ସେମାନଙ୍କ ଦେହରେ ଫୁଲ ଓ ସିନ୍ଦୂର ଲଗାଇ ପୂଜା କରନ୍ତି । ସେଦିନ ଏମାନେ ବଳଦମାନଙ୍କୁ ପେଟପୂରା ଖାଇବାକୁ ଦେବା ସହିତ ହଳ ଲଙ୍ଗଳକୁ ମଧ୍ୟ ପୂଜା କରିଥାନ୍ତି ।

ଦୀପାବଳୀ ମଧ୍ୟ ସେମାନଙ୍କର ଏକ ମୁଖ୍ୟ ପର୍ବ । ଏହିଦିନ ସେମାନେ ଗାଈଗୋରୁମାନଙ୍କୁ ପୂଜା କରନ୍ତି । ନୂଆ ଟୋକେଇ ଆଣି ସେଥିରେ ଗାଈଗୋରୁଙ୍କୁ ଖାଇବାକୁ ଦିଆଯାଏ । ମାତ୍ର ଏମାନେ ଦୀପାବଳି ପର୍ବ ଦୀପାବଳିର ଦୁଇ ଦିନ ପରେ ପାଳନ କରିବା ଦେଖାଯାଏ ।

ନାନ୍ଦୀ ପର୍ବ ମାଘ ମାସ ପୂର୍ଣ୍ଣମୀର ଏକ ସପ୍ତାହ ଆଗରୁ ପାଳନ କରାଯାଏ । ଏହା ଏକ କୃଷିଭିତ୍ତିକ ପର୍ବ ଓ ଏହି ପର୍ବରେ ଗୃହ ଦେବତା ଓ ଗ୍ରାମର ମୁଖ୍ୟ ଦେବୀଙ୍କୁ ପୂଜାର୍ଚ୍ଚନା କରାଯାଏ । ଏହା ଏକ କୃଷିଭିତ୍ତିକ ପର୍ବ । ଭଲ ଚାଷବାସ ଏବଂ ଗାଈଗୋରୁ ମଣିଷ ସମସ୍ତେ ସୁସ୍ଥ ସବଳ ରହିବା ପାଇଁ ଏହି ପୂଜା କରା ଯାଇଥାଏ ।

ପୁଷ୍ ପର୍ବ ସେମାନଙ୍କର ଏକ ମୁଖ୍ୟ ପର୍ବ । ସେଦିନ ପରଜାମାନେ ଶିମ୍ବ ଫଳକୁ ପୂଜା କରନ୍ତି । କାରଣ ଏହି ସମୟରେ ଶିମ୍ବ ଫଳିଥାଏ । ଏହିଦିନ ବେରଣମୁଣ୍ଡା ନିକଟରେ ଅଗ୍ନି ଜଳାଯାଏ । ସେଠାରେ ଧାଙ୍ଗଡାମାନେ ସେମାନଙ୍କର ପାରମ୍ପରିକ ବାଦ୍ୟ ବଜାଇଥାନ୍ତି । ଧାଙ୍ଗିଡୀମାନେ ଏକତ୍ର ହୋଇ ସେମାନଙ୍କ ପାରମ୍ପରିକ ସର୍ପ ନୃତ୍ୟ ଓ ଚେକା ନୃତ୍ୟ ପରିବେଷଣ କରିଥାଆନ୍ତ । ନାଚଗୀତ ସରିଲା ପରେ ସମସ୍ତେ ପୁଷ୍ ଚୋର କାର୍ଯ୍ୟରେ ଲାଗିଯାଆନ୍ତି । ପୁଷ୍ ଚୋର ହେଉଛି – ସମସ୍ତେ ଦଳ ଦଳ ହୋଇ ବିଭିନ୍ନ ଦିଗକୁ ଯାଇ ଲୋକମାନଙ୍କ ବାଡି ବଗିଚାରୁ ଫଳମୂଳ ଚୋରି କରିବା । ଫଳମୂଳ ଚୋରି କରି ସାରି ସମସ୍ତେ ପୁନର୍ବାର ବେରଣମୁଣ୍ଡା ନିକଟରେ ଉପସ୍ଥିତ ହୁଅନ୍ତି । । ଫଳମୂଳ ଚୋରି କରି ସାରି ସମସ୍ତେ ପୁନର୍ବାର ବେରଣମୁଣ୍ଡା ନିକଟରେ ଉପସ୍ଥିତ ହୁଅନ୍ତି । ସେଠାରେ ଜଳୁଥିବା ନିଆଁରେ ଫଳମୂଳ ପୋଡି ତାକୁ ଖାଆନ୍ତି । ପର୍ବର ଶେଷ ଦିନ ଚାନ୍ଦା କରାଯାଇ ଭୋଜିଭାତ କରାଯାଏ ।

କୋରାପୁଟରେ ଏକ ଲୋକୋକ୍ତି ଅଛି ଯେ ‘‘ରାଜାର ଦଶର ପରଜାର ଚଇତି’’ । ପୂର୍ବେ ଜୟପୁର ରାଜ ଦରବାରରେ ଦଶରା ପର୍ବ ଆନନ୍ଦ ଉଲ୍ଲାସ ମଧ୍ୟରେ ପାଳନ କରାଯାଉଥିଲା । ସବୁ ପ୍ରଜାମାନେ ଏଥିରେ ଯୋଗ ଦେଉଥିଲେ । ରାଜାଙ୍କୁ ପ୍ରତ୍ୟେକ ଗାଁ ମୁଖିଆ

ଭେଟି ପ୍ରଦାନ କରୁଥିଲେ । ଦଶରା ଶେଷରେ ଗ୍ରାମ ନାୟକ ମୁଣ୍ଡରେ ରାଜା ଶାଢୀ ବାନ୍ଧି ସେମାନଙ୍କୁ ଉତ୍ସାହିତ କରୁଥିଲେ । ସେହିପରି ଚଇତି ପର୍ବ ପାଇ ରାଜା ପ୍ରଜାମାନଙ୍କୁ ସାହାଯ୍ୟ ସହଯୋଗ କରନ୍ତି । ଚଇତି ପର୍ବକୁ ପରଜାମାନେ ମାସେ କାଳ ନୃତ୍ୟଗୀତ ଓ ମଉଜମଜଲିସ୍‌ରେ ପାଳନ କରନ୍ତି । ଦିନରେ ଶିକାର ଓ ରାତିରେ ନାଚ ଗୀତରେ ସବୁ ପରଜା ଗ୍ରାମ ଝଙ୍କୃତ ହୋଇଉଠେ । ଚଇତି ପର୍ବର ଶେଷ ଦିନ ସମସ୍ତେ କୁଲାରେ ଶସ୍ୟ ଧରି ନିଶାଣମୁଣ୍ଡା ନିକଟକୁ ଯାଆନ୍ତି । ସମସ୍ତଙ୍କଠାରୁ ଶସ୍ୟ ସଂଗ୍ରହ କରି ଜାନୀ ମନ୍ତ୍ର ପାଠ ପୂର୍ବକ ଉକ୍ତ ଶସ୍ୟ ସବୁକୁ ଚାରିଆଡକୁ ଫିଙ୍ଗେ । ଲୋକମାନେ ଖାଲି କୁଲା ଦେଖାଇ ପଡୁଥିବା ଶସ୍ୟ ସବୁକୁ ସଂଗ୍ରହ କରିବାକୁ ଚେଷ୍ଟା କରନ୍ତି । ଅଳ୍ପ ବହୁତ କିଛି କିଛି ଶସ୍ୟ ମିଶାଇ ସେମାନେ ଏହାକୁ ବିହନ ରୂପେ ବ୍ୟବହାର କରନ୍ତି । ଚଇତିମାସ ଆରମ୍ଭରୁ ପରଜା ପୁରୁଷ ବା ଧାଙ୍ଗଡା ତା ସ୍ତ୍ରୀ ବା ଧାଙ୍ଗିଡୀକୁ କୌଣସି କାର୍ଯ୍ୟ କରିବାକୁ ଦିଏ ନାହିଁ । ସବୁ କାମ ନିଜେ କରିଥାଏ । ଚଇତି ପୂର୍ଣ୍ଣମୀ ଦିନ ସେମାନେ ନିଜର ଆରାଧ୍ୟ ଦେବତାଙ୍କୁ ଆମ୍ବ ଅର୍ପଣ କରାଯିବା ପରେ ଆମ୍ବ ଖାଇଥାନ୍ତି । ଏହାକୁ ମଧ୍ୟ ଆମ୍ବ ଖୁଆ ପର୍ବ କୁହାଯାଏ । ତାପରେ ଆରମ୍ଭ ହୁଏ ଶିକାର ପର୍ବ । ଗ୍ରାମର ସମସ୍ତ ପୁରୁଷ ଢୋଲ ମହୁରୀ ବଜାଇ ଜଙ୍ଗଲକୁ ଶିକାର ପାଇଁ ବାହାରି ଯାଆନ୍ତି । କୌଣସି ଶିକାର ନ ମିଳିବା ଯାଏଁ ସେମାନେ ଗାଆଁକୁ ଫେରନ୍ତି ନାହିଁ । ଶିକାର ମିଳିଲା ପରେ ସେମାନେ ଆନନ୍ଦ ଉଲ୍ଲାସରେ ବାଜା ବଜାଇ ଗ୍ରାମକୁ ଫେରି ଆସନ୍ତି । ଏହି ସମୟରେ ପରଜା ସ୍ତ୍ରୀମାନେ ଗ୍ରାମ ମୁଣ୍ଡରେ ନୃତ୍ୟକରି ପୁରୁଷମାନଙ୍କୁ ଅପେକ୍ଷା କରି ରହନ୍ତି । ପୁରୁଷମାନେ ଫେରିବା ପରେ ସେମାନଙ୍କୁ ନୃତ୍ୟ କରି ଗାଆଁ ଭିତରକୁ ପାଛୋଟି ନିଅନ୍ତି । ଗାଆଁରେ ଶିକାରର ମାଂସକୁ ସମସ୍ତଙ୍କୁ ବାଣ୍ଟି ଦିଆଯାଏ କିମ୍ବା ଏକତ୍ର ଭୋଜି କରି ଖିଆଯାଏ । ସମ୍ପ୍ରତି ଜଙ୍ଗଲ ଲୋପ ପାଇ ଯାଇଥିବାରୁ ଆଉ ଶିକାର ମିଳୁନାହିଁ । ଏଣୁ ସେମାନେ ଏହି ପର୍ବକୁ ଭିନ୍ନ ଭାବରେ ପାଳନ କରୁଥିବା ଦେଖିବାକୁ ମିଳେ ।

ନୃତ୍ୟଗୀତ ପରଜା ସମାଜର ପ୍ରାଣ । ବର୍ଷା ସମୟରୁ ଛାଡି ବର୍ଷ ସାରା ଏମାନେ ନୃତ୍ୟ ଗୀତରେ ମଜି ରହନ୍ତି । କାମ କରିବା ସମୟରେ, ରାସ୍ତା ଚାଲିଲାବେଳେ ଆପେ ଆପେ ସେମାନଙ୍କ ପାଟିରୁ ଗୀତ ବାହାରି ଆସେ । ପ୍ରତ୍ୟେକ ପରଜା ରମଣୀ ଜଣେ ଜଣେ ଆଶୁ କବୟିତ୍ରୀ । ନୃତ୍ୟ ଗୀତ ହିଁ ସେମାନଙ୍କର ମନୋରଞ୍ଜନର ମୁଖ୍ୟ ମାଧ୍ୟମ । ପର୍ବପର୍ବାଣି ସମୟରେ ଏହାର ସ୍ୱରୂପ ଆହୁରି ନିଆରା । ନୂଆ ଶାଢୀ ଓ ମୁଣ୍ଡରେ ଫୁଲ ବାନ୍ଧି ଯୁବତୀମାନେ ନୃତ୍ୟ କରନ୍ତି । ସେମାନଙ୍କର ''ଚକା ନୃତ୍ୟ'' ସବୁଠାରୁ ଶ୍ରେଷ୍ଠ ନୃତ୍ୟ । ଏହି ନୃତ୍ୟରେ ଏକାଥରେ ତିରିଶ ଚାଳିଶ ଜଣ ଧାଙ୍ଗିଡୀ ପରସ୍ପରର ଅଣ୍ଟାରେ ହାତ ଛନ୍ଦି ଗୀତ ଗାଇ ନୃତ୍ୟ କରନ୍ତି । ନୃତ୍ୟରତା ଧାଙ୍ଗିଡୀ ପରସ୍ପରର ଅଣ୍ଟାରେ ହାତ ଛନ୍ଦି ଗୀତ ଗାଇ ନୃତ୍ୟ କରନ୍ତି । ନୃତ୍ୟରତା ଧାଙ୍ଗିଡୀମାନଙ୍କ ମଝିରେ ଦୁଇ ତିନିଜଣ ଧାଙ୍ଗଡା ଡୁଙ୍ଗଡୁଙ୍ଗା ଆଦି ବାଦ୍ୟ ଗୀତ ସହିତ ତାଳ ରଖି ବଜାନ୍ତି । ଚଇତି ପର୍ବ ସମୟରେ ଏହି ନୃତ୍ୟ ମାସାଧିକ କାଳ ଚାଲେ ।

### ରୀତିନୀତି ଓ ଲୋକବିଶ୍ୱାସ

ପରାଜାମାନେ ଭୂତପ୍ରେତରେ ବିଶ୍ୱାସ କରନ୍ତି । ସେମାନଙ୍କ ମତରେ ରାତି ଦିନ, ସନ୍ଧ୍ୟା ସକାଳ ସବୁର କର୍ତ୍ତା ହେଉଛନ୍ତି ଗୋଟିଏ ଗୋଟିଏ ଭୂତ ବା ଡୁମା । କିଏ ସୌଭାଗ୍ୟର ଡୁମା ତ ଆଉ କିଏ ଖରାବର୍ଷାର ଡୁମା । ମଣିଷ ମଲା ପରେ ତାର ଡୁମା ଅନ୍ୟତ୍ର ବିବାହ କରେ । ପରଜାମାନେ ବିଶ୍ୱାସ କରନ୍ତି ଯେ ତାଙ୍କର ଦେବତା ଓ ଦେବୀମାନେ ଘଞ୍ଚ ବଣଜଙ୍ଗଲରେ ବସବାସ କରନ୍ତି ।

ମେଘୁଆ ପାଗ ହୋଇ ସୁଲୁସୁଲିଆ ପବନ ବହିଲେ, ସେମାନେ 'ବାଘେଇ ପାର' ବୋଲି କହିଥାନ୍ତି । ଏପରି ପାଗ ହେଲେ ଜଙ୍ଗଲରେ ବାଘ ମାତି କାହାକୁ ଖାଇଦିଏ ବୋଲି ସେମାନେ ବିଶ୍ୱାସ କରନ୍ତି ।

କୌଣସି ପରଜା ରମଣୀକୁ ବାଘ ଖାଇଲେ ତା'ର ସ୍ୱାମୀ ଆଉ କାହାରିକୁ ବିବାହ କରିପାରେ ନାହିଁ, ଯଦିଓ

ପରଜା ସମ୍ପ୍ରଦାୟରେ ପୁନଃବିବାହ ପ୍ରଥା ପ୍ରଚଳିତ ଥାଏ । ଏପରି ସ୍ଥଳେ ଉକ୍ତ ପୁରୁଷଟି କେବଳ କୌଣସି ସ୍ତ୍ରୀର ସ୍ୱାମୀଙ୍କୁ ବାଘ ଖାଇଥିଲେ କେବଳ ସେହି ସ୍ତ୍ରୀକୁ ବିବାହ କରିବାର ପ୍ରଥା ପ୍ରଚଳିତ ଅଛି ।

ସୂର୍ଯ୍ୟ ଓ ଚନ୍ଦ୍ରଙ୍କୁ ପରଜାମାନେ ଧର୍ମଦେବତା ବୋଲି ମାନନ୍ତି ।

ପରଜାମାନେ କେବେ ମିଛ କୁହନ୍ତି ନାହିଁ । ପ୍ରତ୍ୟେକ କଥାରେ ତଳେ ଧରତୀ ଉପରେ ଧରମ କହି ନିଜେ ସତ୍ୟ କହୁଛନ୍ତି ବୋଲି ଶପଥ କରନ୍ତି । ଅନ୍ୟକୁ ଗାଳି ଦେଲେ ''ତୋର ହାତ ଛିଣ୍ଡି ଯିବ, ଗୋ ପୋ ମରି ଯିବେ, ଆଖି ଫୁ ଫୁଟିଯିବ ବୋଲି କହି ଗାଳି ଦେଇଥାନ୍ତି ।''

**ବିବାହ**

ପରଜା ସମ୍ପ୍ରଦାୟରେ ଅନେକ ପ୍ରକାର ବିବାହ ପ୍ରଚଳିତ । ତନ୍ମଧ୍ୟରେ ମଗା ବିବାହ, ଉଦୁଲିଆ ବିବାହ, ଝିଙ୍କା ବିବାହ, ପଇସାମୁଣି ବିବାହ ଆଦିରେ କନ୍ୟାମୂଲ ନିଆଯାଏ । ଏହି କନ୍ୟାମୂଲକୁ ଝୋଲା, ଜଲା ବା ପଣିଟଙ୍କା କୁହାଯାଏ । ମଗା ବିବାହରେ ମୁରବୀମାନେ ପ୍ରସ୍ତାବ ପକାଇ ବିବାହ ସ୍ଥିର କରନ୍ତି । ଯେଉଁଠାରେ ପିତାମାତାଙ୍କ ଇଚ୍ଛା ନ ଥାଏ ସେଠାରେ ଝିଙ୍କା ବିବାହ ଅନୁଷ୍ଠିତ ହୋଇଥାଏ । ଏଥିରେ ବର ଓ କନ୍ୟା ମଧ୍ୟରେ ଜଣେ ମଧ୍ୟସ୍ଥି ଯୋଗସୂତ୍ର ସ୍ଥାପନ କରେ । ଯାତ୍ରା, ମେଳା ବା ହାଟକୁ ବର ତାର ସାଙ୍ଗମାନଙ୍କ ସହିତ ଯାଇ ପ୍ରଥମେ ମନୋନୀତ କନ୍ୟାର ହାତକୁ ଅଳ୍ପ ଟାଣି ଦିଏ । ତା ପରେ ବରର ସାଙ୍ଗମାନେ କନ୍ୟାକୁ ଟାଣି ଟାଣି ନେଇ ଆସନ୍ତି । ଏହି ସମୟରେ ଟାଣୁଥିବା ସାଙ୍ଗମାନଙ୍କୁ କନ୍ୟା ଯଦି ମାଡ ମାରେ, ତେବେ ଏଥରେ ତା'ର ସମ୍ମତି ରହିଛି ବୋଲି ଧରି ନିଆଯାଏ । ପଇସାମୁଣି ବିବାହରେ କନ୍ୟା ତାର ମନୋନୀତ ବର ଘରେ ହଠାତ୍ ପହଞ୍ଚି ବରର ମାଆକୁ ମାଣ୍ଡିଆ ଜାଉ ଖାଇବାକୁ ମାଗେ । ବରର ମାଆ ଧାଙ୍ଗିଡୀ ବା କନ୍ୟାର ଉଦ୍ଦେଶ୍ୟ ବୁଝିପାରି ତାକୁ ଗୋଟିଏ ପତ୍ର ଠୋଲାରେ ମାଣ୍ଡିଆ ଜାଉ ଦିଏ । ଯୁବତୀଟି ଜାଉ ଖାଇ ଯଦି ଠୋଲାଟିକୁ ମାଟି ହାଣ୍ଡି ତଳେ ରଖେ ତେବେ ପୁଅର ମାଆ ତାକୁ ବୋହୂ ଭାବେ ଗ୍ରହଣ କରି ତାକୁ ଗୋଟିଏ ମାଟି କଳସୀ ଦିଏ । ଯୁବତୀଟି ମାଟି କଳସୀରେ ପାଣି ଆଣି ଗରମ କରେ ଓ ତାର ଭାବୀ ସ୍ୱାମୀ ଘରକୁ ଆସିବା ମାତ୍ରେ ତାକୁ ତେଲ ହଳଦୀ ଲଗାଇ ଗାଧୋଇ ଦିଏ । ଏହାପରେ ସେମାନଙ୍କର ପାରମ୍ପରିକ ପ୍ରଥା ଅନୁଯାୟୀ ବିବାହ ସମ୍ପନ୍ନ ହୁଏ । ଘରଜୋଇଁଆ ବିବାହରେ ବିବାହ ପରେ ପୁଅ କନ୍ୟା ଘରେ ରୁହେ । ବିଧବା ବିବାହ ଓ ଛାଡପତ୍ର ପ୍ରଥା ପରଜା ସମ୍ପ୍ରଦାୟରେ ମଧ୍ୟ ଚଳେ । ଗୋଟିଏ ଗାଆଁର ପୁଅଝିଅ ଏବଂ ଗୋଟିଏ ଗୋତ୍ରର ପୁଅ ଝିଅ ବିବାହ କରିପାରନ୍ତି ନାହିଁ ।

**ଜନ୍ମ ମୃତ୍ୟୁ**

ପରଜା ରମଣୀ ଗର୍ଭବତୀ ହେଲେ ତାର ସ୍ୱାମୀର ନିର୍ଦ୍ଦେଶରେ ସେ ଆଉ କୌଣସି କାର୍ଯ୍ୟ କରେ ନାହିଁ । ଗର୍ଭବତୀ ମହିଳାମାନେ ସୂର୍ଯ୍ୟପରାଗ ଓ ଚନ୍ଦ୍ରଗ୍ରହଣ ସମୟରେ ଘରୁ ପଦାକୁ ବାହାରନ୍ତି ନାହିଁ । ଏହି ସମୟରେ ଗର୍ଭବତୀ ମହିଳା ପଦାକୁ ଆସିଲେ ଜନ୍ମିତ ପିଲା ଦେହରେ କୌଣସି ଖୁଣ ରହିଯାଏ ବୋଲି ସେମାନେ ବିଶ୍ୱାସ କରନ୍ତି । ସନ୍ତାନ ଜନ୍ମ ଦେଇ ସାରିଲା ପରେ ପରଜା ରମଣୀ ଏକୋଇଶ ଦିନ ଯାଏଁ କୌଣସି କାମ କରେ ନାହିଁ । ଦିସାରୀର କହିବାନୁସାରେ ପରଜା ସନ୍ତାନର ନାମକରଣ ଉତ୍ସବ ଅନୁଷ୍ଠିତ ହୁଏ । କୌଣସି ସ୍ତ୍ରୀର ବାରମ୍ବାର ସନ୍ତାନ ମୃତ୍ୟୁବରଣ କରୁଥିଲେ ସେମାନେ ମାନସିକ କରି ଡୁମା ଦେବତାଙ୍କୁ ପୂଜାର୍ଚ୍ଚନା କରନ୍ତି ।

ସନ୍ତାନ ଜନ୍ମର ନଅ ଦିନ ଯାଏ ମାଆକୁ ଭୂଇଁରେ ଶୋଇବାକୁ ପଡେ । ଦିଶାରୀ ୨୧ ଦିନ ଚାଉଳ ଗଣନା କରି ସନ୍ତାନଟିର ନାମକରଣ କରିଥାଏ । ଏମାନଙ୍କର ନାମକରଣ ମୁଖ୍ୟତଃ ବାରକୁ ନେଇ କରାଯାଏ । ପରଜାମାନେ ବିଶ୍ୱାସ କରନ୍ତି ଯେ ସେମାନଙ୍କ ପୂର୍ବପୁରୁଷ ପୁଅ ବା ଝିଅ ଭାବେ ତାଙ୍କ ପରିବାରରେ ଜନ୍ମ ନେଇଛନ୍ତି ।

କୌଣସି ଲୋକ ମୃତ୍ୟୁବରଣ କଲେ ସେମାନେ ତିନି ଦିନରେ ପିତା ଓ ଦଶ ଦିନରେ ଦଶାହ ପାଳନ

କରନ୍ତି । ମୃତ ଆତ୍ମାକୁ ଏମାନେ ''ଡୁମା'' କୁହନ୍ତି । ମୃତ ବ୍ୟକ୍ତିର ସ୍ମୃତିକୁ ସାଇତି ରଖିବା ପାଇଁ ଗ୍ରାମ ଶେଷ ମୁଣ୍ଡରେ ପଥର ଖଣ୍ଡେ ପୋତି ତା ଉପରେ ଖଣ୍ଡେ କପଡା ଲଗାଇ ଦେଇଥାନ୍ତି । ପ୍ରତିବର୍ଷ ଉତ୍ପାଦିତ ଫସଲ ଓ ପନିପରିବା ପ୍ରଥମେ ପୂର୍ବପୁରୁଷଙ୍କୁ ଅର୍ପଣ କରିବାର ବିଧି ପରଜାମାନଙ୍କ ମଧ୍ୟରେ ପ୍ରଚଳିତ । ମୃତ ବ୍ୟକ୍ତିର ଶବକୁ ସେମାନେ ଅନ୍ୟ ଆଦିବାସୀ ଗୋଷ୍ଠୀଙ୍କ ପରି ପୋତି ଦେଇଥାନ୍ତି । ମାତ୍ର, ବସନ୍ତ ହଇଜା ବା ଅନ୍ୟ ମାରାତ୍ମକ ରୋଗରେ କେହି ମୃତ୍ୟୁବରଣ କଲେ ସେମାନଙ୍କ ଶବକୁ ପୋଡି ଦିଆଯାଏ । ମୃତ୍ୟୁପରେ ଦିଶାରୀ ଯମ, ଶନି ଓ ଭୂତ (ଡୁମା)ର ଚିତ୍ର ଆଙ୍କି ତିନୋଟି ଶସ୍ୟ ସେହି ଚିତ୍ର ଉପରେ ରଖେ । ତା'ପରେ ସମସ୍ତ ଚିତ୍ରକୁ ଗୋଟିଏ ମାଟି ପାତ୍ରରେ ଢାଙ୍କି ରଖି ଡୁମା ଦୂର ପାଇଁ ନିଜେ ସେ ମାଟି ପାତ୍ରକୁ ଭାଙ୍ଗି ଦିଏ ।

**ଶେଷ କଥା**

ପରଜାମାନେ ସରଳ ଓ ନିଷ୍କପଟ । ଶିକ୍ଷା ଦୀକ୍ଷାଠାରୁ ଦୂରରେ ଥଲେ ମଧ୍ୟ ସେମାନେ ଖୁବ୍ ସ୍ନେହୀ, ଅମାୟିକ ଓ ଅତିଥି ପରାୟଣ । ଛନ୍ଦ କପଟ ସେମାନଙ୍କ ହୃଦୟରେ ସ୍ଥାନ ପାଏ ନାହିଁ । ବିଶ୍ୱାସଘାତକତା ଓ ପରଶ୍ରୀକାତରତା ଗୁଣ ସେମାନଙ୍କ ମନକୁ ସ୍ପର୍ଶ କରେ ନାହିଁ । ନିଜ ପ୍ରାଣକୁ ନ ବାଧିଲା ପର୍ଯ୍ୟନ୍ତ ସେମାନେ ଅନ୍ୟ ଆଦିବାସୀ ଗୋଷ୍ଠୀଙ୍କ ପରି ପ୍ରତିହିଂସା ପରାୟଣ ହୁଅନ୍ତି ନାହିଁ । ପର୍ବପର୍ବାଣି ସମୟରେ ନିଜ କଷ୍ଟ ଅର୍ଜିତ ଖାଦ୍ୟଶସ୍ୟକୁ ସାହୁକାରମାନଙ୍କ ନିକଟରେ କମ୍ ମୂଲ୍ୟରେ ବିକ୍ରି କରି ମଉଜ ମଜଲିସ୍ କରନ୍ତି । ଅନେକ ସମୟରେ ଋଣଗ୍ରସ୍ତ ହୋଇ ଦରିଦ୍ର ଭାବରେ ଜୀବନ ଅତିବାହିତ କରନ୍ତି । ତା' ସତ୍ତ୍ୱେ ସେମାନେ ସର୍ବଦା ଆନନ୍ଦିତ ଥାଆନ୍ତି ।

ଶିକ୍ଷା ଓ ସଭ୍ୟତାର ବିକାଶ ଫଳରେ ସବୁ ଗୋଷ୍ଠୀ ଓ ସମ୍ପ୍ରଦାୟଙ୍କ ସାଂସ୍କୃତିକ ଚଳଣିରେ ଅନେକ ପରିବର୍ତ୍ତନ ଘଟିବା ପରି ପରଜାମାନଙ୍କ ଚଳଣିରେ ମଧ୍ୟ ପରିବର୍ତ୍ତନ ଘଟିଛି । ସ୍ୱାଧୀନତା ପରବର୍ତ୍ତୀ ସମୟରେ ସରକାରଙ୍କ ବିଭିନ୍ନ ଯୋଜନା ଓ ଶିକ୍ଷା ବିକାଶ ଫଳରେ ପରଜାମାନେ ଆଧୁନିକ ସଭ୍ୟତାର ନିକଟବର୍ତ୍ତୀ ହୋଇ ନିଜର ପାରମ୍ପରିକ ଜୀବନ ନିର୍ବାହ ଶୈଳୀରେ ଅନେକ ପରିବର୍ତ୍ତନ ଘଟାଇଛନ୍ତି । ସହର ସଭ୍ୟତାର ନିକଟବର୍ତ୍ତୀ ଅଞ୍ଚଳରେ ବସବାସ କରୁଥବା ତଥା ଚାକିରୀବାକିରୀ କରୁଥିବା ପରଜାମାନେ ସେମାନଙ୍କର ଜୀବନ ନିର୍ବାହ ଶୈଳୀରେ ପରିବର୍ତ୍ତନ ଲକ୍ଷ୍ୟ କରାଯାଉଥିଲେ ହେଁ ସହରଠାରୁ ଦୂରରେ ରହୁଥିବା ପରଜାମାନଙ୍କର କୌଣସି ପରିବର୍ତ୍ତନ ଘଟିନାହିଁ । ପରଜାମାନଙ୍କର ପାରମ୍ପରିକ ନୃତ୍ୟ, ଗୀତ, ବାଦ୍ୟ, ପର୍ବପର୍ବାଣି ପାଳନ, ବେଶ ପୋଷାକରେ ଆଉ ମୌଳିକତା ଖୋଜିବା ସମ୍ଭବ ହେଉନାହିଁ । ଆଧୁନିକ ସଭ୍ୟତାର ପ୍ରଭାବରେ ସେ ସବୁ ଲୋପ ପାଇଯିବା ପୂର୍ବରୁ ସେଗୁଡିକର ସଂଗ୍ରହ ଓ ସଂରକ୍ଷଣର ଯଥେଷ୍ଟ ଆବଶ୍ୟକତା ରହିଛି । ଏଥିପାଇଁ ସ୍ୱେଚ୍ଛାସେବୀ ଅନୁଷ୍ଠାନ, ଶିକ୍ଷାବିତ୍ ତଥା ଗବେଷକମାନେ ଆଗେଇ ଆସିବାର ଆବଶ୍ୟକତା ରହିଛି ।

ଗ୍ରାମ–ପୋଷ୍ଟ–ରାଜସୁନାଖଳା
ଖୋର୍ଦ୍ଧା–୭୫୨୦୬୫



# ଦୋଳ ଓ ଗୋବିନ୍ଦ

କାଞ୍ଚନାରାୟଣ ମହାନ୍ତି

ଭକ୍ତକବି ବନମାଳୀ ୧୭୫୪ ମସିହାରେ ଜଗନ୍ନାଥଙ୍କର ଅନ୍ୟତମ ଚଳନ୍ତି ବିଗ୍ରହ ଦୋଳଗୋବିନ୍ଦଙ୍କୁ ମଣି ବିମାନରେ ଦର୍ଶନ କରି ଦୋଳ ଉତ୍ସବରେ ମଣି ଯେ ଗୋବିନ୍ଦଙ୍କୁ ଚମତ୍କାର ମାନୁଛି, ତାହାକୁ ଅତି ସୁଚାରୁ ଶବ୍ଦମାଳିରେ ବର୍ଣ୍ଣନା କରିଛନ୍ତି ।

ଶ୍ରୀମନ୍ଦିରର ପ୍ରଚଳିତ ବିଭିନ୍ନ ଉତ୍ସବ, ବେଶ ଓ ଉପଚାର ବହୁ ପ୍ରାଚୀନ । ତେବେ ଶ୍ରୀଜଗନ୍ନାଥ ଯେ କୃଷ୍ଣ, ସେଇ ଭାବରେ ବୈଷ୍ଣବୋପାସକଗଣ ଅନ୍ୟାନ୍ୟ ସାମ୍ବତ୍ସରିକ ଉତ୍ସବାଦି ସହ ଦୋଳ ଉତ୍ସବକୁ ଶ୍ରୀମନ୍ଦିରର ଗୁଣ୍ଡିଚା ଯାତ୍ରା ପରି ଅତି ଭାବ ଗଦ୍‌ଗଦ୍ ହୋଇ ଉପଭୋଗ କରିଥାନ୍ତି ।

ଶ୍ରୀଗୁଣ୍ଡିଚାରେ ପ୍ରଭୁ ମନ୍ଦିର ଛାଡ଼ି ମାଉସୀ ମା' ଘରକୁ ପୋଡ଼ପିଠା ଖାଇବାକୁ ଯିବା ପଛରେ ରହିଛି ଭକ୍ତମାନଙ୍କୁ ଦର୍ଶନ ଦେଇ ଭକ୍ତମାନଙ୍କ ମଧ୍ୟରେ ସାଧାରଣ ମଣିଷ ପରି ଏକାକାର ହୋଇଯିବାର ତାତ୍ତ୍ୱିକ ଆଦର୍ଶ । ତତ୍‌ସଦୃଶ ଦୋଳ ଉତ୍ସବରେ ଶ୍ରୀରାଧାମାଧବ, ଏଇ ଫଗୁଣ ମାସରେ ଶୁକ୍ଳଦଶମୀ ତିଥିଠାରୁ ପୂର୍ଣ୍ଣମୀ ପର୍ଯ୍ୟନ୍ତ ଦୋଳମେଳଣ ପାଇଁ ସିଂହାସନ ଛାଡ଼ି ବିମାନରେ ବିଭିନ୍ନ ମେଳଣ ସ୍ଥଳୀକୁ ନିମନ୍ତ୍ରିତ ହୋଇଯାଆନ୍ତି, ଯାହାକି ଏକ ପାରମ୍ପରିକ ଧାରା ଭାବେ ପ୍ରଚଳିତ । ପ୍ରଚଳିତ ଦୋଳମେଳଣ ବା ଉତ୍ସବ ପ୍ରଥମେ ଶ୍ରୀମନ୍ଦିରରୁ ହିଁ ରାଷ୍ଟ୍ର ।

ସକଳ ଆଧ୍ୟାତ୍ମିକ ଲୀଳାର ସାଂସ୍କୃତିକ ମୂଳପୀଠ ଶ୍ରୀମନ୍ଦିରରୁ ଏହି ଅପୂର୍ବ ଶ୍ରୀରାଧାକୃଷ୍ଣ ଲୀଳାମାଧୁରୀର ସରସତାରେ ମଜ୍ଜି ଭକ୍ତଗଣ ରସରାଜ ବୃନ୍ଦାବନଚନ୍ଦ୍ରଙ୍କୁ ଭାରତ ତଥା ଓଡ଼ିଶାର ପୁରପଲ୍ଲୀରେ ଯାଦବକୁଳର କୁଳଚନ୍ଦ୍ରମା ତଥା ସ୍ୱୟଂ ଜଗନ୍ନାଥଙ୍କ ଭଳି, ରଥରେ ନ ଆସି ବିମାନରେ ବିଜେ କରି ଆକୁଳ ଭକ୍ତିର ଭାବ ତରଙ୍ଗରେ ନିଜକୁ ଏକାକାର କରିନିଅନ୍ତି ପାଞ୍ଚଦିନ ପର୍ଯ୍ୟନ୍ତ । ଅର୍ଥାତ୍ ଦୋଳପୂର୍ଣ୍ଣିମା ତିଥିରେ ଗ୍ରାମ ବା ପୁରପଲ୍ଲୀରେ ଥିବା ଦୋଳବେଦୀରେ ଝୁଲଣ ପର୍ବ ପରେ ମେଳଣ ଶେଷ ହେଉଥିଲା କିନ୍ତୁ ସମୟକ୍ରମେ ଭକ୍ତର ଐକାନ୍ତିକ ଏବଂ ଏକନିଷ୍ଠ ଭାବ ଫଳରେ ଏହି ଦୋଳୋତ୍ସବ ସ୍ଥଳବିଶେଷରେ ପୂର୍ଣ୍ଣିମା ପରେ ଆଉ ୫ରୁ ୭ଦିନ ଅଧିକ ପାଳିତ ହୋଇ ଆସୁଅଛି, ଯାହାକୁ ପଞ୍ଚଦୋଳ କୁହାଯାଏ । ଓଡ଼ିଶା ଛଡ଼ା ବିହାର, ବୃନ୍ଦାବନ, ମଥୁରା, ଅଯୋଧ୍ୟାରେ ଦୋଳ ଏକ ସମ୍ପ୍ରଦାୟ ବା ପାରମ୍ପରିକ ମହୋତ୍ସବ ।

ଫାଲ୍‌ଗୁନ ମାସ ଏବଂ ଋତୁରାଜ ବସନ୍ତ ବର୍ଷର ଏକ ସୁମଧୁର ସମୟ । ପ୍ରାଚୀନ କାଳର 'ବସନ୍ତରାସ' ବା 'ବସନ୍ତଉତ୍ସବ' ପରବର୍ତ୍ତୀ କାଳରେ ଦୋଳ ଉତ୍ସବରେ ରୂପାୟିତ ହେବାର ପ୍ରମାଣ 'ଶ୍ରୀମନ୍ଦିର ସ୍ୱତ୍ତ୍ୱ ଲିପି' (ପୃ.୧୧୦-୧୧୨) 'ମାଦଳା ପାଞ୍ଜି' (ପୃ.୭୯-୮୦) ଏବଂ 'ଖୋରଧା ଇତିହାସ' (୨୦୬ ପୃ.) ତଥା କାନ୍ତକମନୀୟ ଶ୍ରୀଗୀତଗୋବିନ୍ଦର ସରଳ ତରଳ ଭାଷା ସଂଯୋଜନାରୁ ମିଳିଥାଏ । ସେହିପରି ଦୋଳ ସମ୍ପର୍କରେ ବଡ଼ଦେଉଳ ନୃସିଂହ ମନ୍ଦିରର ଶିଳାଲେଖ 'ଗୋବିନ୍ଦ ଦୋଳ' ସମ୍ପର୍କରେ ଚୋଡ଼ଗଙ୍ଗଙ୍କ ରାଜତ୍ୱରେ ହୋଇଥିବାର ଉଲ୍ଲେଖ ଅଛି । 'ସଚିତ୍ର ରାମାୟଣ' କାବ୍ୟରୁ ଜଣାଯାଏ ପୁରୀ ଦୋଳମଣ୍ଡପ ସାହିରେ ୧୭୫୪ ଖ୍ରୀଷ୍ଟାବ୍ଦରେ

ରାଜା ବୀରକିଶୋର ଦେବଙ୍କ ରାଜତ୍ୱରେ କବି ବନମାଳୀ ପଟ୍ଟନାୟକ ଶ୍ରୀଜଗନ୍ନାଥ ଓ ଶ୍ରୀରାଧାକୃଷ୍ଣଙ୍କ ନାନା ଲୀଳା ଓ କୀର୍ତ୍ତି ବର୍ଣ୍ଣିତ କବିତା ରଚନା କରି ଦୋଳ ଓ ଗୋବିନ୍ଦଙ୍କୁ ବୈଷ୍ଣବ ଭାବାପନ୍ନ ଭକ୍ତଙ୍କ ହୃଦ୍‌ଗତ କରିପାରିଛନ୍ତି ।

ଦ୍ୱାଦଶ ଶତାବ୍ଦୀରେ ଶ୍ରୀମନ୍ଦିରରେ 'ପଞ୍ଚଦୋଳ ଉତ୍ସବ' ପାଳନ ଅବସରରେ ଦକ୍ଷିଣ ଭାରତରୁ ସମାଗତ 'କାମଦେବ ସୁଧା' ନାମକ ଜନୈକ ଭକ୍ତ ଶ୍ରୀପୁରୁଷୋତ୍ତମଙ୍କ ପାଇଁ ଏକ ଅଖଣ୍ଡ ଦୀପ ପ୍ରଦାନ କରିଥିଲେ ।

ତେଣୁ ଦୋଳପୂର୍ଣ୍ଣିମା, ଦୋଳଉତ୍ସବ, ପଞ୍ଚଦୋଳ, ଗୋବିନ୍ଦଦୋଳ, ଦୋଳଗୋବିନ୍ଦ, ଦ୍ୱାଦଶଦୋଳ, ବରାହ ଦୋଳ ପ୍ରଭୃତି ଅତି ପ୍ରାଚୀନ ଓ ପାରମ୍ପରିକ ଧର୍ମାନୁଶୀଳନ । ବାର୍ଷିକ ଏଇ ଭାବୋତ୍ସବ ସ୍ୱୟଂ ପରଂବ୍ରହ୍ମଙ୍କ ପ୍ରୀତ୍ୟର୍ଥେ ଆୟୋଜିତ ହୋଇ ପଲ୍ଲୀଗ୍ରାମରେ ଦୋଳର ଗୋଳ ଅଫୁରନ୍ତ ଉଚ୍ଛ୍ୱାସ ଭରିଦିଏ ପ୍ରାଣେ ପ୍ରାଣେ । ସରସ୍ୱତୀ କଣ୍ଠାଭରଣ ନାମକ କାବ୍ୟରେ 'ସୁବସ୍ତନକ' ଶବ୍ଦ ବ୍ୟବହାରରେ ବ୍ୟାଖ୍ୟାନୁସାରେ ବସନ୍ତ ଋତୁରେ ପୁରୁଷ ଓ ନାରୀ ପରସ୍ପର ମଧ୍ୟରେ ମଧୁର ମୁହୂର୍ତ୍ତ, ଆଳାପ, ସଂଳାପ, ଜଳସିଞ୍ଚନ, ରଙ୍ଗବେରଙ୍ଗ ଧୂଳି ସିଞ୍ଚନ, ସଙ୍ଗୀତ ନୃତ୍ୟ, ସୁଗନ୍ଧି ପୁଷ୍ପ ଓ ସୁଖାଦ୍ୟର ପ୍ରୀତିପ୍ରଦ ଆଦାନ-ପ୍ରଦାନ ନିମନ୍ତେ ଉଦ୍ଦିଷ୍ଟ ।

ରଙ୍ଗ ପିଚକାରୀ, କୁଞ୍ଜନିକୁଞ୍ଜର ଲୀଳାରାସ, ଯୁଗଳ ଛନ୍ଦା ଅଧରରେ ମୃଦୁ ବଂଶୀନାଦ ସହ ଦୋଳରେ ଝୁଲି ବସନ୍ତ ରାସରେ ପ୍ରକୃତି ସ୍ୱୟଂ ସଜ୍ଜିତ ହୋଇ ଶ୍ରୀରାଧାକୃଷ୍ଣଙ୍କର ଏଇ ହୃଦୟବ୍ୟଞ୍ଜକ ସମାରୋହକୁ ଅଧିକ ପ୍ରାଣବନ୍ତ କରି ତୋଳନ୍ତି ।

''ଦୋଳେ ଚ ଦୋଳ ଗୋବିନ୍ଦଂ ଚାପେ ଚ ମଧୁସୂଦନଂ ।
ରଥେ ତୁ ବାମନଂ ଦୃଷ୍ଟ୍ୱା ପୁନଃ ଜନ୍ମ ନ ଲଭ୍ୟତେ ।''

ରଥରେ ବାମନ, ଚାପରେ ମଧୁସୂଦନଙ୍କୁ ଦେଖିବାଭଳି, ଦୋଳ ଝୁଲଣରେ ଦୋଳଗୋବିନ୍ଦଙ୍କୁ ପୂର୍ଣ୍ଣିମାରେ ଦୋଳବେଦୀରେ ଦର୍ଶନ କଲେ ପୁନର୍ଜନ୍ମ କବଳରୁ ମଣିଷକୁ ମୁକ୍ତି ମିଳେ । ଦୋଳଉତ୍ସବ, ଦୀପାବଳି, ଦଶହରା ଓ ଅନ୍ୟାନ୍ୟ ସାମୂହିକ ପୂଜା ଭଳି ଏହା ଗଣସମୂହର ଉତ୍ସବ । ଏହାର ପ୍ରାରମ୍ଭ ବା ଉତ୍ସବର ଉଦ୍ଦେଶ୍ୟ ମୂଳରେ ସାମାଜିକ ସଦ୍‌ଭାବ, ଲୌକିକତା, ଆଧ୍ୟାତ୍ମିକ ମାର୍ଗରେ ସାର୍ବଭୌମ ଏକତା, ସ୍ୱାସ୍ଥ୍ୟ ସମ୍ପର୍କିତ ବିଜ୍ଞାନଭିତ୍ତିକ ରଙ୍ଗଖେଳାର ଉପାଦେୟତା ଜନପଦରେ ଧର୍ମ ମାର୍ଗରେ ନିରଙ୍କୁଶ ମାଦକତାର ଏସବୁ ବିଭାବ କାଳିଦାସଙ୍କ 'ଋତୁସଂହାର', 'କୁମାରସମ୍ଭବମ୍', 'ରଘୁବଂଶମ୍' କାବ୍ୟରେ ଲାକ୍ଷାରସ, ରଞ୍ଜିପନୀ ପଦ ଅବତାରଣାରେ ବସନ୍ତ ଦୋଳର ଅର୍ଥ ପ୍ରକାଶିତ ।

କବି ସାରଦା ତନୟ ଶକ୍ରାର୍ଚ୍ଚି ବସନ୍ତୋତ୍ସବ ଏବଂ ମତ୍ସ୍ୟପୁରାଣ ଅନୁସାରେ ମଦନୋତ୍ସବ, ବାତ୍ସ୍ୟାୟନଙ୍କ ଚତୁଃଷ ଅଙ୍ଗବିଦ୍ୟା ପ୍ରସଙ୍ଗରେ ଉଦକାଘାତ ଅର୍ଥାତ୍ ଜଳଦ୍ୱାରା ଆଘାତ, ରଙ୍ଗ ପିଚକାରୀରେ ଆନନ୍ଦର ମାଦକତା ଅନୁଭବ ସମ୍ପର୍କରେ ଉଲ୍ଲେଖ ଅଛି । ତା'ଛଡ଼ା ମୁଦ୍ରାରାକ୍ଷସ, ରତ୍ନାବଳୀ, ମାଳବିକାଗ୍ନି ମିତ୍ରମ୍ ଓ ନୀଳାଦ୍ରି ଅର୍ଚ୍ଚନ ଚନ୍ଦ୍ରିକାରେ ପାରମ୍ପରିକ ଦୋଳ ଉତ୍ସବ ସମ୍ପର୍କରେ ବିଶଦ ଉଲ୍ଲେଖ ରହିଛି ।

ଚାଚେରୀ ଗହଳ ସଖୀ
ଗୋବିନ୍ଦଙ୍କ ଦୋଳ
ସର୍ବସୁଖ ଘେନି ଗଲେ
ମଦନ ଗୋପାଳ ।

ସନ୍ଥକବି ଦେବଦୁର୍ଲ୍ଲଭ ଦାସଙ୍କ ଭାଷାରେ ଦୋଳକୁ ଚାଚେରୀ ବା ଚର୍ଚ୍ଚରୀ ବା ଭାଗ୍ୟୋତ୍ସବ କୁହାଯାଏ । ଚାଚେରୀ ଭୋଗ, ଚାଚେରୀ ଖେଳ, ଚାଚେରୀ ବେଶ ଶ୍ରୀମନ୍ଦିର ତଥା ଓଡ଼ିଶାର ବିଭିନ୍ନ ପୁରପଲ୍ଲୀ ଜନପଦରେ ଦୋଳୋତ୍ସବରେ ଅନୁଷ୍ଠିତ ହୋଇଥାଏ । ବିଶେଷତଃ ଦକ୍ଷିଣାଭିମୁଖୀ ହୋଇ ଦୋଳିରେ ଦୋଳାୟମାନ ଗୋବିନ୍ଦଙ୍କୁ ଦର୍ଶନ କଲେ ମହାପୁଣ୍ୟ ହୁଏ । 'ବ୍ରହ୍ମପୁରାଣ'ରେ ବର୍ଣ୍ଣନା ଅଛି-

ନରୋ ଦୋଳାଗତଂ ଦୃଷ୍ଟ୍ୱା
ଗୋବିନ୍ଦଂ ତ୍ରିଦଶାର୍ଚ୍ଚିତଂ
ଫାଲ୍‌ଗୁଣ୍ୟଂ ସଂଯତୋ ଭୂତ୍ୱା
ଗୋବିନ୍ଦସ୍ୟ ପୁରଂ ବ୍ରଜେତ ॥

ଦୋଳୋତ୍ସବର ମହତ୍ତ୍ୱ ସମ୍ପର୍କରେ 'ନୀଳାଦ୍ରି ମହୋଦୟ' 'ଯାତ୍ରା ଭାଗବତ', 'ବାମଦେବ ସଂହିତା', 'ବ୍ରହ୍ମାଣ୍ଡପୁରାଣ', 'ସ୍କନ୍ଦପୁରାଣ', ଭବିଷ୍ୟୋତ୍ତର ପୁରାଣମାନଙ୍କରେ ବର୍ଣ୍ଣିତ ହୋଇଅଛି । ସେବା ପୂଜା ଦ୍ୱାରା ଜୀବର ଆଧ୍ୟାତ୍ମିକ ଉନ୍ନତି ହେବା ପରି ଉତ୍ସବ ପାଳନରେ ମାନସିକ ଶ୍ରମ ଓ ସାଧନ ସିଦ୍ଧି ହୁଏ ।

ଶ୍ରୀଜଗନ୍ନାଥଙ୍କ ଚଳନ୍ତି ପ୍ରତିମା ଶ୍ରୀଦୋଳଗୋବିନ୍ଦ ଶ୍ରୀକୃଷ୍ଣ ଶ୍ରୀଦେବୀ ହେଲେ ମା' ଲକ୍ଷ୍ମୀ, ଭୂଦେବୀ ହେଲେ ସରସ୍ୱତୀ ବା ସତ୍ୟଭାମା । ଏହି ତ୍ରିମୂର୍ତ୍ତିଙ୍କୁ ନିଜେ ପ୍ରତିମା ଭାବେ ପ୍ରତିବର୍ଷର ପାର୍ବଣ ଅର୍ଥାତ୍ ଦୋଳ, ଝୁଲଣ ଓ ଚନ୍ଦନ ଯାହାକି ଶ୍ରୀରାଧା ଓ ଶ୍ରୀକୃଷ୍ଣଙ୍କର ଯୁଗଳ ମିଳନାନ୍ତ ଉତ୍ସବ ରୂପେ ଶ୍ରୀକ୍ଷେତ୍ରରେ ଅତି ଆଡ଼ମ୍ବରରେ ପାଳିତ ହୁଏ ।

ସମସ୍ତ ଅଧ୍ୟାତ୍ମ କ୍ଷେତ୍ର ହେଲା ଶ୍ରୀମନ୍ଦିର, ଏହାର ଦୋଳ ଉତ୍ସବ ସ୍ୱତନ୍ତ୍ର । ପ୍ରଭୁଙ୍କର ଚାରିଟି ରାସ ଯଥା ଗ୍ରୀଷ୍ମର ଚନ୍ଦନ ବା ଚାପ, ବର୍ଷାରେ ଝୁଲଣ, ଶରତରେ କାର୍ତ୍ତିକର ଶରଦ ରାସ ଏବଂ ବସନ୍ତରାସ ବା ଦୋଳ ଉତ୍ସବ ।

**ଶ୍ରୀମନ୍ଦିରରେ ହୋଲି ଉତ୍ସବ**

ଶ୍ରୀକ୍ଷେତ୍ରରେ ଶ୍ରୀଜଗନ୍ନାଥଙ୍କ ରୀତିନୀତି, ସେବାପୂଜା, ପର୍ବପର୍ବାଣି ପ୍ରଭୃତି ଶ୍ରୀରାମ, ଶ୍ରୀକୃଷ୍ଣ ଇତ୍ୟାଦି ଦେବତାଙ୍କୁ କେନ୍ଦ୍ର କରି ଅନୁଷ୍ଠିତ ହୋଇଥାଏ । ଦୋଳ ଉତ୍ସବ ହେଉଛି ଉତ୍କଳୀୟ ବୈଷ୍ଣବ ଚିନ୍ତାଧାରା ସ୍ୱକୀୟ ଲୀଳାର ପର୍ଯ୍ୟାୟଫଳନ ।

ଏହାକୁ ବସନ୍ତ ଗୁଣ୍ଡିଚା ମଧ୍ୟ କୁହାଯାଏ । ଦଶମୀ ଦିନ ମଧ୍ୟାହ୍ନ ଧୂପ ପରେ ମଇଲମ, ରକ୍ତବର୍ଣ୍ଣ ଉପଯୋଡ଼, ଅଙ୍ଗାଭରଣ, ଓଡ଼ିଆଣୀ ଆଡ଼କନି, ତଡ଼କି, ନଳୀଭୂଜ ଲାଗିହୋଇ ଚାଚେରୀ ବେଶ ହୁଏ । ଚନ୍ଦନ ସର୍ବାଙ୍ଗରେ ଲାଗି ହେବାପରେ ଶ୍ରୀଦେବୀ, ଭୂଦେବୀ ଓ ଦୋଳଗୋବିନ୍ଦ ଦକ୍ଷିଣଘର ଖଟ ଉପରେ ବିଜେ କରନ୍ତି । ଚାଚେରୀ ବେଶ କରାଯାଇ ପ୍ରଭୁଙ୍କୁ ରତ୍ନସିଂହାସନ ଉପରକୁ ବିଜେ କରାଯାଏ । ସେଠାରେ ଚାଚେରୀ ଭୋଗ ଯଥା- ବଡ଼ଆରିଶା, ସାନ ଆରିଶା, କ୍ଷୀରି ଧଉଳା, ଘିʼନାଡ଼ି, ଖଇରଚୂଳ ଇତ୍ୟାଦି ବହୁ ସୁଅର୍ଘ୍ୟ ଲାଗି କରାଯାଏ । ଭୋଗ ପରେ ସିଂହାସନ ତଳେ ଝିମିରି ଫଗୁଖେଳ ହୁଏ । ଏହା ହିଁ ପ୍ରଥମ ବସନ୍ତ ମହୋତ୍ସବର ପ୍ରାରମ୍ଭ ଫଗୁଛୁଆଁ ।

ଏହି ଫଗୁ ରଙ୍ଗ ପାଳୁଅ, ଶତାବରୀ, ମୁଥା, ଅଙ୍କରାନ୍ତି ଓ ସିନ୍ଦୂରରେ ତିଆରି ହୋଇଥାଏ । ଉପରୋକ୍ତ ଚେରମୂଳିର ଗୁଣ୍ଡ କେବଳ ଖେଳ ପାଇଁ ଉଦ୍ଦିଷ୍ଟ ନ ଥିଲା, ଏହାର ପ୍ରସ୍ତୁତି ଔଷଧୀୟ ଗୁଣାବଳୀରେ ସମୃଦ୍ଧ । ଏହା ସ୍ୱାସ୍ଥ୍ୟଭିତ୍ତିକ ଜୀବାଣୁନାଶକ । ପ୍ରତ୍ୟେକ ପୁରାଣ ଓ ସାଂସ୍କୃତିକ ଅନୁଷ୍ଠାନର ମୂଳ ଭିତ୍ତିରେ ନିର୍ଦ୍ଦିଷ୍ଟ ବୈଜ୍ଞାନିକ କାରଣ ନିହିତ । ଏହା ପ୍ରମାଣିତ ସତ୍ୟ । ମିଳିମିଳା, ବସନ୍ତ ଓ ଅନ୍ୟାନ୍ୟ ଚର୍ମରୋଗନାଶକ ହୋଇଥିବାରୁ ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ସମାଜରେ ଫଗୁ ଖେଳକୁ ଉଭୟ ସ୍ୱାସ୍ଥ୍ୟ ଓ ମନୋରଞ୍ଜନ ଦୃଷ୍ଟିରୁ ପ୍ରବର୍ତ୍ତନ କରାଯାଇଥିଲା ।

ପ୍ରଥମେ ଚତୁର୍ଦ୍ଧାମୂର୍ତ୍ତିଙ୍କୁ ଫଗୁ ଲାଗି କରାଯାଇ ତଳେ ଥିବା ତ୍ରିମୂର୍ତ୍ତିଙ୍କୁ ବାହାର ଫଗୁ ଉତ୍ସବ ପାଇଁ ଅଣାଯାଏ । ଚତୁର୍ଦ୍ଦଶୀ ଦିନ ଅଗ୍ନ୍ୟୁତ୍ସବ ପାଳନ କରାଯାଏ । ପ୍ରବାଦ ଅଛି ଯେ, କଂସ ପ୍ରେରିତ ରାକ୍ଷସ ହୋଲିକୁ ଶ୍ରୀକୃଷ୍ଣ ବଧ କରିଥିବାରୁ ତା'ର ସ୍ମୃତିସ୍ୱରୂପ ସେ ତା'ର ସବଂଶ ଧ୍ୱଂସ କରିଥିଲେ । ପୂର୍ଣ୍ଣମୀ ଦିନ ଦୋଳବେଦୀକୁ ଠାକୁରମାନେ ଝୁଲିବାକୁ ଗଲେ ଗଜପତି ମହାରାଜା ରଥରେ ଛେରାପହଁରା କରିବାକୁ ଥିବା ପ୍ରଥା ପରି ଦୋଳମଣ୍ଡପକୁ ଛେରାପହଁରା କରିବାକୁ ଯିବାର ବିଧାନ ରହିଛି ।

ଦୋଳୋତ୍ସବ ଏବଂ ରଙ୍ଗର ହୋଲି ଖେଳ ଆଧ୍ୟାତ୍ମିକ, ସାମାଜିକ ଏକତା, ସଦ୍‌ଭାବ, ଶାନ୍ତି, ଐକ୍ୟ ଓ ଭ୍ରାତୃତ୍ୱର ଏକ ଅଭିନବ ଈଶ୍ୱରୀୟ ବିଧାନ, ଯାହା ବିଶ୍ୱଶାନ୍ତି ଓ ସାମ୍ୟଭାବର ମୂଳଭିତ୍ତି ।

ଆଶ୍ରମ, ଶ୍ରୀବିହାର, କଟକ-୮



# ବିଚିତ୍ର ବିସ୍ମୟ ଦେବତା ଭଗବାନ ଶଙ୍କର

ରବୀନ୍ଦ୍ର ନାଥ ମିଶ୍ର

ହିନ୍ଦୁମାନେ ବର୍ଷକ ବାରମାସ ବିଭିନ୍ନ ପର୍ବପର୍ବାଣି ପାଳନ ପୂର୍ବକ ଉତ୍ସବ ମନାନ୍ତି । ଏଥିରେ ଭିନ୍ନ ଭିନ୍ନ ଦେବୀ ଓ ଦେବତାଙ୍କୁ ଉପାସନା କରାଯାଇଥାଏ । କେହି ବିଷ୍ଣୁ, କେହି ଦୁର୍ଗା, କେହି ଗଣେଶ, ଆଉ କିଏ ସୂର୍ଯ୍ୟ ତ କିଏ ଶିବଙ୍କୁ ଆରାଧନା କରିଥାନ୍ତି । ପରମ୍ପରା ଅନୁସାରେ ହିନ୍ଦୁଧର୍ମରେ ନାନା ଦେବାଦେବୀଙ୍କୁ ପୂଜା ଉପାସନା କରାଯାଉଥିବା ବେଳେ, ଏ ସବୁଥିରେ କିନ୍ତୁ ସଦ୍‌ଭାବ ଓ ସଦିଚ୍ଛା ନିହିତ ଥାଏ । ହିନ୍ଦୁ ସମାଜରେ ପଞ୍ଚଦେବତା ଉପାସନା କାହିଁ କେଉଁ କାଳରୁ ପ୍ରଚଳିତ ।



ପଞ୍ଚଦେବତା ଉପାସନାରେ କୌଣସି ଭିନ୍ନତା ପରିଲକ୍ଷିତ ହୁଏ ନାହିଁ । ସେହିପରି ଏହି ସୃଷ୍ଟିର ସ୍ରଷ୍ଟା ବ୍ରହ୍ମା, ପାଳକ ବିଷ୍ଣୁ ଓ ସଂହାର କର୍ତ୍ତା ଶିବଙ୍କ ମଧ୍ୟରେ ବି କୌଣସି ଭିନ୍ନତା ପରିଦୃଷ୍ଟ ହୋଇନଥାଏ । ଏମାନଙ୍କ ମଧ୍ୟରୁ ଆମ ଭାରତବର୍ଷରେ ଶୈବ ଉପାସନା ବିଶେଷ ଗୁରୁତ୍ୱ ବହନ କରେ । ବୌଦ୍ଧ ଧର୍ମର ପ୍ରଭାବରେ ହିନ୍ଦୁ ଧର୍ମର ବିଲୟ ଘଟିଥିବା ବେଳେ ସାକ୍ଷାତ୍ ଶିବାବତାର ଆଦି ଶଙ୍କରାଚାର୍ଯ୍ୟଙ୍କ ଆବିର୍ଭାବ ହେଲା । ଫଳରେ ସନାତନ ହିନ୍ଦୁ ଧର୍ମର ହେଲା ପୁନଃ ଅଭ୍ୟୁଦୟ । ଭାରତବର୍ଷର ଚାରି ଦିଗରେ ସେ ଚାରିଧାମ ପ୍ରତିଷ୍ଠା କରିବା ସହ ଏହାର ସୁପରିଚାଳନା ନିମନ୍ତେ ସେହି ସେହି ସ୍ଥାନରେ ଚାରୋଟି ମଠ ମଧ୍ୟ ସ୍ଥାପନ କଲେ । କେବଳ ଏତିକି ନୁହେଁ ପଦବ୍ରଜରେ ସେ ଭାରତବର୍ଷର କୋଣ ଅନୁକୋଣ ଭ୍ରମଣ କରି ବୈଦିକ ହିନ୍ଦୁ ଧର୍ମରେ ଆଣିଲେ ସଂସ୍କାର । ଦେଶର ବିଭିନ୍ନ ପ୍ରାନ୍ତରେ ଥିବା ଜ୍ୟୋତିର୍ଲିଙ୍ଗଗୁଡ଼ିକ ଚିହ୍ନିତ କଲେ, ଫଳରେ ଶୈବ ଧର୍ମର ପ୍ରଭାବ ଅନୁଭୂତ ହେଲା ।

ବେଦାଦି ଶାସ୍ତ୍ର ଓ ପୁରାଣର ବର୍ଣ୍ଣନାନୁଯାୟୀ ମହାପ୍ରଳୟ ପରେ ଜ୍ୟୋତିଃସ୍ୱରୂପ ପରମବ୍ରହ୍ମ ପରମାତ୍ମା ଭଗବାନ୍ ସୃଷ୍ଟିର ବିକାଶ ନିମନ୍ତେ ରଜୋଗୁଣାଶ୍ରୟୀ ବ୍ରହ୍ମାଙ୍କୁ ସୃଷ୍ଟିକର୍ତ୍ତା, ସତ୍ତ୍ୱ ଗୁଣର ଆଧାର ବିଷ୍ଣୁଙ୍କୁ ପାଳକ ଓ ତମୋଗୁଣର ଆଧାର ଶିବଙ୍କୁ ସଂହାର କର୍ତ୍ତା ରୂପେ ଦାୟିତ୍ୱ ଦେଲେ । କାର୍ଯ୍ୟ ନିଷ୍ପାଦନରେ ପୃଥକ୍ ଏମାନେ ବାସ୍ତବରେ ଏକ ଓ ଅଭିନ୍ନ ଅଟନ୍ତି । ବ୍ରହ୍ମପୁରାଣ ମତରେ – 'ଯୋ ରୁଦ୍ରଃ ସ ସ୍ୱୟଂ ବିଷ୍ଣୁଃ ଯୋ ବିଷ୍ଣୁଃ ସ ମହେଶ୍ୱରଃ', ଯିଏ ରୁଦ୍ର, ସିଏ ବିଷ୍ଣୁ

ଅଟନ୍ତି । ପୁନଶ୍ଚ ଯିଏ ବିଷ୍ଣୁ ସେ ମଧ ମହେଶ୍ୱର ଅଟନ୍ତି । ନାରଦ ପୁରାଣ ମଧ କୁହନ୍ତି,

ଶିବ ଏବ ହରିଃ ସାକ୍ଷାତ୍ ହରିରେବ ଶିବଃ ସ୍ୱୟମ୍ ।

ଅର୍ଥାତ୍ ହରି ଓ ହରଙ୍କ ମଧ୍ୟରେ କିଛି ବି ପ୍ରଭେଦ ନାହିଁ । ଆହୁରି ମଧ କୁହାଯାଏ,

''ଶିବେ ବିଷ୍ଣୌ ନ ବା ଭେଦଃ ନ ଚ ବ୍ରହ୍ମା ମହେଶୟୋଃ ।''
(ପଦ୍ମପୁରାଣ)

ଅର୍ଥାତ୍ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱରଙ୍କ ମଧ୍ୟରେ କୌଣସି ଭେଦାଭେଦ ନାହିଁ । ସେମାନେ ଏକ ଓ ଅଭିନ୍ନ ଅଟନ୍ତି । କାର୍ଯ୍ୟ ନିଷ୍ପାଦନ ପାଇଁ କେବଳ ଭିନ୍ନ ରୂପ ପରିଗ୍ରହଣ କରିଥାନ୍ତି । ଋଗ୍‌ବେଦରେ ବର୍ଣ୍ଣିତ ଅଛି – 'ଅଥନିତ୍ୟ ଦେବ ଏବ ନାରାୟଣ, ବ୍ରହ୍ମ ନାରାୟଣ, ଶିବଶ୍ଚ ନାରାୟଣ' ବ୍ରହ୍ମା ବିଷ୍ଣୁ ତଥା ମହେଶ୍ୱରଙ୍କୁ ଏକ ଅଭିନ୍ନ ବୋଲି ବେଦ ମଧ ସ୍ୱୀକାର କରନ୍ତି । ଶ୍ରୀକ୍ଷେତ୍ରସ୍ଥ ଶ୍ରୀମନ୍ଦିର ରତ୍ନସିଂହାସନରେ ରୁଦ୍ରରୂପୀ ବଳଭଦ୍ର, ବ୍ରହ୍ମାରୂପୀ ମା'ସୁଭଦ୍ରା ଓ ବିଷ୍ଣୁ ରୂପୀ ଶ୍ରୀଜଗନ୍ନାଥ ଏକତ୍ର ଅବସ୍ଥାନ ପୂର୍ବକ ନାରାୟଣ ରୂପେ ଉପାସିତ ହେଉଅଛନ୍ତି । ଶ୍ରୀମଦ୍‌ଭଗବତ୍ ଗୀତାରେ ସ୍ୱୟଂ ଭଗବାନ୍ କହିଛନ୍ତି, 'ରୁଦ୍ରାଣାଂ ଶଙ୍କରଃ ଚାସ୍ମି' ଅର୍ଥାତ୍ ମୁଁ ରୁଦ୍ରମାନଙ୍କ ମଧ୍ୟରେ ଶଙ୍କର ଅଟେ । ଏସବୁ ପ୍ରମାଣରୁ ଜଣାଯାଏ ଯେ, ଭଗବାନ୍ ଲୀଳା କରିବା ପାଇଁ ବିଭିନ୍ନ ରୂପ ପରିଗ୍ରହଣ କରିଥାନ୍ତି । ଭଗବାନ୍ ଶିବ ତନ୍ମଧ୍ୟରୁ ଅନ୍ୟତମ ଲୀଳା ବିଗ୍ରହ ରୂପେ ସ୍ୱୀକୃତ ।

ଅକର୍ମ କର୍ମଦାୟକ ସଦା ମଙ୍ଗଳମୟ ଆଶୁତୋଷ ଭଗବାନ୍ ଶିବ ପ୍ରକୃତରେ ବଡ଼ ରହସ୍ୟମୟ ଦେବତା । ତାଙ୍କର କୌଣସି ଆକାର ନଥିବାରୁ ସେ ନିରାକାର । ତାଙ୍କର ଆଦି ନ ଥିବାରୁ ସେ ଅନାଦି, ଅନ୍ତ ନଥିବାରୁ ଅନନ୍ତ ଅଟନ୍ତି । ତାଙ୍କର ଜନ୍ମ ନଥିବାରୁ ସେ ସ୍ୱୟମ୍ଭୂ ଓ ମୃତ୍ୟୁ ନଥିବାରୁ ସେ ମୃତ୍ୟୁଞ୍ଜୟ । ସମୁଦ୍ର ମନ୍ଥନ କାଳରେ ସେଥିରୁ ଉଦ୍‌ଭବ ଉତ୍କଟ କାଳକୂଟବିଷକୁ ଦେବତାମାନଙ୍କ ଅନୁରୋଧରେ ପାନ କରି ସେ ନୀଳକଣ୍ଠ ନାମ ବହନ କରିଛନ୍ତି । ସର୍ବଦା ଯୋଗ ଧ୍ୟାନରେ ରତ ସେ ପରମ ଯୋଗୀ, ହେଲେ ପତ୍ନୀ ପାର୍ବତୀଙ୍କୁ କ୍ଷଣେ ପାଖରୁ ଛାଡ଼ି ପାରନ୍ତି ନାହିଁ । ଏଣୁ ତାଙ୍କୁ ଅର୍ଦ୍ଧନାରୀଶ୍ୱର କୁହାଯାଏ । ସର୍ବଦା ଶ୍ୱଶୂରାଳୟରେ ଅବସ୍ଥାନ କରିଥାନ୍ତି । ଏଣୁ କୁହାଯାଏ, 'ହରି ଚ କ୍ଷୀରାବ୍ଧୌ ଶେତେ ହରଶେତେ ହିମାଳୟେ ।' ଦେବତାମାନଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ ହୋଇଥିବାରୁ ସେ ମହାଦେବ ନାମରେ ପରିଚିତ । ବିବିଧ ବିରୋଧ ଗୁଣର ସମ୍ମିଶ୍ରଣ ତାଙ୍କଠାରେ ଦେଖାଯାଉଥିବାରୁ ସେ ବଡ଼ ବିଚିତ୍ର ଆଉ ବିସ୍ମୟର ଦେବତା ଅଟନ୍ତି । ଶିବ ଅର୍ଥାତ୍ ମଙ୍ଗଳମୟ, କିନ୍ତୁ ସବୁ ଅମଙ୍ଗଳର ସମାହାର ତାଙ୍କଠାରେ ଦେଖିବାକୁ ମିଳେ । ସେ ଗଳାରେ, ଜଟାରେ, ବାହୁରେ, କଟିରେ ଅମଙ୍ଗଳର ସୂଚକ ସର୍ପକୁ ଭୂଷଣ ରୂପେ ଧାରଣ କରିଥିବା ବେଳେ ଲଜ୍ଜା ନିବାରଣ ପାଇଁ ବ୍ୟାଘ୍ର ଚର୍ମ ପରିଧାନ କରିଥାନ୍ତି । ସର୍ବଦା ଶାନ୍ତ ସେ ପୁଣି ରୁଦ୍ର ମୂର୍ତ୍ତି ଧାରଣ କରିପାରନ୍ତି । ଦକ୍ଷ ଯଜ୍ଞ ଧ୍ୱଂସ କାଳରେ ତାଙ୍କ ରୁଦ୍ର ମୂର୍ତ୍ତି ଅବଲୋକନ କରି ତତ୍ରସ୍ଥ ଦେବତା ଓ ଋଷିଗଣ ଭୟଭୀତ ହୋଇ ଶାନ୍ତ ହେବା ପାଇଁ ତାଙ୍କୁ ପ୍ରାର୍ଥନା ପୂର୍ବକ ନିବେଦନ କରିଥିଲେ । ତାଙ୍କର ଅନ୍ୟନାମ ନଟରାଜ । ନଟ ଅର୍ଥ ନର୍ତ୍ତକ । ନର୍ତ୍ତକ ଶ୍ରେଷ୍ଠ କହିଲେ ନଟରାଜଙ୍କୁ ବୁଝାଏ । ଭଗବାନ ଶଙ୍କର ବିଭିନ୍ନ ନୃତ୍ୟରେ ପ୍ରବୀଣ । ତାଙ୍କ ଦ୍ୱାରା କରାଯାଉଥିବା ତାଣ୍ଡବ ନୃତ୍ୟ ସ୍ୱାତନ୍ତ୍ର୍ୟ ବହନ କରେ । ଏହି ତାଣ୍ଡବନୃତ୍ୟ ପୁଣି ସାତ ପ୍ରକାର । ଆନନ୍ଦ (ଲଳିତ) ତାଣ୍ଡବ, ସନ୍ଧ୍ୟା ତାଣ୍ଡବ, କାଳିକା ତାଣ୍ଡବ, ତ୍ରିପୁର ତାଣ୍ଡବ, ଗୌରୀ ତାଣ୍ଡବ, ସଂହାର ତାଣ୍ଡବ ଓ ଉମା ତାଣ୍ଡବ । ଉପରୋକ୍ତ ତାଣ୍ଡବ ନୃତ୍ୟଗୁଡ଼ିକର ଶୈଳୀ ମଧ ପୃଥକ୍ ପୃଥକ୍ ଅଟେ । କଥିତ ଅଛି, ନାଟ୍ୟଶାସ୍ତ୍ରର ସୃଷ୍ଟି ପରେ ଏହାକୁ ନାଟ୍ୟ ରୂପ ଦେବା ପାଇଁ ଭରତମୁନିଙ୍କୁ ଦାୟିତ୍ୱ ଅର୍ପଣ କରାଯାଉଥିଲା । ସେ ମଧ ନିଜର ସହଯୋଗୀଙ୍କୁ ନେଇ ଏହାକୁ ରୂପ ଦେଇଥିଲେ । ଭଗବାନ ଶିବ ଏହାକୁ ଦେଖି ଅସନ୍ତୋଷ ବ୍ୟକ୍ତ କରିବା ସହ ଅଭିନୟରେ ନୃତ୍ୟ କଳାକୁ ସଂଯୋଗ କରି ପ୍ରାଣବନ୍ତ କରିଥିଲେ । ନୃତ୍ୟ କଳାର ଆଦ୍ୟ ପ୍ରବର୍ତ୍ତକ ହୋଇଥିବାରୁ ତାଙ୍କୁ ନଟରାଜ କୁହାଯାଏ ।

ଯୋଗାରୁଢ଼ ତାଙ୍କର ତପଃ ଭଗ୍ନ କରିବାକୁ ପ୍ରୟାସରତ କାମଦେବଙ୍କୁ ଭସ୍ମ କରି ସ୍ମରହର ନାମରେ ପରିଚିତ ହୋଇଥିଲେ । ସେ ଏକଦା ଭଗବାନଙ୍କ ମାୟା ମୋହିନୀ ରୂପରେ ମୋହିତ ହୋଇ କାମୁକ ପରି ତାଙ୍କର ପଶ୍ଚାତ୍‌ଧାବନ କରିଥିଲେ । ତ୍ରେତୟାରେ ସେ ରାବଣର ତପସ୍ୟାରେ ସନ୍ତୁଷ୍ଟ ହୋଇ ତାଙ୍କୁ ଚନ୍ଦ୍ରହାସ୍ୟ ଖଡ୍ଗ ଓ ଅପରାଜେୟ ବର ପ୍ରଦାନ କରିଥିଲେ । ଅପରପକ୍ଷରେ ଭଗବାନ୍ ଶ୍ରୀରାମଙ୍କ ତପସ୍ୟାରେ ପ୍ରୀତ ହୋଇ ରାବଣ ମୃତ୍ୟୁ ପାଇଁ ସେତୁ ନିର୍ମାଣରେ ସହାୟକ ସାଜିଥିଲେ ସେ । ଶକ୍ତିଙ୍କ ବିନା ସେ ଅସହାୟ ଶବ ସ୍ୱରୂପ ହୋଇଥିବା ବେଳେ ଶକ୍ତିଙ୍କ ସଂଯୋଗରେ ସେ ଶିବ ଅର୍ଥାତ୍ ମଙ୍ଗଳମୟ ଓ ସର୍ବଶକ୍ତିମାନ୍ ହୋଇଥାନ୍ତି । ସେ ଏହି ବିଶ୍ୱ ବ୍ରହ୍ମାଣ୍ଡର ସଂହାରକର୍ତ୍ତା ହୋଇଥିବା ବେଳେ ଏକାଧାରରେ ସେ ଦାତା, ଯୋଗୀ, ଜ୍ଞାନୀ, ତ୍ୟାଗୀ, ଭୋଗୀ ଓ ବିଶିଷ୍ଟ ବକ୍ତା ଅଟନ୍ତି । ସେ ତାଙ୍କର ଭକ୍ତମାନଙ୍କୁ ଧନସମ୍ପଦ ଓ ଐଶ୍ୱର୍ଯ୍ୟ ପ୍ରଦାନ ପୂର୍ବକ ପ୍ରୀତ କରୁଥିବା ବେଳେ ନିଜେ ଦୀନ ହୀନ ଦରିଦ୍ର ପରି ଶ୍ମଶାନରେ ଭୂତପ୍ରେତମାନଙ୍କ ମେଳରେ ଅବସ୍ଥାନ କରିଥାନ୍ତି । ଭଗବାନ୍ ରାମ ରାବଣଙ୍କୁ ମାରିବା ପାଇଁ ସେତୁବନ୍ଧରେ ରାମେଶ୍ୱର ଲିଙ୍ଗ ସ୍ଥାପନ ପୂର୍ବକ ପୂଜା ଉପାସନା କରି ବର ଲାଭ କରିଥିଲେ । ଅପରପକ୍ଷରେ ସାକ୍ଷାତ୍ ଶିବ ରୂପୀ ହନୁମାନ ରାମ ଦାସ ଭାବେ ଯୁଗେ ଯୁଗେ ପ୍ରସିଦ୍ଧ ।

କାହିଁ କେଉଁ କାଳରୁ ସେ ଗ୍ରାମେ ଗ୍ରାମେ ରହି ସର୍ବଦା ଭକ୍ତମାନଙ୍କୁ ଅନୁଗ୍ରହ ପ୍ରଦର୍ଶନ କରିଆସୁଛନ୍ତି । ପ୍ରତିମାସରେ ସେ ମଧ୍ୟ ବିଭିନ୍ନ ଉତ୍ସବ ମନାନ୍ତି । ବୈଶାଖ ମାସ ଶୁକ୍ଳ ତୃତୀୟା ଅର୍ଥାତ୍ ଅକ୍ଷୟ ତୃତୀୟାରୁ ସେ ବନ୍ଧୁଙ୍କ ମେଳରେ ୨୧ ଦିନ ଧରି ନାବ କେଳି କରିଥାନ୍ତି । ଜ୍ୟେଷ୍ଠ ମାସ ଶୁକ୍ଳ ପଞ୍ଚମୀ ତିଥିରେ ତାଙ୍କର ବିବାହୋତ୍ସବ ମହାସମାରୋହରେ ସର୍ବତ୍ର ପାଳିତ ହୋଇଥାଏ । ପରଦିନ କହିଲେ ଶୁକ୍ଳ ଷଷ୍ଠୀରେ ସେ ନବବିବାହିତା ପତ୍ନୀଙ୍କୁ ସାଥିରେ ଧରି ନଗ୍ର ପରିକ୍ରମା କରନ୍ତି । ଆଷାଢ଼ ମାସ ଶୁକ୍ଳ ଚତୁର୍ଦ୍ଦଶୀରେ ତାଙ୍କର ଶୟନୋତ୍ସବ ପାଳିତ ହୋଇଥାଏ । ଶ୍ରାବଣ ମାସରେ କାଉଡ଼ିଆ ଭକ୍ତମାନେ ପବିତ୍ର ନଦୀମାନଙ୍କରୁ ଜଳ ସଂଗ୍ରହ କରି ତାଙ୍କର ଜଳାଭିଷେକ କରିଥାନ୍ତି । ମାସେ ବ୍ୟାପୀ ଏହି ଉତ୍ସବ ମହାସମାରୋହରେ ପାଳନ କରାଯାଏ । ଭାଦ୍ରବମାସ ଶୁକ୍ଳ ଚତୁର୍ଦ୍ଦଶୀରେ ତାଙ୍କର ପାର୍ଶ୍ୱପରିବର୍ତ୍ତନ ଉତ୍ସବ ପାଳିତ ହୁଏ । କାର୍ତ୍ତିକ ମାସରେ ପ୍ରତି ସୋମବାର ପୁନଶ୍ଚ କାର୍ତ୍ତିକ ଶୁକ୍ଳ ଚତୁର୍ଦ୍ଦଶୀରେ ଭକ୍ତମାନେ ତାଙ୍କ ଉପାସନା ପୂର୍ବକ ବଡ଼ଓଷା ପାଳନ କରନ୍ତି । କାର୍ତ୍ତିକ ମାସ ଭଗବାନ୍ ଶିବଙ୍କ ବିଶେଷ ପ୍ରିୟ । ନାରଦ ପୁରାଣ କୁହନ୍ତି,

ନ କାର୍ତ୍ତିକ ସମୋ ମାସଃ ନ କୃତେନ ସମଂ ଯୁଗମ୍

ନ ବେଦେନ ସମଂ ଶାସ୍ତ୍ରଂ ନ ତୀର୍ଥଂ ଗଙ୍ଗୟା ସମମ୍ ।

କାର୍ତ୍ତିକ ଶୁକ୍ଳ ଚତୁର୍ଦ୍ଦଶୀରେ ହିଁ ଭଗବାନ୍ ଶିବ ଶୟନ ତ୍ୟାଗ କରିଥାନ୍ତି । ଏହିଦିନ ରାତ୍ରିର ଶେଷ ପ୍ରହରରେ ଶିବାଳୟମାନଙ୍କରେ ଗଜ, ତରଣ ଆଦି ପ୍ରସାଦ ପ୍ରସ୍ତୁତ କରାଯାଇ ଭୋଗ ଲଗାଯାଏ । ଶିବ ମନ୍ଦିର ସବୁ ଲୋକାରଣ୍ୟ ହୋଇପଡ଼େ । ହରିବୋଲ ହୁଳହୁଳି ଓ 'ଜୟ ଶିବଶମ୍ଭୁ' ଧ୍ୱନିରେ ଗଗନ ପବନ ପ୍ରକମ୍ପିତ ହୁଏ । କ୍ଷୀର, ଲହୁଣି, ନବାତ, ପାଚିଲା କଦଳୀ, କନ୍ଦ, ମହୁ, ଆଖୁରସ ଓ ଭାଙ୍ଗ ଘର୍ଷଣ ପୂର୍ବକ ତାଙ୍କର ଅଭିଷେକ କାର୍ଯ୍ୟ କରାଯାଇଥାଏ । ମାର୍ଗଶିର ମାସରେ ପ୍ରାବରଣ ଷଷ୍ଠୀ ଉତ୍ସବ ପୌଷ ମାସରେ ପୁଷ୍ୟାଭିଷେକ ଶିବାଳୟମାନଙ୍କରେ ପାଳିତ ହୁଏ । ମକର ସଂକ୍ରାନ୍ତିରେ ଶିବ ମନ୍ଦିରମାନଙ୍କରେ ମକର ଚାଉଳ ଭୋଗ ସାଙ୍ଗକୁ ମକର ବେଢ଼ା ଅନୁଷ୍ଠିତ ହୋଇଥାଏ । ଚୈତ୍ରମାସ ଶୁକ୍ଳ ଅଷ୍ଟମୀ ତିଥିରେ ଭଗବାନ ଶିବ ରଥାରୋହଣ ପୂର୍ବକ ରଥଯାତ୍ରାରେ ନିଜକୁ ସାମିଲ କରିଥାନ୍ତି । ବର୍ଷରେ ପଡୁଥିବା ୨୪ଟି ଯାକ ଚତୁର୍ଦ୍ଦଶୀ ତିଥି ଶିବଙ୍କର ଅତି ପ୍ରିୟ । ଏଥିରୁ ଫାଲ୍‌ଗୁନ କୃଷ୍ଣ ଚତୁର୍ଦ୍ଦଶୀ ସର୍ବୋତ୍ତମ ଅଟେ । ଏହି ସମୟରେ ଋତୁରାଜ ବସନ୍ତ ଧରାଧାମରେ କରୁଥାନ୍ତି ରାଜୁତି । ମଧୁମଳୟର ମନ୍ଦ ପ୍ରବାହ ସାଙ୍ଗକୁ କୁହୁତାନରେ ଆବାହନୀ ସଙ୍ଗୀତ ଗାଇଥାନ୍ତି ପିକବଧୂଗଣ । ନବ କିସଳୟର ଅରୁଣିମାରେ

ପରିଶୋଭିତ ହୋଇଥାଏ ବନରାଜି । ମଲ୍ଲୀ, ଚମ୍ପା, କେତକୀର ସୁଗନ୍ଧିରେ ସୁରଭିତ ହୋଇଥାଏ ଦିଗବିଦିଗ । କୀଟଠାରୁ ବ୍ରହ୍ମ ପର୍ଯ୍ୟନ୍ତ ସମସ୍ତେ ଶିବ ଉପାସନା ପାଇଁ ହୋଇଯାନ୍ତି ସତେ ଅବା ପ୍ରସ୍ତୁତ । ପ୍ରକୃତ ରାଣୀ କୃତାଞ୍ଜଳି ପୁଟରେ ଯେପରି ଆରମ୍ଭ କରିଦିଏ ଭଗବାନ୍ ଶଙ୍କରଙ୍କ ସ୍ତବ ସ୍ତୁତି ।

ସ୍କନ୍ଦ ପୁରାଣ କୁହନ୍ତି,

ପରାତ୍ ପରତରଂ ନାସ୍ତି ଶିବରାତ୍ରିଃ ପରାତ୍‌ପରମ୍
ନ ପୂଜୟତି ଭକ୍ତ୍ୟେଶଂ ରୁଦ୍ରଂ ତ୍ରିଭୁବନେଶ୍ୱରମ୍
ଜନ୍ମ ଜନ୍ମ ସହସ୍ରେଷୁ ଭ୍ରମତେ ନାତ୍ର ସଂଶୟଃ ।

ଫାଲ୍‌ଗୁନ କୃଷ୍ଣ ଚତୁର୍ଦ୍ଦଶୀ ଶିବରାତ୍ରି ନାମରେ ପ୍ରସିଦ୍ଧ । ଏହା ଶିବଙ୍କର ଅତି ପ୍ରିୟ ବ୍ରତ ଅଟେ । ଈଶାନ ସଂହିତା କୁହନ୍ତି,

ଶିବରାତ୍ରି ବ୍ରତଂ ନାମ ସର୍ବପାପ ପ୍ରଣାଶନମ୍
ଆଚାଣ୍ଡାଳ ପ୍ରସୂତାନାଂ ଭୁକ୍ତିମୁକ୍ତି ପ୍ରଦାୟକମ୍ ।

ଶ୍ରଦ୍ଧା ଉପବାସ ପୂର୍ବକ ଏହି ବ୍ରତ ଆଚରଣ କଲେ ସମସ୍ତ ପାପ ରାଶି ସମୂଳେ ଧ୍ୱଂସ ପାଇଯାଏ । ଶିବରାତ୍ରିରେ ଶିବ ଉପାସନା ସଂପର୍କରେ ସ୍କନ୍ଦପୁରାଣ କୁହନ୍ତି,

ତତୋ ରାତ୍ରୌ ଚ କର୍ତ୍ତବ୍ୟଂ ଶିବପ୍ରୀଣନ ତତ୍‌ପରୈଃ
ପ୍ରହରେ ପ୍ରହରେ ସ୍ନାନଂ ପୂଜାଂ ଚୈବ ବିଶେଷତଃ ।

ଭଗବାନ୍ ଶିବ ହେଉଛନ୍ତି ମଙ୍ଗଳମୟ ଓ ଧର୍ମର ରକ୍ଷକ । ତାଙ୍କୁ ଆରାଧନା କରାଯାଉଥିବା ରାତ୍ରିକୁ ଶିବରାତ୍ରି କୁହାଯାଇଥାଏ । ଶିବ ଆଶ୍ରିତ ରାତ୍ରି, ଶିବରାତ୍ରି ଅଟେ । ଏହି ରାତ୍ରିରେ ଉଜାଗର ରହି ଦୀପ ପ୍ରଜ୍ୱଳନ ପୂର୍ବକ ଭଗବାନ ଶିବଙ୍କୁ ପୂଜା ଆରାଧନା କରାଯାଇଥାଏ । ପ୍ରଥମ ପ୍ରହରରେ ରଜୋଗୁଣ ସମ୍ପନ୍ନ ଭଗବାନ ଶିବଙ୍କ ପ୍ରତୀକ ସର୍ବରୂପୀ ଲିଙ୍ଗରେ କ୍ଷୀରାଭିଷେକ କରାଯାଏ । ଦ୍ୱିତୀୟ ପ୍ରହରରେ ତମୋଗୁଣର ଆଧାର ଅଘୋରରୂପୀ ଶିବଲିଙ୍ଗଙ୍କୁ ଦଧି ଦ୍ୱାରା ଅଭିଷେକ କରାଯାଏ । ତୃତୀୟ ପ୍ରହରରେ ସତ୍ତ୍ୱ ଗୁଣମୟ ବାମଦେବରୂପୀ ଶିବଙ୍କୁ ଘୃତରେ ଅଭିଷିକ୍ତ କରାଯାଇଥାଏ । ଶେଷରେ ଚତୁର୍ଥ ପ୍ରହରରେ ତ୍ରିଗୁଣାତୀତ ଭଗବାନ୍ ସଦାଶିବଙ୍କୁ ମଧୁରେ ଅଭିଷିକ୍ତ କରାଗଲା ପରେ ଭକ୍ତମାନଙ୍କର ପରମ ଇପ୍ସିତ ମହାଦୀପ ମନ୍ଦିର ଚୂଡ଼ାକୁ ଉଠାଯାଏ । ହରିବୋଲ ହୁଳହୁଳି ଧ୍ୱନି ସହ ଶଙ୍ଖ, ଘଣ୍ଟ, ଘଣ୍ଟା ବାଦ୍ୟରେ ନିନାଦିତ ହୁଏ ମନ୍ଦିରର ପବିତ୍ର ପରିବେଶ । ମହାଦୀପର ସେହି ଦେଦୀପ୍ୟମାନ ଜ୍ୟୋତି ଅଜ୍ଞାନରୂପକ ଅନ୍ଧକାର ଦୂର କରି ଜ୍ଞାନାଲୋକରେ ଉଦ୍‌ଭାସିତ କରିଥାଏ ବିଶ୍ୱବ୍ରହ୍ମାଣ୍ଡକୁ ।

ଆସନ୍ତୁ, ଆମେ ହୃଦୟ ରୂପକ ଦୀପରେ ଭକ୍ତିରୂପକ ଘୃତ ଢାଳି ଭାବ ରୂପକ ସଳିତାରେ ବିଶ୍ୱାସ ରୂପକ ଅଗ୍ନି ସଂଯୋଗ କରି ଜ୍ୟୋତି ସ୍ୱରୂପ ସେହି ପରମାତ୍ମା ଶିବଙ୍କୁ ଆରାଧନା କରିବା, ଫଳରେ ଆମମାନଙ୍କର ମନ ହେବ ଆଲୋକିତ ଆଉ ପରମାତ୍ମା ଶିବଙ୍କର ମିଳିବ ଦିବ୍ୟଦର୍ଶନ । ଏହି ମାନବ ଜୀବନ ହେବ ସଫଳ ଏବଂ ସାର୍ଥକ, ଜୀବନର ଗତି ପଥରେ ଆସିବ ପରିବର୍ତ୍ତନ । ପରମ କାରୁଣିକ ସଦା ମଙ୍ଗଳମୟ ଭଗବାନ୍ ଶିବ କରିବେ ଆଶୀର୍ବାଦ । ଆମର ଚଲାପଥ କୁସୁମିତ ହେବ । ଜଗତର ହେବ କଲ୍ୟାଣ ।

ସଭାପତି, ବଟଶ୍ରୀକ୍ଷେତ୍ର
ପାଟେଣୀଗାଁ, ଜଗତସିଂହପୁର



# ହୋଲି ଉତ୍ସବର ତାତ୍ତ୍ୱିକ ରହସ୍ୟ

**ପଣ୍ଡିତ ଚକ୍ରଧର ଦାଶ**

ଋତୁରାଜ ବସନ୍ତ ଧରାପୃଷ୍ଠକୁ ଅବତରଣ କରିଛି – ତାର ଅପରୂପ ଲାବଣ୍ୟ ନେଇ ।

ଜୀର୍ଣ୍ଣତା, ଶୀର୍ଣ୍ଣତା ଓ ରୁକ୍ଷତାର ଅବସାନ ଘଟିଛି । ପତ୍ରଝଡ଼ା ବୃକ୍ଷଲତା ବସନ୍ତର କୁହୁକ ସ୍ପର୍ଶରେ ମୁକୁଳିତ ଏବଂ ପୁଷ୍ପିତ । ସ୍ତବକମାନଙ୍କର ମନୋରମ ସୁରଭିରେ ମହକିତ । ବନ ଉପବନରେ ନାଲି ପଳାସର ଚାହାଣୀ, କୃଷ୍ଣଚୂଡାର ଅପରୂପ ସୌନ୍ଦର୍ଯ୍ୟ, ସରସୀରେ ପଦ୍ମିନୀର ଠାଣି, ଆମ୍ରମଞ୍ଜରୀର ମାଦକତାରେ ବିମୋହିତ, କୋକିଳର କୁହୁତାନ । ମଧୁପାନକାରୀ ମଧୁପଗଣଙ୍କ ଗୁଣୁଗୁଣୁ ଗୁଞ୍ଜନ ବସନ୍ତର ମୃଦୁମନ୍ଦ ସମୀରଣ – ପ୍ରକୃତିରାଣୀର ଅପରୂପ ଲାବଣ୍ୟ କବି, କାଳ୍ପନିକ, ଶିଳ୍ପୀ, ପ୍ରେମିକ ସମସ୍ତଙ୍କୁ ଭାବବିହ୍ୱଳ କରିପକାଇଥାଏ । କବିର କଳ୍ପନା ତୂଳୀରେ ବସନ୍ତ ପ୍ରାଣବନ୍ତ ଏବଂ ସଶକ୍ତ ହେଲାବେଳେ କଳାକାରର ତୂଳୀରେ ସରସ ସୁନ୍ଦର ହୋଇଉଠେ । କବିକୁଳ କୁମୁଦ କାଳିଦାସ ଋତୁସଂହାରରେ ବସନ୍ତର ବର୍ଣ୍ଣନା ତାଙ୍କ କଳ୍ପନା ତୂଳୀରେ କରିଛନ୍ତି –



ବସନ୍ତରେ ବୃକ୍ଷଲତା ପତ୍ରପୁଷ୍ପରେ ବିମଣ୍ଡିତ । ଜଳରେ ପଦ୍ମ ବିକଶିତ । ପବନ ସୁଗନ୍ଧିତ ହୋଇଉଠିଛି । ସୁରଭିତ ସମୀର ପ୍ରବାହମାନ । ପ୍ରଭାତ ସମୟ ସୁଖକର ଏବଂ ସନ୍ଧ୍ୟା ସମୟ ଅତି ରମଣୀୟ । ପ୍ରକୃତିର ଏହି ବୈଚିତ୍ର୍ୟମୟ ପରିବେଶ ମଧ୍ୟରେ ଆନନ୍ଦ ଉଲ୍ଲାସର ଗଣପର୍ବ ''ହୋଲି'' ପ୍ରବେଶ କରି ଚାହିଁ ରହିଛି – ସମସ୍ତଙ୍କୁ ସ୍ୱାଗତ ଜଣାଇ ସମସ୍ତଙ୍କ ଅଙ୍ଗସଙ୍ଗ ଲାଭ କରି ସମସ୍ତଙ୍କୁ କୃତାର୍ଥ କରିବା ପାଇଁ । ହୋଲି – ସାଧାରଣ ପର୍ବ ନୁହେଁ । ତାହାରି ମୂଳରେ ବହୁ ତତ୍ତ୍ୱ ଆମ ବେଦ, ପୁରାଣ ଏବଂ ସାହିତ୍ୟମାନଙ୍କରେ ଲୁଚି ରହିଛି । ହୋଲି ଖେଳିବା ମୂଳରେ ବହୁ ଆଧ୍ୟାତ୍ମିକ, ବୈଜ୍ଞାନିକ ଏବଂ ସ୍ୱାସ୍ଥ୍ୟଗତ ତଥ୍ୟ ସମସ୍ତଙ୍କର ପ୍ରଣିଧାନଯୋଗ୍ୟ ଅଟେ ।

ହୋଲିର ଆଧ୍ୟାତ୍ମିକ ସ୍ୱରୂପ ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ ଏବଂ ସର୍ବଜନଗ୍ରାହ୍ୟ ଅଟେ । ବେଦ, ପୁରାଣର ପର୍ଯ୍ୟାଲୋଚନାରୁ ଜଣାଯାଏ ଫାଲ୍‌ଗୁନ ମାସ ପୂର୍ଣ୍ଣମୀରେ ପାଳିତ ହେଉଥିବା ମହୋତ୍ସବକୁ ହୋଳା, ହୋଲିକା ଏବଂ ''ହୋଲି'' କହନ୍ତି । ହୋଲିକା ଶବ୍ଦର ଅର୍ଥ – ଅଗ୍ନିର ରକ୍ଷିକା ଶକ୍ତି । ହୋମ ଏବଂ ଯଜ୍ଞ ସହିତ ଏହାର ସମ୍ବନ୍ଧ ଥିବାରୁ ଏହାର ନାମ ହୋଲିକା ଅଟେ । ପୁରାଣର ବର୍ଣ୍ଣନା ଅନୁସାରେ –

ସର୍ବଦୁଷ୍ଟାପହୋହୋମଃ ସର୍ବରୋଗପଶାନ୍ତୟେ
କ୍ରିୟତେସ୍ୟାଂ ଦ୍ୱିଜୈଃ ପାର୍ଥ ତେନ ସାହୋଲିକାସ୍ମୃତା ।

ସମସ୍ତ ଦୁଷ୍ଟ ପ୍ରଭାବର ବିନାଶ, ସମସ୍ତ ରୋଗର ଉପଶମ ନିମନ୍ତେ ବ୍ରାହ୍ମଣଙ୍କ ଦ୍ୱାରା କରାଯାଉଥିବା ହୋମକୁ 'ହୋଲିକା' କହନ୍ତି । ହୋଲି ଉତ୍ସବ ଅତ୍ୟନ୍ତ ପ୍ରାଚୀନ । ମହର୍ଷି ଜୈମିନି ''କର୍ମମୀମାଂସା'' ଶାସ୍ତ୍ରରେ ଏକ ସ୍ୱତନ୍ତ୍ର ଅଧିକରଣରେ ହୋଲିର ରଚନା କରିଛନ୍ତି । ଋଷି ବାତ୍ସ୍ୟାୟନ ଆର୍ଯ୍ୟମାନଙ୍କ ପ୍ରାଚୀନ ଉତ୍ସବ ରୂପରେ ହୋଲିକୁ ଗୁରୁତ୍ୱ ଦେଇଛନ୍ତି ।

ପୁରାଣ ମତରେ  ଚକ୍ରବର୍ତ୍ତୀ ସମ୍ରାଟ ରଘୁଙ୍କ ଶାସନକାଳରେ 'ଢୁଣ୍ଢା' ନାମକ ଏକ ଭୟାବହ ରାକ୍ଷସୀ ପିଲାମାନଙ୍କୁ ଉତ୍ପୀଡନ କରୁଥିଲା । ଏହାର ପ୍ରତିକାର ନିମନ୍ତେ ରାଜା ରଘୁ ଦେବର୍ଷି ନାରଦଙ୍କୁ ପଚାରିବାରୁ ଦେବର୍ଷି ନାରଦ କହିଲେ – ରାଜନ୍! 'ଢୁଣ୍ଢା' ରାକ୍ଷସୀର ବିନାଶର ଏକମାତ୍ର ଉପାୟ 'ହୋଲିକା' ନାମକ ଅଗ୍ନି । ଏହି ଅଗ୍ନିରେ ସର୍ବଦୁଷ୍ଟାପହ ହୋମ କରିବା ଦ୍ୱାରା ସେହି ଭୟଙ୍କର ଅନିଷ୍ଟକାରୀ 'ଢୁଣ୍ଢା' ରାକ୍ଷସୀର କବଳରୁ ରକ୍ଷା ମିଳିବ । ପିଲାମାନେ ଆନନ୍ଦ ଉଲ୍ଲାସର ସହିତ ହାତରେ କାଠଖଣ୍ଡ ଧରି ରାସ୍ତାରୁ ଉପଲବ୍ଧ କାଠି, ଡାଳ, ପତ୍ର, ତୃଣ ଆଦି ସଂଗ୍ରହ କରି ଏକାଠି ଏକ ନିରୋଳା ସ୍ଥାନରେ ରଖନ୍ତି । ବ୍ରାହ୍ମଣଙ୍କ ଦ୍ୱାରା ରକ୍ଷୋଘ୍ନ ମନ୍ତ୍ର ଉଚ୍ଚାରଣ କରି ସଂକଳ୍ପ କରାଯାଏ – 'ମମସ କୁଟୁମ୍ବସ୍ୟ ସପରିବାରସ୍ୟ ସର୍ବାପଚ୍ଛାନ୍ତି ପୂର୍ବକସକଳ ଶୁଭଫଳ ପ୍ରାପ୍ୟର୍ଥଂ ଢୁଣ୍ଢାପ୍ରୀତିକାମନାୟ ହୋଲିକା ପୂଜନଂ କରିଷ୍ୟେ' – ଏହାପରେ ଗନ୍ଧପୁଷ୍ପାଦି ସହିତ କୁହାଯାଏ, 'ଅସୃକ୍ୟାଭୟସଂତ୍ରସ୍ତୈଃ କୃତା ତ୍ୱଂ ହୋଲିବାଳିଶୈଃ ଅତସ୍ତ୍ୱାଂ ପୂଜୟିଷ୍ୟାମି ଭୂତେ ଭୂତି ପ୍ରପାଭବ ।'

ହେ ହୋଲିକା ରାକ୍ଷସୀ – ତୁମେ ଭୟଙ୍କର ରୋଗରୁ ରକ୍ଷା କର । ପୂଜାରେ ସନ୍ତୁଷ୍ଟ ହୋଇ ଆମର କଲ୍ୟାଣ କର । ଏହାପରେ ପିଲାମାନଙ୍କ ସହିତ ସମସ୍ତେ ଅଗ୍ନିକୁ ତିନିଥର ପରିକ୍ରମା କରୁଥିଲେ । ଏହି ଅଗ୍ନିରେ ପକା ହୋଇଥିବା ଅନ୍ନ ଏବଂ ନଡିଆକୁ ସମସ୍ତେ ପ୍ରସାଦ ରୂପେ ଗ୍ରହଣ କରି ଅଗ୍ନି ଭସ୍ମକୁ ମଥାରେ ଲଗାଇ ପରିବାରର ସମସ୍ତଙ୍କ ମଙ୍ଗଳ ପାଇଁ ନେଉଥିଲେ ।

ପୁରାଣର କିମ୍ବଦନ୍ତୀ ଅନୁସାରେ 'ଢୁଣ୍ଢା' ରାକ୍ଷସୀ ଭୟରୁ ପିଲାମାନଙ୍କର ସୁରକ୍ଷା ପାଇଁ ହୋଲିକା ଉତ୍ସବ ପାଳନର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ଶୀତଋତୁର ଶେଷ ଓ ବସନ୍ତ ଋତୁର ଆରମ୍ଭ ସନ୍ଧିକାଳରେ ସୂର୍ଯ୍ୟଙ୍କ କିରଣ ପ୍ରଖର ନ ଥିବାରୁ ଶୀତଳ ପବନ ପ୍ରବାହିତ ହେଉଥିବାରୁ ନାନାଦି ଭୂତାଣୁ ଯଥା – ହାଡଫୁଟି, ମିଳିମିଳା, ଏନ୍‌ଫ୍ଲୁଏଞ୍ଜା, ଭାଇରାଲ ଫିଭର, ହାଡଫୁଟି, ଥଣ୍ଡା, କାଶ, ଶ୍ୱାସରୋଗ ଏବଂ ବର୍ତ୍ତମାନର ମହାମାରୀ କରୋନା ପରି ଭୟଙ୍କର ରୋଗ ବ୍ୟାପିଥାଏ । ଏପରି ମହାମାରୀରୁ ରକ୍ଷା ପାଇବା ପାଇଁ ହୋମ ଯଜ୍ଞ କରାଯାଉଥିଲା । ଏହାଦ୍ୱାରା ବାୟୁରେ ମିଶି ସଂକ୍ରମଣ ସୃଷ୍ଟିକାରୀ ଅନେକ ଭୂତାଣୁ ଯଜ୍ଞଦ୍ୱାରା ମରିଯାଉଥିଲେ । ପ୍ରଦୂଷଣ ବାୟୁ ଯଜ୍ଞ ଦ୍ୱାରା ଶୁଦ୍ଧ ହେଉଥିଲା । ପ୍ରକୃତିକୁ ପ୍ରଦୂଷଣରୁ ବଞ୍ଚାଇବା ପାଇଁ ବୈଦିକ ଯୁଗରେ ଯଜ୍ଞକୁ ଅଧିକ ପ୍ରାଧାନ୍ୟ ଦିଆଯାଉଥିଲା ।

ହୋଲି ଉତ୍ସବର ଅନେକ ନାମ ରହିଛି । ଯଥା – ହୋଲି ଉତ୍ସବ, ମଦନ ମହୋତ୍ସବ, ପୁଷ୍ପ ମହୋତ୍ସବ, ଶାରଦା ମହୋତ୍ସବ ଓ ହୋଲାଷ୍ଟକ ମହୋତ୍ସବ ଇତ୍ୟାଦି । ହୋଲି ଉତ୍ସବ ପାଳନ ମୂଳରେ ଅନେକ କାରଣ ରହିଛି । ଭଗବାନ ଶିବଶଙ୍କର କାମଦେବଙ୍କୁ ଭସ୍ମ କରି କାମ ଦହନ କରିଥିବାରୁ ଏହାକୁ ମଦନ ମହୋତ୍ସବ ରୂପେ ପାଳନ କରାଯାଏ । ହିରଣ୍ୟକଶିପୁ ନିଜ ପୁତ୍ରକୁ ମାରିବା ପାଇଁ ଭଉଣୀ ହୋଲିକାର କୋଳରେ ପ୍ରହ୍ଲାଦକୁ ବସାଇ ଦେଇଥିଲେ । ଅଗ୍ନି ହୋଲିକାର କିଛି କ୍ଷତି କରିବ ନାହିଁ ବୋଲି ବର ପାଇଥିଲା । ମାତ୍ର ଅଗ୍ନିରେ ହୋଲିକା ଜଳିଗଲା ଓ ପ୍ରହ୍ଲାଦ ବଞ୍ଚିଗଲେ । ଏହି ସ୍ମୃତିକୁ ମନେରଖିବା ପାଇଁ ହୋଲି ପାଳନ କରାଯାଏ । ଭାରତବର୍ଷରେ ଗୁପ୍ତ ଯୁଗରେ ବୈଷ୍ଣବ ଧର୍ମର ପ୍ରସାର ଘଟିଥିଲା । ମହାକବି କାଳିଦାସଙ୍କ ଋତୁସଂହାର ଏବଂ ଅଭିଜ୍ଞାନ ଶକୁନ୍ତଳାମ୍ ଗ୍ରନ୍ଥରେ ମଦନ ମହୋତ୍ସବର ବର୍ଣ୍ଣନା ଦେଖିବାକୁ ମିଳେ । ଭବିଷ୍ୟ ପୁରାଣ ଅନୁସାରେ ଫାଲ୍‌ଗୁନ ପୂର୍ଣ୍ଣିମାରେ ଫଗୁ ପିଚ୍‌କାରୀ, ନୃତ୍ୟଗୀତ, ହାସ୍ୟରସ ଏବଂ ଆନନ୍ଦ ଉଲ୍ଲାସର ସହିତ ଏହି ପର୍ବ ପାଳିତ ହେଉଥିଲା । ଦ୍ୱାଦଶ ଶତାବ୍ଦୀ ବେଳକୁ ରାଧାକୃଷ୍ଣଙ୍କ

ଉପାସନାକୁ କେନ୍ଦ୍ର କରି ଦୋଳ ଉତ୍ସବ ଆରମ୍ଭ ହେଲା । ସ୍କନ୍ଦ ପୁରାଣର ପୁରୁଷୋତ୍ତମ ମାହତ୍ମ୍ୟରେ କୁହାଯାଇଛି–

'ଫାଲ୍‌ଗୁନ ମାସି କୁର୍ବୀତ ଦୋଳାରୋହଣମୁତ୍ତମମ୍
ଯତ୍ରକ୍ରୀଡତି ଗୋବିନ୍ଦୋ ଲୋକାନୁଗ୍ରହଣାୟବୈ ।'

ଆମ ଶ୍ରୀମନ୍ଦିର ନୀତିକାନ୍ତି ଅନୁସାରେ ଦୋଳ ଉତ୍ସବର ପ୍ରାଧାନ୍ୟ ରହିଛି । ଫଗୁ ଦଶମୀ ଦିନ ଶ୍ରୀଜଗନ୍ନାଥଙ୍କ ଚଳନ୍ତି ବିଗ୍ରହ ମଦନମୋହନ ଶ୍ରୀଦେବୀ ଏବଂ ଭୂଦେବୀଙ୍କ ସହିତ ବିମାନରେ ବସି ଜଗନ୍ନାଥ ବଲ୍ଲଭମଠକୁ ଯାଇଥା'ନ୍ତି । ଦୋଳ ବେଦୀରେ ଦଶମୀଠାରୁ ତ୍ରୟୋଦଶୀ ପର୍ଯ୍ୟନ୍ତ ମଦନମୋହନ ଏବଂ ଭୂଦେବୀ ଶ୍ରୀଦେବୀଙ୍କ ମଧ୍ୟରେ ଫଗୁ ଖେଳ ପରେ ନୈବେଦ୍ୟ ସମର୍ପଣ ହୁଏ । ଚତୁର୍ଦ୍ଦଶୀ ଦିନ ଅଗ୍ନି ଉତ୍ସବ ପାଳିତ ହୁଏ । ମେଷମୁଖାକୃତି ହୋଲିକା ରାକ୍ଷସର ଦହନ କରାଯାଇଥାଏ । ତା'ପରେ ବିଗ୍ରହମାନଙ୍କୁ ଫଗୁ, ଆମ୍ବ କଷି ଅର୍ପଣ କରାଯାଇଥାଏ । ଦୋଳରେ ଭଗବାନ ମଦନମୋହନଙ୍କୁ ଦର୍ଶନ କଲେ ମାନବ ମହାପାତକରୁ ଉଦ୍ଧାର ହୁଏ । ସେଥିପାଇଁ କୁହାଯାଇଛି –

ଦୋଳାୟମାନ ଗୋବିନ୍ଦଂ ମଞ୍ଚସ୍ଥଂ ମଧୁସୂଦନମ୍
ରଥସ୍ଥଂ ବାମନଂ ଦୃଷ୍ଟ୍ୱା ପୁନର୍ଜନ୍ମ ନବିଦ୍ୟଦେ ।

ଦୋଳରେ ବସିଥିବା ଗୋବିନ୍ଦ, ମଞ୍ଚାସୀନ ମଧୁସୂଦନ ଏବଂ ରଥସ୍ଥ ବାମନ ଅର୍ଥାତ୍ ଶ୍ରୀଜଗନ୍ନାଥଙ୍କୁ ଦେଖିଲେ ପୁନର୍ଜନ୍ମ ଲାଭ ହୁଏ ନାହିଁ । ଆମ ଓଡ଼ିଶାର ଗ୍ରାମ ଓ ସହରାଞ୍ଚଳରେ ଫଗୁ ଦଶମୀଠାରୁ ଚତୁର୍ଦ୍ଦଶୀ ପର୍ଯ୍ୟନ୍ତ ସୁସଜ୍ଜିତ ଦୋଳରେ ବସାଇ ଘର ଘର ବୁଲି ଠାକରଙ୍କୁ ଭୋଗ ଏବଂ ଅବିର ଅର୍ପଣ କରି ଭଗବାନଙ୍କ ଆଶୀର୍ବାଦ ପାଇଁ ଜନସାଧାରଣ କୃତାର୍ଥ ହୋଇଥା'ନ୍ତି । ଗ୍ରାମମାନଙ୍କରେ ଠାକୁରମାନଙ୍କର ଦୋଳ ମେଳଣ ଭକ୍ତି ବିଶ୍ୱାସ, ଉତ୍ସାହ, ଉଦ୍ଦୀପନାର ସହିତ ଅନୁଷ୍ଠିତ ହୋଇ ଗ୍ରାମମାନଙ୍କରେ ମିତ୍ରତା, ସହଯୋଗ, ସଂହତି ଓ ଭ୍ରାତୃତ୍ୱର ଭାବ ଜାଗ୍ରତ ଦୋଳ ପର୍ବର ମୁଖ୍ୟ ଆଭିମୁଖ୍ୟ । କଟକର ଧାକୁଲେଇ, ଜଟଣୀର ହରିରାଜପୁର ଦୋଳଯାତ୍ରା ଓଡିଶା ପ୍ରସିଦ୍ଧ । ଏହାର ଆତସବାଜି ଦର୍ଶନୀୟ ।

ଦୋଳପର୍ବରେ ଠାକୁରଙ୍କୁ ଉଖୁଡା, ଖଇ, ସାକର, ଖଜା, ଫେଣି, ଖୁସି, ଚଣା ଆଦି ପ୍ରସାଦ ରୂପେ ଅର୍ପଣ କରାଯାଇଥାଏ । ଚଣା ଏବଂ ଖଇ ଏହି ଋତୁରେ କଫ ଏବଂ କାଶ ରୋଗ ଭଲ କରେ । ଚଣା ଖାଇବା ଦ୍ୱାରା କାମ ଉତ୍ତେଜନା ହ୍ରାସ ପାଇଥାଏ । ଶାକର, ଫେଣି ଆଦି ମିଠା ଖାଦ୍ୟ ପିତ୍ତ ଏବଂ କାଶ ରୋଗ ଶାନ୍ତି କରାଇଥାଏ । ଆମ୍ବ କଷି କଷା ଲାଗେ । ଏହା ଏ ଦିନର ସ୍ୱରନଳୀ ବସିଯାଇଥିଲେ ତାହା ପରିଷ୍କାର କରେ । ଦେହରେ ଫଗୁ ଲଗାଇବା ଦ୍ୱାରା ବସନ୍ତ, ହାଡ଼ଫୁଟି, ମିଳିମିଳା, କାଛୁ, କୁଣ୍ଡିଆ ଏବଂ ଅନ୍ୟାନ୍ୟ ଚର୍ମରୋଗ ଦୂର ହୁଏ । ଆମ ସଂସ୍କୃତିରେ ଦୋଳ ଉତ୍ସବ ରଙ୍ଗ ଏବଂ ହାସ୍ୟ ବିନୋଦର ଉତ୍ସବ । ଭଗବାନ ଶ୍ରୀକୃଷ୍ଣ ତାଙ୍କର ପ୍ରିୟ ଗୋପବାସୀଙ୍କ ସହିତ ଫାଲ୍‌ଗୁନ ପୂର୍ଣ୍ଣମୀରେ ହୋଲି ଖେଳିଥା'ନ୍ତି । ବସନ୍ତରାସର ବର୍ଣ୍ଣନା ଅତି ରମଣୀୟ । ନନ୍ଦଗାଁର ନର ଏବଂ ବର୍ଷାନା ଗ୍ରମର ନାରୀଙ୍କ ମଧ୍ୟରେ ଚିତ୍ତାକର୍ଷକ ହୋଲି ଅନୁଷ୍ଠିତ ହୋଇଥାଏ ।

ଆମ ଭାରତବର୍ଷରେ ଆବାଳ ବୃଦ୍ଧବନିତା ହୋଲିକୁ ଆନନ୍ଦ ଉଲ୍ଲାସର ସହିତ ଗ୍ରାମରୁ ସହର ପର୍ଯ୍ୟନ୍ତ ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ମହାସମାରୋହରେ ପାଳନ କରିଥା'ନ୍ତି । ହୋଲି କିନ୍ତୁ ଫାଲ୍‌ଗୁନ ପୂର୍ଣ୍ଣମୀ ପରଦିନ ପାଳିତ ହୋଇଥାଏ । ଈଶ୍ୱରଙ୍କ ନିକଟରେ ଆମେ ସମସ୍ତେ ସମାନ । ସମସ୍ତଙ୍କର ଏକମାତ୍ର ଲକ୍ଷ୍ୟ କର୍ମମୟ ଜୀବନଜଞ୍ଜାଳ ମଧ୍ୟରେ ଏକଦିନ ହର୍ଷୋଲ୍ଲାସ, ନୃତ୍ୟଗୀତ, ଥଟ୍ଟା ପରିହାସ ମଧ୍ୟରେ ଶତ୍ରୁ ମିତ୍ର ଭୁଲି ପରସ୍ପର ନିଜ ନିଜ ମଧ୍ୟରେ ରଙ୍ଗ ବୋଳାବୋଳି ହୋଇ ଆନନ୍ଦ ଉପଲବ୍ଧ କରିବା । ପ୍ରତ୍ୟେକ ରଙ୍ଗର ମନୁଷ୍ୟ ଉପରେ ପ୍ରଭାବ ରହିଛି । ରଙ୍ଗ ଚିକିତ୍ସା ମାଧ୍ୟମରେ ବହୁ କଷ୍ଟସାଧ୍ୟ ରୋଗ ଭଲ କରାଯାଇପାରୁଛି । ପିଚକାରୀ ଦ୍ୱାରା ପରସ୍ପରକୁ ରଙ୍ଗ ମାରିବା, ଅବିର ଲଗାଇବା, ଥଟ୍ଟା ପରିହାସ କରିବା ହୋଲିର ମୁଖ୍ୟ ଉଦ୍ଦେଶ୍ୟ । ଶିଷ୍ଟାଚାର, ଶୃଙ୍ଖଳା ରକ୍ଷା କରି ନିଜର ଧନଜୀବନ ତଥା ଅନ୍ୟର ଜୀବନ ନଷ୍ଟ ନ ହେଲା ପରି ହୋଲି ପାଳନର ଆବଶ୍ୟକତା ରହିଛି । ଦ୍ରୁତ ଗତିରେ

ଗାଡ଼ି ଚଳାଇ, ନିଶାସକ୍ତ ହୋଇ ହୋଲି ଖେଳିବା ବିପଦର କାରଣ । ବଜାରରେ ମିଳୁଥିବା ରାସାୟନିକ ରଙ୍ଗ ଶରୀର ପ୍ରତି କ୍ଷତିକାରକ – ସେଥିପ୍ରତି ଧ୍ୟାନ ଦେଇ ସାବଧାନ ରହିବା ଆବଶ୍ୟକ । ଅକର୍ମଣ୍ୟ, ରୋଗୀ, ପିଲା, ବୃଦ୍ଧ ଏବଂ କାର୍ଯ୍ୟବ୍ୟସ୍ତ ଲୋକଙ୍କ ସହିତ ହୋଲି ଖେଳିବା ଠିକ୍ ନୁହେଁ । ହୋଲି ମୂଳରେ ବହୁ ଆଧ୍ୟାତ୍ମିକ, ସଂଯମ, ସଦାଚାର, ବ୍ରହ୍ମଚର୍ଯ୍ୟ ପାଳନ, ଆୟୁର୍ବେଦିକ ତତ୍ତ୍ୱ ନିହିତ । ସେଥିପାଇଁ ବୈଦିକ ମନ୍ତ୍ର କରି ହୋଲି ଆମ ସଂସ୍କୃତି, ସଭ୍ୟତା ଏବଂ ଜନସମାଜ ସହିତ ଜଡ଼ିତ ରହି ସମସ୍ତଙ୍କୁ ଆନନ୍ଦ, ଉଲ୍ଲାସ, ଥଟ୍ଟା ପରିହାସ ବାଣ୍ଟି କହୁଛି –

''ହସି ହସି ଜୀବନ ବଞ୍ଚିବା ଶିଖ ।''

ଗୁରୁକୃପା ଭବନ
୫୯୭, କଳିଙ୍ଗ ନଗର – ୭
ଭୁବନେଶ୍ୱର

## ଶ୍ରଦ୍ଧାଞ୍ଜଳି



**✓ ଡକ୍ଟର ହୁସେନ ରବିଗାନ୍ଧୀ**

ପୂର୍ବତନ ସମ୍ପାଦକ, ଉତ୍କଳ ପ୍ରସଙ୍ଗ

# ପରିବେଶ ଉପଯୋଗୀ ବିଦ୍ୟୁତ୍ ଯାନ

ଡଃ. ମାନସ ରଂଜନ ସେନାପତି

ପରିବେଶ ପାଇଁ ଅତି କ୍ଷତିକାରକ ପେଟ୍ରୋଲ କିମ୍ବା ଡିଜେଲ ଦ୍ୱାରା ଚଳାଚଳ କରୁଥିବା ଯାନଗୁଡ଼ିକୁ ବଦଳାଇବା ପାଇଁ ଜିରୋ ନିର୍ଗମନ ବିଦ୍ୟୁତ ଯାନ (ଇଭି)କୁ ବିଶ୍ୱବ୍ୟାପୀ ଉତ୍ସାହିତ କରାଯାଉଛି । ପ୍ରକୃତରେ ବିଦ୍ୟୁତ ଯାନ ହେତୁ କାର୍ବନ ନିର୍ଗମନ ଶୂନ୍ୟ ନୁହେଁ, କିନ୍ତୁ ଏହା ପେଟ୍ରୋଲ କିମ୍ବା ଡିଜେଲ କାର୍‌ଠାରୁ କମ୍ ଅଟେ । ଯୁକ୍ତରାଷ୍ଟ୍ର ଆମେରିକାରେ ବିଦ୍ୟୁତ ଯାନ ବିକ୍ରି ୨୦୧୬ ମସିହାଠାରୁ ବର୍ଷକୁ ଚାଳିଶ ପ୍ରତିଶତରୁ ଅଧିକ ବୃଦ୍ଧି ପାଇଛି । ୟୁରୋପ ୨୦୫୦ ମସିହା ସୁଦ୍ଧା ପ୍ରଥମ କାର୍ବନ-ନିରପେକ୍ଷ ମହାଦେଶ ହେବାକୁ ଯୋଜନା ପ୍ରସ୍ତୁତ କରୁଛି । ନରୱେରେ ମୁଣ୍ଡ ପିଛା ସର୍ବାଧିକ ସଂଖ୍ୟକ ବିଦ୍ୟୁତ୍ କାର୍ ରହିଛି । ବିଦ୍ୟୁତ୍ ଯାନ ବିଷୟରେ ଏହା ହେଉଛି ଆନ୍ତର୍ଜାତୀୟ ସ୍ଥିତି ।

ଭାରତରେ ମଧ୍ୟ ବିଦ୍ୟୁତ ଯାନ ସଂଖ୍ୟା ବୃଦ୍ଧି ପାଉଛି, ଚଳିତ ବର୍ଷର ପ୍ରଥମାର୍ଦ୍ଧରେ ଇଭି ରେଜିଷ୍ଟ୍ରେସନ ସଂଖ୍ୟା ୪୧୯,୦୦୦କୁ ବୃଦ୍ଧି ପାଇଛି । ୨୦୩୦ ମସିହା ସୁଦ୍ଧା ଭାରତରେ ଦୁଇ ଏବଂ ତିନି ଚକିଆ ଯାନର ୮୦%, ୪୦% ବସ୍ ଏବଂ ୩୦ ରୁ ୭୦% କାରଗୁଡ଼ିକ ବିଦ୍ୟୁତ ଯାନ ହେବ ବୋଲି ନିତି ଆୟୋଗ କହିଛନ୍ତି । ବିଦ୍ୟୁତ ଯାନ ପରିବହନକୁ ବୃଦ୍ଧି କରିବା ପାଇଁ ଉଭୟ କେନ୍ଦ୍ର ଏବଂ ରାଜ୍ୟ ସରକାର ବିଭିନ୍ନ ଯୋଜନା ଏବଂ ପ୍ରୋତ୍ସାହନ ଦେଉଛନ୍ତି । ଆହୁରି ମଧ୍ୟ ବିଦ୍ୟୁତ ଯାନ କ୍ରୟ ପାଇଁ ସରକାର ସବ୍‌ସିଡି ପ୍ରଦାନ କରୁଛନ୍ତି । କେବଳ ସେତିକି ନୁହେଁ ବିଦ୍ୟୁତ୍ କାର୍ କିଣୁଥିବା ଲୋକମାନଙ୍କ ପାଇଁ ୧.୫ ଲକ୍ଷ ଟଙ୍କା ଟିକସ ଛାଡ ମଧ୍ୟ ଦିଆଯାଉଛି । ଆଇସି ଇଞ୍ଜିନରୁ ଇଲେକ୍ଟ୍ରିକ୍ ମୋଟର ଚାଳିତ ପରିବହନକୁ ପରିବର୍ତ୍ତନ କରି ଦେଶ ଏକ ବୃହତ୍ ଉପାୟରେ ଉପକୃତ



ହେବାକୁ ଛିଡା ହୋଇଥିବାବେଳେ ଚାର୍ଜିଂ ଭିତ୍ତିଭୂମି ଅଭାବ, ଉଚ୍ଚ ପ୍ରାରମ୍ଭିକ ମୂଲ୍ୟ ଏବଂ ଅକ୍ଷୟ ଶକ୍ତିରୁ ଉତ୍ପାଦିତ ବିଦ୍ୟୁତ୍ ଅଭାବ ଭଳି ଚ୍ୟାଲେଞ୍ଜ ଇତ୍ୟାଦି ରହିଛି । ବିଦ୍ୟୁତ ଯାନଗୁଡିକ ଅଧିକ ଶାନ୍ତ ଏବଂ ସହରଗୁଡିକରେ ଶବ୍ଦ ପ୍ରଦୂଷଣ ସ୍ତର ହ୍ରାସ କରିବାରେ ସହାୟକ ହୋଇପାରେ । ଉଲ୍ଲେଖଯୋଗ୍ୟ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ବିଷୟ ହେଉଛି, ପରିବେଶ ପ୍ରଦୂଷଣକୁ ହ୍ରାସ କରିବା ବ୍ୟତୀତ, ବିଦ୍ୟୁତ ଯାନ ବ୍ୟବହାର ହେତୁ ୨୦୩୦ ମସିହା ସୁଦ୍ଧା ପେଟ୍ରୋଲିୟମ ଆମଦାନୀକୁ ପ୍ରାୟ ୬୦ ବିଲିୟନ ଡଲାରକୁ ହ୍ରାସ କରିପାରେ । ଇଭି ବ୍ୟାଟେରୀ ନିୟମିତ କାର୍‌ରେ ଥିବା ବ୍ୟାଟେରୀ ତୁଳନାରେ ବଡ଼ ଏବଂ ଭାରୀ ଏବଂ ଅନେକ ଶହ ବ୍ୟକ୍ତିଗତ ଲିଥିୟମ୍-ଆୟନ କୋଷରେ ଗଠିତ, ଯାହାର ସମସ୍ତ ବିସର୍ଜନ ଆବଶ୍ୟକ ।

ବୃହତ ବ୍ୟାଟେରୀ ପ୍ୟାକ୍ ଯାହା ବିଦ୍ୟୁତ ଯାନଗୁଡିକ ମଡ୍ୟୁଲରେ ଗ୍ରୁପ୍ ହୋଇଥିବା ଅନେକ ହଜାର ସେଲ୍ ଧାରଣ କରିପାରେ । ପ୍ୟାକ୍‌କଗୁଡିକରେ ସେନ୍ସର, ସୁରକ୍ଷା ଉପକରଣ ଏବଂ ସର୍କିଟ ମଧ ଅନ୍ତର୍ଭୁକ୍ତ, ଯାହାକି ବ୍ୟାଟେରୀ କାର୍ଯ୍ୟକୁ ନିୟନ୍ତ୍ରଣ କରିଥାଏ, ଯାହାକି ବିସର୍ଜନ ଏବଂ ପୁନର୍ବାର ବ୍ୟବହାର ପାଇଁ ଏବଂ ଅତିରିକ୍ତ ଖର୍ଚ୍ଚ ଆବଶ୍ୟକ କରିଥାଏ । ଏଗୁଡିକ ବିପଜ୍ଜନକ ସାମଗ୍ରୀ ଜ୍ୱଳନ୍ତ ଇଲେକ୍ଟ୍ରୋଲାଇଟ୍ ଧାରଣ କରିଥାଏ ଏବଂ ଯଦି ନଷ୍ଟ ହୋଇଯାଏ କିମ୍ବା ଭୁଲ୍ ଚାର୍ଜ ହୁଏ ତେବେ ବିସ୍ଫୋରଣ ଏବଂ ଅଗ୍ନିକାଣ୍ଡ ଘଟିପାରେ ।



ଇଭି ଏକ ନୂତନ ପ୍ରଯୁକ୍ତିବିଦ୍ୟା ଏବଂ ସେମାନଙ୍କର ବ୍ୟାଟେରୀଗୁଡ଼ିକ ପେଟ୍ରୋଲ୍ ଯାନ ଅପେକ୍ଷା ଭିନ୍ନ ଶେଷ ଜୀବନ ପ୍ରକ୍ରିୟାକରଣ ଆବଶ୍ୟକ କରେ । ଲିଥିୟମ୍-ଆୟନ ବ୍ୟାଟେରୀ ହେଉଛି ଏକ ପ୍ରକାର ରିଚାର୍ଜଯୋଗ୍ୟ ବ୍ୟାଟେରୀ ଯେଉଁଥିରେ ଲିଥିୟମ୍ ଆୟନ ନକାରାତ୍ମକ ଇଲେକ୍ଟ୍ରୋଡରୁ ଇଲେକ୍ଟ୍ରୋଲାଇଟ୍ ମାଧ୍ୟମରେ ସକାରାତ୍ମକ ଇଲେକ୍ଟ୍ରୋଡକୁ ଡିସ୍‌ଚାର୍ଜ ସମୟରେ ଏବଂ ଚାର୍ଜ କରିବା ସମୟରେ ପଛକୁ ଯାଇଥାଏ ।

ସମ୍ପ୍ରତି, ଲିଥିୟମ୍-ଆୟନ ବ୍ୟାଟେରୀ ଏକ ବିଦ୍ୟୁତ ଚାଳିତ କାର୍‌ର ମୂଲ୍ୟର ୫୦% ଅଟେ, ଯାହା ସେମାନଙ୍କୁ ମହଙ୍ଗା କରିଥାଏ । ବିଦ୍ୟୁତ ଯାନର ଗ୍ରାହକମାନେ ଆଉ ଏକ ଅସୁବିଧାର ସମ୍ମୁଖୀନ ହେଉଛନ୍ତି – ଧୀର ବ୍ୟାଟେରୀ ଚାର୍ଜିଂ ଗତି । ବର୍ତ୍ତମାନ, କାରଗୁଡିକ ଘରେ ସମ୍ପୂର୍ଣ୍ଣ ରିଚାର୍ଜ କରିବାକୁ ପ୍ରାୟ ଦଶ ଘଣ୍ଟା ସମୟ ନେଇଥାଏ । ଚାର୍ଜିଂ ଷ୍ଟେସନଗୁଡିକରେ ଦ୍ରୁତତମ ସୁପରଚାର୍ଜଗୁଡିକ ମଧ ଯାନଗୁଡ଼ିକୁ ସଂପୂର୍ଣ୍ଣ ରିଚାର୍ଜ କରିବାକୁ ୨୦-୪୦ ମିନିଟ୍ ପର୍ଯ୍ୟନ୍ତ ଆବଶ୍ୟକ କରନ୍ତି । ଚାର୍ଜିଂ ସମୟ କମାଇବା ପାଇଁ ବର୍ତ୍ତମାନ ଏହା ଉପରେ ଅଧିକ ଗବେଷଣା ଚାଲିଛି । ଅଧିକାଂଶ ଇଭି ବ୍ୟାଟେରୀର ଆୟୁ ୧୫ ରୁ ୨୦ ବର୍ଷ ପର୍ଯ୍ୟନ୍ତ ଅଟେ । ଲିଥିୟମ୍-ଆୟନ ବ୍ୟାଟେରୀଗୁଡ଼ିକର ଜୀବନକାଳ ବୃଦ୍ଧି, ଶକ୍ତି ସାନ୍ଦ୍ରତା ବୃଦ୍ଧି, ନିରାପତ୍ତାକୁ ଉନ୍ନତ କରିବା, ମୂଲ୍ୟ ହ୍ରାସ କରିବା ଏବଂ ଚାର୍ଜିଂ ବେଗ ବୃଦ୍ଧି ପାଇଁ ଅନୁସନ୍ଧାନ ଚାଲିଛି । ଭବିଷ୍ୟତରେ ଏକାଧିକ ଆହ୍ୱାନକୁ ଦୃଷ୍ଟିରେ ରଖି ଇଭି ଇକୋସିଷ୍ଟମକୁ ଆମ ଦେଶରେ ବଜାୟ ରଖିବାକୁ ପଡିବ । ଇଲେକ୍ଟ୍ରିକ୍ ବା ବିଦ୍ୟୁତ ଯାନ ବଜାର ନିଶ୍ଚିତ ଭାବରେ ଆଗାମୀ ବର୍ଷଗୁଡିକରେ ବୃଦ୍ଧି ପାଇବ । ପରିବେଶ ସୁରକ୍ଷା ପାଇଁ ଚିନ୍ତା ଏବଂ ଜୀବାଶ୍ମ ଇନ୍ଧନର ମୂଲ୍ୟ ବୃଦ୍ଧି ସହିତ ବିଦ୍ୟୁତ ଯାନର ଆବଶ୍ୟକତା ବୃଦ୍ଧି ପାଇଛି ଏବଂ ଭବିଷ୍ୟତରେ ମଧ ତାହା କରିବ । ଯଦି ଉପଯୁକ୍ତ ଭିତ୍ତିଭୂମି ଯୋଗାଇ ଦିଆଯାଏ ଏବଂ ଯଦି ଏହା ସୁଲଭ ହୁଏ ଏବଂ ପ୍ରତ୍ୟେକ ଗ୍ରାହକ ଗୋଷ୍ଠୀକୁ ପ୍ରବେଶ କରେ, ତେବେ ଇଭି ବଜାର ଭବିଷ୍ୟତରେ ଆମ ଦେଶର ସବୁଠାରୁ ବଡ ଶିଳ୍ପରେ ପରିଣତ ହୋଇପାରେ ।

ଡିନ୍ ବିଜ୍ଞାନ
ବିପିୟୁଟି ଓ ରସାୟନ ବିଜ୍ଞାନ ବିଭାଗ ପ୍ରଫେସର
ଟ୍ରାଇଡେଣ୍ଟ ଏକାଡେମୀ ଅଫ୍ ଟେକ୍ନୋଲୋଜି
ଭୁବନେଶ୍ୱର



# ଶିଳାଲେଖର ଭାଷା କଥା

ଡକ୍ଟର ଦେବାଶିଷ ମହାପାତ୍ର

୨୦୦୪ରେ ପ୍ରଥମ ଶାସ୍ତ୍ରୀୟ ଭାଷା ଭାବେ ତାମିଲ, ୨୦୦୫ରେ ସଂସ୍କୃତ, ୨୦୦୮ରେ କନ୍ନଡ଼ ଓ ତେଲୁଗୁ ଏବଂ ୨୦୧୩ରେ ମାଲୟାଲମ ଶାସ୍ତ୍ରୀୟ ଭାଷାର ଗୌରବ ପାଇଥିବାବେଳେ୨୦୧୪ରେ ଓଡ଼ିଆ ଭାଷାକୁ ଶାସ୍ତ୍ରୀୟ ଭାଷାର ମାନ୍ୟତା ମିଳିଥିଲା । ପୋଥିରେ ଆମ ଭାଷାର ସ୍ୱାକ୍ଷର, ପଥରରେ ଆମ ଭାଷାର ଅକ୍ଷର । ଆଦିକବି ସାରଳା ଦାସ ଓଡ଼ିଆ ମହାଭାରତ ମଧ୍ୟପର୍ବରେ ଦ୍ୱାପର ଯୁଗରେ ଶ୍ରୀକୃଷ୍ଣ ତାଙ୍କ ଗୁରୁ ସନ୍ଦିପନୀଙ୍କଠାରୁ ୬୪ଟି ଭାଷା ଶିକ୍ଷା କରିଥିଲେ ବୋଲି ଉଲ୍ଲେଖ କରିଛନ୍ତି–ଓଡ଼ିଆ ତେଲଙ୍ଗା ଆଉ ନାଗରୀ ଦକ୍ଷିଣୀ/କନାଉଜ ଦ୍ରାବିଡ଼ ଯେ ଆଦି ଭାଷା ଘେନି/ଏହିପରି ଲେଖିଲେ ଯେ ଭାଷା ଚଉଷଠି/ନବଦିନେ ଲେଖିଲେ ଯେ ତାଳପତ୍ର ଚିଠି । ସେହିଭଳି ଲଳିତବିସ୍ତରରେ ବୁଦ୍ଧଦେବ ୬୪ଟି ଲିପି ଜାଣିଥିଲେ ବୋଲି ଉଲ୍ଲେଖ ଅଛି, ଯେଉଁଥିରେ ପ୍ରାଚୀନ ଓଡ଼ିଆ ଉଗ୍ର ବା ଉଡ୍ର ଲିପି ଅନ୍ୟତମ । ଏହିସବୁ ପ୍ରାଚୀନତା ଆଧାରରେ ଆମ ଓଡ଼ିଆ ଭାଷାକୁ ମିଳିଛି ଶାସ୍ତ୍ରୀୟ ଭାଷାର ମାନ୍ୟତା । ତାମ୍ରପତ୍ର, ସନନ୍ଦ, ପାହାଡ଼ ଗୁମ୍ଫା, ମନ୍ଦିର କାନ୍ଥ, ସ୍ତମ୍ଭ, ଶିଳାଲେଖରେ ଆମ ଲିପି, ଆମ ଭାଷାର କ୍ରମବିକାଶ ଦେଖିଲେ ଆମେ ଯେ ଏତେ ହଜାର ବର୍ଷର ପୁରୁଣା ଲିପି ଓ ଭାଷାର ଦାୟାଦ ସେକଥା ଉପଲବ୍ଧି କରୁ । ମାଧବ ବର୍ମାଙ୍କ ସନନ୍ଦ ହେଉ କି ଉର୍‌ଜାମ ଶିଳାଲେଖ, ଶ୍ରୀଜଙ୍ଗ ଶିଳାଲେଖ ହେଉ କି ଜୟବିଜୟ ଶିଳାଲେଖ ସବୁଠି ଆମ ଭାଷାର ପ୍ରାଚୀନତାର ପ୍ରମାଣ । ଅନଙ୍ଗ ଭୀମଦେବ ତୃତୀୟ, ଚନ୍ଦ୍ରିକା ଦେବୀ, ଅଚ୍ୟୁତ ବଳିୟାର ସିଂହ, ନରସିଂହ ଦେବ, ମାଧବ ବର୍ମା, ଶିବରାଜ, ପୁରୁଷୋତ୍ତମ ଦେବ, କପିଳେଶ୍ୱର ଦେବ, ଶ୍ରୀ ବିଚିତ୍ର ଭାନୁଦେବ, ଶୁଭକର ଦେବ, ଖାରବେଳ, ଅଶୋକଙ୍କ ସମୟର ଯେତେସବୁ ଅଭିଲେଖ ଆମ ରାଜ୍ୟର ବିଭିନ୍ନ ଅଞ୍ଚଳରୁ ଆବିଷ୍କୃତ ହୋଇଛି, ସେସବୁର ପାଠୋଦ୍ଧାର ହୋଇଛି ସତରେ ଖୁବ୍ ଉତ୍ସାହପ୍ରଦ । ଏକାଦଶ ଶତାବ୍ଦୀର ଗଣ୍ଡିବେଡ଼ ଅଭିଲେଖ, ଦଶମ ଶତାବ୍ଦୀର ମହାରାଜା ଉଦୟଖେଡ଼ିଙ୍କ ଗଞ୍ଜାମ ସନନ୍ଦ, ୧୦୨୩ରୁ ୧୦୩୦ ମଧ୍ୟରେ ଲିଖିତ ସୋମବଂଶୀ ଇନ୍ଦ୍ରନାଥଙ୍କ ବାଣପୁର ତାମ୍ରପଟା ଓ ଗଙ୍ଗବଂଶ ଶାସନ କାଳୀନ ଅଭିଲେଖ ଆମକୁ ଅନେକ କଥା କହେ । ସତ୍ୟନାରାୟଣ ରାଜଗୁରୁ, ପରମାନନ୍ଦ ଆଚାର୍ଯ୍ୟ, କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, କେଦାରନାଥ ମହାପାତ୍ର, କୁଞ୍ଜବିହାରୀ ତ୍ରିପାଠୀ, ମନମୋହନ ଚକ୍ରବର୍ତ୍ତୀ, ଦୀନେଶ ଚନ୍ଦ୍ର ସରକାର, ସ୍ନିଗ୍ଧା ତ୍ରିପାଠୀ ପ୍ରମୁଖ ବହୁ ଐତିହାସିକ, ପ୍ରତ୍ନତତ୍ତ୍ୱବିତ୍ ଆମ ଲିପି ଓ ଭାଷାର କ୍ରମବିକାଶ କଥା ଖୁବ୍ ସୁନ୍ଦର ଭାବେ ବିଶ୍ଳେଷଣ କରି ଏଯାବତ୍ ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ ମିଳିଥିବା ଅଭିଲେଖଗୁଡ଼ିକର ଅନୁଶୀଳନ କରିଛନ୍ତି । ଆମ ଅଭିଲେଖରେ ଆମ ଭାଷାର ପ୍ରାଚୀନତା ସ୍ପଷ୍ଟ । ପ୍ରତ୍ନ ଓଡ଼ିଆଠୁ ଆଧୁନିକ ଓଡ଼ିଆ ପର୍ଯ୍ୟନ୍ତ ଆମ ଭାଷାର ଗତିଶୀଳତା ଗବେଷକମାନଙ୍କୁ ଉତ୍ସାହିତ କରିଆସିଛି । ଅଭିଲେଖର ଭାଷାକୁ ଅନୁଶୀଳନ କଲେ ଏହା ପ୍ରାଚୀନ, ସମୃଦ୍ଧ, ସ୍ୱତନ୍ତ୍ର ଭାଷା ଭାବେ ପ୍ରତିଷ୍ଠିତ ଆମ ଓଡ଼ିଆ ଭାଷାର ମହକ ଓ ମିଠାପଣକୁ ଆମ ଆଗରେ

ଉପସ୍ଥାପନ କରିବା ଭଳି ଅନୁଭବ ହୁଏ । ପୋଥି, ପଥର, ପ୍ରତ୍ନତତ୍ତ୍ୱରେ ସାଇତା ସଂପଦ, ଆମ ଓଡ଼ିଆ ଭାଷା । ଭାରତର ଷଷ୍ଠ ଶାସ୍ତ୍ରୀୟ ଭାଷା, ଅଭିଲେଖର ଅଲିଭା ଅକ୍ଷରରେ ଆମ ଭାଷାର ପ୍ରାଚୀନତାର ପ୍ରମାଣ ଖୋଦିତ ହୋଇରହିଛି । ଓଡ଼ିଆ ଭାଷାରେ ଆବିଷ୍କୃତ ଶିଳାଲେଖ, ସନନ୍ଦରେ ସାଇତି ହୋଇ ରହିଥିବା ବର୍ଣ୍ଣ ଓ ଶବ୍ଦ ଦେଖିଲେ ବିସ୍ମିତ ହେବାକୁ ହୁଏ । ଏତେ ପ୍ରାଚୀନ, ଏଭଳି ସମୃଦ୍ଧ ଭାଷା କିଭଳି କ୍ରମାନ୍ୱୟରେ କ୍ରମବିକଶିତ ହୋଇଛି ତାହା ବାସ୍ତବିକ୍ ଅବର୍ଣ୍ଣନୀୟ । ଅନେକ ଶିଳାଲେଖ, ଆମ ଲିପି ଓ ଭାଷାର ଅନ୍ୟ ସ୍ୱାକ୍ଷର । ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀର ଅଶୋକଙ୍କ ଧଉଳି ଓ ଜଉଗଡ଼ ଶିଳାଲେଖଠାରୁ ଆରମ୍ଭ କରି ଖ୍ରୀଷ୍ଟାବ୍ଦ ୧୦୫୧ର ପ୍ରଥମ ପୂର୍ଣ୍ଣାଙ୍ଗ ଓଡ଼ିଆ ଶିଳାଲେଖ ଉର୍ଜାମ ପର୍ଯ୍ୟନ୍ତ ଅନୁଶୀଳନ କଲେ ବ୍ରାହ୍ମୀଲିପିରୁ ଓଡ଼ିଆ ଲିପିର କ୍ରମବମିକାଶ ସହ ଭାଷାର ପ୍ରବାହ ଓ ଗତିଶୀଳତାକୁ ଲକ୍ଷ୍ୟ କରାଯାଇପାରେ । ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀର ଖାରବେଳଙ୍କ ଉଦୟଗିରି ହାତୀ ଗୁମ୍ଫା ଅଭିଲେଖ, ଖ୍ରୀଷ୍ଟାବ୍ଦ ତୃତୀୟ ଶତାବ୍ଦୀର ରଣଭଦ୍ରଙ୍କ ଅଭିଲେଖ, ଖ୍ରୀଷ୍ଟାବ୍ଦ ୫୭୦ର ଶୈଳୋଦ୍ଭବ ବଂଶୀୟ ଧର୍ମରାଜଙ୍କ ସୁମଣ୍ଡଳ ତାମ୍ରଶାସନ, ଖ୍ରୀଷ୍ଟାବ୍ଦ ୬ ଶହର ଭୋଜବିଗ୍ରହଙ୍କ କଣାସ ତାମ୍ର ଶାସନ, ଖ୍ରୀଷ୍ଟାବ୍ଦ ୬୦୨ର ଶବରାଜଙ୍କ ପଟିଆ କିଲ୍ଲା ତାମ୍ରଶାସନ, ଖ୍ରୀଷ୍ଟାବ୍ଦ ୬୨୦ର ମାଧ ବବର୍ମାଙ୍କ ଗଞ୍ଜାମ ତାମ୍ରଶାସନ, ଖ୍ରୀଷ୍ଟାବ୍ଦ ୧୦୫୧ର ଉରଜାମ ଅଭିଲେଖ ଖ୍ରୀଷ୍ଟାବ୍ଦ ୧୨୬୧ର ଭୁବନେଶ୍ୱର ଦ୍ୱିଭାଷିକ ଅଭିଲେଖ, ଖ୍ରୀଷ୍ଟାବ୍ଦ ୧୪୦୩ର ଶ୍ରୀକୂର୍ମେଶ୍ୱର ଅଭିଲେଖ ସମେତ ବାଲେଶ୍ୱର ଜିଲ୍ଲା ସୋର ଅନ୍ତର୍ଗତ ଗଣ୍ଡିବେଡ଼ ଗ୍ରାମରୁ ମିଳିଥିବା ଗୋଟିଏ ଜୈନ ମୂର୍ତ୍ତିର ପାଦତଳେ ଖୋଦିତ ଓଡ଼ିଆ ପଦ୍ୟ – 'ଦେବ କହି ଭଗତି କରୁଣ, ଅଛନ୍ତି ଭୋ କୁମାର ସେଣ ।' ଏସବୁରେ ରହିଛି ଆମ ଭାଷା, ଆମ ଲିପିର ଆଦ୍ୟ ପରିଚୟ । ଆମେ ଆମ ଅଭିଲେଖଗୁଡ଼ିକର ଭାଷାତାତ୍ତ୍ୱିକ ଅଧ୍ୟୟନ କଲେ ବିସ୍ମିତ ହେବାକୁ ହୁଏ ଯେ, ଆମ ବର୍ଣ୍ଣମାଳାର ଅଣଚାଶଟି ବର୍ଣ୍ଣ ଅଧିକାଂଶ ଅଭିଲେଖରେ ଖୋଦିତ । ଖାଲି ସେତିକି ନୁହେଁ ଓଡ଼ିଆ ବିଭକ୍ତିର ଚିହ୍ନ ମଧ ଏସବୁଥିରେ ସ୍ପଷ୍ଟ । ଅବଶ୍ୟ ଇ, ଈ, ଉ, ଊ, ସ, ଶ, ଷ ଏଭଳି ସ୍ୱାତନ୍ତ୍ର୍ୟର ବ୍ୟବହାର ନ ହୋଇ ଏହାକୁ ସ୍ୱାଭାବିକ ଭାବେ ଲେଖାଯାଇଥିବା ଦେଖାଯାଏ । ପ୍ରାଚୀନ ଅଭିଲେଖଗୁଡ଼ିକରେ ପାଲି, ପ୍ରାକୃତ ଶବ୍ଦାବଳୀର ବହୁଳ ବ୍ୟବହାର ବି ଗୋଟିଏ ବଡ଼ ବୈଶିଷ୍ଟ୍ୟ । ଖ୍ରୀଷ୍ଟାବ୍ଦ ତୃତୀୟ ଶତାବ୍ଦୀର ମହାରାଜ ରଣଭଦ୍ରଙ୍କ ଖୋଦିତ ଭଦ୍ରକ ଅନ୍ତର୍ଗତ ଭଦ୍ରକାଳୀ ଶିଳାଲେଖର ଦୃଷ୍ଟାନ୍ତ ଦିଆଯାଉ- ଅଗି (ଅଗ୍ନି), ଆଯ୍ୟ (ଆର୍ଯ୍ୟ), ବାପ (ବ୍ୟାପକ), ସିରି (ଶ୍ରୀ) ଇତ୍ୟାଦି । ଆମେ ୧୩୯୪ ଖ୍ରୀଷ୍ଟାବ୍ଦର ଶଙ୍କରାନନ୍ଦ ମଠ ତାମ୍ର ଶାସନକୁ ଅନୁଶୀଳନ କଲାବେଳ ଭିତର, ଭୂମି, ଶଏ ବାଟ, ଦିନ, ଏକାଦଶୀ, ଆଉ, କୋଠ, ଭାଗ, ତିନିସ, ବାଇସି, କଳା, ମଠ, ମାତ୍ରା ଆଦି ବହୁ ଓଡ଼ିଆ ଶବ୍ଦ ଦେଖୁ । ଯାହା ଆଲୋଚନା କରୁଥିଲେ, ଶଏ ଷ, ସ ଅଲଗା ନ ହୋଇ ଅନେକ ସମୟରେ ଏକ ଭାବେ ବ୍ୟବହାର ହୋଇଛି । ଏଇ ଯେମିତି ଶଙ୍କରାନନ୍ଦ ମଠ ତାମ୍ରଶାସନର ଶଏ (ଶହେ), ତିନିସ (ତିନିଶହ), ବାଇସି (ବାଇଶି) ଇତ୍ୟାଦି । କୌତୂହଳର କଥା, ଏହି ତାମ୍ରଶାସନରେ ଆଉ ଠାଏ ସଏ (ଶହେ) ଲେଖାଯାଇଛି । ୧୨୭୮ ଖ୍ରୀଷ୍ଟାବ୍ଦର ଅନନ୍ତ ବାସୁଦେବ ମନ୍ଦିର ଶିଳାଲେଖ, ଭୁବନେଶ୍ୱରରେ ସମୁଦାୟ ୨୩ଟି ସଂସ୍କୃତ ଶ୍ଲୋକ ଥିବା କଥା ପାଠୋଦ୍ଧାରରୁ ଜଣାଯାଏ । ତେବେ ଏଥିରେ ତରତର, ସଙ୍ଗରେ, ଧୁନି, ଲୋକ, କଳ, ମାଳ, କଣିକା, ପାତାଳ ପ୍ରଭୃତି ଓଡ଼ିଆ ଶବ୍ଦ ରହିଥିବା ବି ଦେଖାଯାଏ । ଅଭିଲେଖର ଆଲୋଚନାବେଳେ ଭୁବନେଶ୍ୱରର ଉଦୟଗିରିରେ ଥିବା ଖାରବେଳଙ୍କ ହାତୀଗୁମ୍ଫା ପ୍ରଶସ୍ତି, ଯାହା ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀ ସମୟର ସେହି ଶିଳାଲେଖରୁ ଉଦ୍ଧାର ହୋଇଥିବା ପ୍ରତ୍ନ ଓଡ଼ିଆ ଶବ୍ଦାବଳୀରୁ କିଛି ଶବ୍ଦ ଉଦ୍ଧାର କରିବା ଉଚିତ୍ ମନେହୁଏ- ସିରି (ଶ୍ରୀ), ପନ୍ଦରସ (ପନ୍ଦର), ଲଖନେନ (ଲକ୍ଷଣ), ଯୋବରାଜ (ଯୁବରାଜ), ପଛିମ (ପଶ୍ଚିମ), ବହୁଳଂ (ବହୁତ), ଅଠମେ (ଅଷ୍ଟମେ), ତପସି (ତପସ୍ୱୀ), ଅଠତିସାୟ (ଅଠତିରିଶ), ପବତେ (ପର୍ବତେ) ଆଦି ଶବ୍ଦ ସହ ସୁଭ (ଲାଭ), ସିତଳ (ଶୀତଳ), ଗଜ, ନର, ବାଟ,

ବିଧି, ହିତ, କର, ବଣ, ବାହନ, ଘର, ଜୟ, ନଗରି (ନଗରୀ), ଦେହ, କାଳ, କୁଳ, ବଳ ଆଦି ଶବ୍ଦର ବ୍ୟବହାର ହୋଇଥିବା ଦେଖାଯାଏ । ବ୍ରାହ୍ମଣ ଶବ୍ଦ ପାଇଁ ଏହି ଶିଳାଲେଖରେ ବମ୍ଭଣାନଂ, କୁଶଳ ପାଇଁ କୁସଳୋ, ପ୍ରବେଶ ପାଇଁ ପବେସ, ପୋଖରୀ ପାଇଁ ତଡ଼ାଗ, ନିବାସ ପାଇଁ ନିବେସିତଂ ଶବ୍ଦର ବ୍ୟବହାର ହୋଇଥିବା କଥା ଲିପିତତ୍ତ୍ୱବିତ୍ ଓ ଐତିହାସିକଗଣ ମତ ଦିଅନ୍ତି । ଖାରବେଳଙ୍କ ଖଣ୍ଡଗିରି–ଉଦୟଗିରିର ହାତୀଗୁମ୍ଫା ଶିଳାଲେଖ ଭଳି ଅଶୋକଙ୍କ ଧଉଳି–ଜଉଗଡ଼ ଶିଳାଲେଖ ପ୍ରସିଦ୍ଧ । ଆମ ଓଡ଼ିଆ ଭାଷାକୁ ଶାସ୍ତ୍ରୀୟ ଭାଷାର ମାନ୍ୟତା ଦେବାରେ ଏହି ତିନୋଟି ଶିଳାଲେଖ ପ୍ରମାଣିକ ନମୁନା । ଆମ ଲିପିର ପ୍ରାଚୀନତା ଏସବୁରେ ଖୋଦିତ । ପ୍ରାଚୀନତାର ପ୍ରମାଣ ପ୍ରଦର୍ଶନ କରୁଥିବା ଅଶୋକଙ୍କ ଧଉଳି–ଜଉଗଡ଼ ଶିଳାଲେଖରେ ଆଖି, ଇସା, କଳେ, କିଟ, ତିନି, ଦୁବେ, ହସ, ନିଲଠା, ପୁଠିବି, ପଟିକା, ଚୁଡ଼, ବାମନ, ମନିସ, ମାଝି, ମହାମାତର ବ୍ୟବହାର ଦେଖାଯାଏ । ଏ ପର୍ଯ୍ୟନ୍ତ ଆମ ରାଜ୍ୟରେ ୧୦୫୧ଖ୍ରୀ.ଅ. ଉରଜାମ ଶିଳାଲେଖଠାରୁ ୧୫୬୮ଖ୍ରୀ.ଅ. ଶ୍ରୀମନ୍ଦିର ଜୟବିଜୟ ଶିଳାଲେଖ ପର୍ଯ୍ୟନ୍ତ ସମୁଦାୟ ଅଶିଟି ଶିଳାଲେଖର ପାଠୋଦ୍ଧାର ହୋଇପାରିଛି । ଆମ ଅଭିଲେଖର ଭାଷା କଥା ବିଚାର କଲାବେଳେ କେତୋଟି ନିର୍ଦ୍ଦିଷ୍ଟ ଶିଳାଲେଖର ସମୟ, ବୈଶିଷ୍ଟ୍ୟ ବିଷୟ ଉପରେ ସାମାନ୍ୟ ଆଲୋକପାତ କରିବା – (୧) ଭୁବନେଶ୍ୱର ଶ୍ରୀ ଲିଙ୍ଗରାଜ ମନ୍ଦିର କାନ୍ଥରେ ୨୮  ୧୯' ପରିମିତ ସ୍ଥାନରେ ନଅ ଧାଡ଼ିରେ ଲେଖାଥିବା କଥାର ପାଠୋଦ୍ଧାର ହୋଇଛି । ଏ ବିଷୟରେ ଭାରତବର୍ଷର ବିଖ୍ୟାତ ଲିପିତତ୍ତ୍ୱବିତ୍ ଦୀନେଶ ଚନ୍ଦ୍ର ସରଙ୍କର ଇଂରାଜୀରେ ଓ ପ୍ରଖ୍ୟାତ ପ୍ରତ୍ନତତ୍ତ୍ୱବିତ୍ କେଦାରନାଥ ମହାପାତ୍ର, ଓଡ଼ିଆରେ ଆଲୋଚନା କରିଛନ୍ତି । ଶିଳାଲେଖଟିର ଭାଷା ସଂସ୍କୃତ, ଲିପି ନାଗରୀ ଓ ଏହା ବୈଶାଖ ମାସ କୃଷ୍ଣପକ୍ଷ ପ୍ରଥମ ଦିନ, ବୁଧବାରରେ ଲିଖିତ ଅନନ୍ତ ବର୍ମନ ଚୋଡ଼ଗଙ୍ଗଙ୍କ ଶାସନକାଳୀନ ଶିଳାଲେଖ, (୨) ଗୋପୀନାଥପୁର ଶିଳାଲେଖ, ଯାହାକି ପୁରୁଣା ଜଗନ୍ନାଥ ସଡ଼କରେ ଥିବା ଗୋପୀନାଥପୁର ଜଗନ୍ନାଥ ମନ୍ଦିର କାନ୍ଥରେ ଲେଖାଥିବା ସମୁଦାୟ ୩୦ ଧାଡ଼ି ବିଶିଷ୍ଟ ଲେଖା, ଯାହାର ଲିପି ପ୍ରତ୍ନ ଓଡ଼ିଆ ଓ ଭାଷା ସଂସ୍କୃତ । ଏହା ଗଜପତି କପିଳେଶ୍ୱର ଦେବଙ୍କ ସମୟର ଶିଳାଲିପି । ଏ ବିଷୟରେ ବାଗ୍ମୀ ବିଶ୍ୱନାଥ କର, 'ଉତ୍କଳ ସାହିତ୍ୟ'ର ସଂଖ୍ୟା ୯, ଭାଗ ୩ (ଆଶ୍ୱିନ, ୧୩୦୭ ସାଲ)ରେ 'ଗୋପୀନାଥପୁରର ଶିଳାଲିପି' ଲେଖାରେ ଆଲୋଚନା କରିଛନ୍ତି । (୩) ଶ୍ରୀଜଙ୍ଗ ଶିଳାଲେଖ, ଯାହା ଅଧୁନା ରାଜ୍ୟ ସଂଗ୍ରହାଳୟରେ ସଂରକ୍ଷିତ, ଏହାର ଭାଷା ଓ ଲିପି ଓଡ଼ିଆ, ୫୨  ୧୧' ପରିମିତ ସ୍ଥାନରେ ସମୁଦାୟ ୪୧ଟି ଧାଡ଼ି ଲେଖାଯାଇଛି । ଏହା ଗଜପତି ରାମଚନ୍ଦ୍ରଦେବଙ୍କ ଶାସନକାଳୀନ ଶିଳାଲେଖ । ଏ ବିଷୟରେ ବିଦେଶୀ ବିଦ୍ୱାନ୍ ଜନ୍ ବୀମ୍ସ ଓ ଭାରତବର୍ଷର ବିଖ୍ୟାତ ଲିପିତତ୍ତ୍ୱବିତ୍ ପଦ୍ମଶ୍ରୀ ସତ୍ୟନାରାୟଣ ରାଜଗୁରୁ ଆଲୋଚନା କରିଛନ୍ତି । (୪) ମଧୁକେଶ୍ୱର ମନ୍ଦିର ଶିଳାଲେଖ, ମୁଖଲିଙ୍ଗମ୍‌ରେ ସମୁଦାୟ ୧୨ ଧାଡ଼ିର ଲେଖା, ଯାହାର ଲିପି ଓ ଭାଷା ତେଲୁଗୁ । ଶକାବ୍ଦ ୧୦୦୪ ର ଏହି ଶିଳାଲେଖ ଅନନ୍ତବର୍ମନ୍ ଚୋଡ଼ଗଙ୍ଗ ଦେବଙ୍କ ଶାସନକାଳୀନ ଶିଳାଲେଖ । (୫) ଶକାବ୍ଦ ୧୧୮୨ର ସିଂହାଚଳମସ୍ଥିତ ଲକ୍ଷ୍ମୀ ନରସିଂହ ସ୍ୱାମୀ ମନ୍ଦିର ଶିଳାଲେଖଟି ଦ୍ୱିଭାଷୀ । ଏଥିରେ ସଂସ୍କୃତ ଓ ତେଲୁଗୁ ଭାଷାର ବ୍ୟବହାର ହୋଇଛି । ତେବେ ଏହାର ଲିପି ତେଲୁଗୁ । ସମୁଦାୟ ୨୮ଟି ଧାଡ଼ିଥିବା ଏହି ଲେଖାଟି କୁମ୍ଭ (ଫାଲଗୁନ) କୃଷ୍ଣପକ୍ଷ ତୃତୀୟ ଦିନ, ଶୁକ୍ରବାରରେ ଲେଖା ହୋଇଥିଲା । ଏମିତି ଅନେକ ଶିଳାଲେଖ ଓ ସନନ୍ଦରେ ଆମ ଭାଷା, ଲିପିର ପ୍ରାଚୀନତାର ପ୍ରମାଣ ରହିଥିବା କଥା ଆମେ ଉଭୟ ଇଂରାଜୀ ଓ ଓଡ଼ିଆ ଭାଷାରେ ଲେଖାଥିବା ଅସଂଖ୍ୟ ଲେଖା ସହ ପାଠ ଉଦ୍ଧାର ହୋଇ ଆଲୋଚନା ହୋଇଥିବା ଗବେଷଣାମୂଳକ ରଚନାଗୁଡ଼ିକରେ ମଧ୍ୟ ସ୍ପଷ୍ଟ ସୂଚନା ରହିଛି । ଦେଶୀ ଓ ବିଦେଶୀ ବିଦ୍ୱାନ୍‌ମାନଙ୍କର ଏ ସମ୍ବନ୍ଧରେ ଗବେଷଣା ବିସ୍ମୟକର । ଦେଶର ବହୁ ବିଦ୍ୱାନ୍, ଲିପିତତ୍ତ୍ୱବିତ୍ ଏହିସବୁ ଶିଳାଲେଖ ଉପରେ ମତ ମନ୍ତବ୍ୟ ଦେଇଛନ୍ତି ।

ଓଡ଼ିଶାର ବିଶିଷ୍ଟ ଗବେଷକ ଡକ୍ଟର ବେଣୀ ମାଧବ ପାଢ଼ୀ ତାଙ୍କର ପ୍ରସିଦ୍ଧ ପୁସ୍ତକ 'ଓଡ଼ିଶାର ସାହିତ୍ୟ, ସଂସ୍କୃତି ଓ ଧର୍ମଧାରା'ରେ ଯଥାର୍ଥରେ ଉଲ୍ଲେଖ କରିଛନ୍ତି ଯେ, 'ଜନସାଧାରଣଙ୍କ ଗୋଚରାର୍ଥେ ଲିଖିତ ରାଜାଦେଶ ଓ ସରକାରୀ ଇସ୍ତାହାର ଦେଶୀୟ ଭାଷାରେ ଲେଖାହେବା ଯୁକ୍ତିସଙ୍ଗତ । ନଚେତ୍ ଅନୁଶାସନର ଅର୍ଥ ବୁଝି ରାଜାଦେଶ ପାଳନ କରିବାରେ ସେମାନେ ସମର୍ଥ ହୋଇନଥାନ୍ତେ । ଅଶୋକଙ୍କ ଏକାଧିକ ଶିଳାଲିପି ଭାରତର ବିଭିନ୍ନ ପ୍ରାନ୍ତରରେ ଅବସ୍ଥାପିତ ହୋଇଥିଲା ଏବଂ ପ୍ରତ୍ୟେକର ଭାଷାରେ ବିଭିନ୍ନତା ପରିଲକ୍ଷିତ ହୁଏ । ଆଞ୍ଚଳିକ ବୈଷମ୍ୟ ନେଇ ଧଉଳି ଓ ଜଉଗଡ଼ର ଶିଳାଲିପି ଅଶୋକଙ୍କ କାଳରେ ପ୍ରଚଳିତ ଥିବା ଓଡ୍ରମାଗଧୀର ପରିଚୟ ପ୍ରଦାନ କରେ । (ପୃଷ୍ଠା-୬) ଆମ ଅଭିଲେଖର ଅନୁଶୀଳନ ବେଳେ ବହୁ ବୈଶିଷ୍ଟ୍ୟ ନଜରକୁ ଆସିଥାଏ । ଯେମିତିକି ଅଧିକାଂଶ ଶିଳାଲେଖରେ 'ଅଙ୍କ' ଦେଖିବାକୁ ମିଳେ, କେତେକ ଶିଳାଲେଖରେ 'ଶକାବ୍ଦ'ର ସୂଚନା ରହିଛି । କର୍ତ୍ତୃବାଚ୍ୟରେ ପ୍ରଥମା ବିଭକ୍ତିରେ ବହୁବଚନ ଭାବେ ମାନେ, ମାନଯାକ ଆଦି ବ୍ୟବହାର ହୋଇଥିବାବେଳେ ସମ୍ମାନାର୍ଥେ ଏ' ମଧ୍ୟ ଏକବଚନରେ ବ୍ୟବହାର କରାଯାଇଛି - କପିଳେଶ୍ୱର ରାଜାଏ ଦିଲେ । ସେମିତି କର୍ମକାରକରେ - କୁ,ନ୍ତି, ସଂପ୍ରଦାନକାରକରେ କୁ, କି, କଇ, କୈ, କେ, ଙ୍କୁ, ଙ୍କୀ, ଙ୍କର, କରଣକାରକରେ- ଏଁ, ଏ, ଅପାଦାନକାରକରେ ତହୁଁ, ହୁଁ, ଉ, ଉଁ, ଠୋ, ରୁ, ରୁ ଠାରୁ, ଷଷ୍ଠୀ ବିଭକ୍ତିରେ- ସ, ର, କୋ, ଙ୍କ, ଙ୍କର, ଙ୍କରି, ମାନର, ମାନଙ୍କର, ଅଧିକରଣକାରକରେ - ଏ, ଏଁ, ରେ, ମାନଙ୍କରେ ଓ ସମ୍ବୋଧନ ପଦରେ ଭୋ ବ୍ୟବହାର ଦେଖାଯାଏ । ଆମ ଅଭିଲେଖଗୁଡ଼ିକରେ 'କୁ' ଅପେକ୍ଷା କୈ ବା କଇ'ର ବ୍ୟବହାର ହୋଇଥିବା ଲକ୍ଷ୍ୟ କରାଯାଏ । ଭାରତର ପ୍ରଖ୍ୟାତ ଲିପିତତ୍ତ୍ୱବିତ୍ ଦୀନେଶ ଚନ୍ଦ୍ର ସରକାର, ପ୍ରଖ୍ୟାତ ପ୍ରତ୍ନତତ୍ତ୍ୱବିତ୍ କେଦାରନାଥ ମହାପାତ୍ର, ପଦ୍ମଶ୍ରୀ ପରମାନନ୍ଦ ଆଚାର୍ଯ୍ୟ, ପଦ୍ମଶ୍ରୀ ସତ୍ୟନାରାୟଣ ରାଜଗୁରୁ, ଡକ୍ଟର କୁଞ୍ଜବିହାରୀ ତ୍ରିପାଠୀ ପ୍ରମୁଖ ବହୁ ବିଦ୍ୱାନ୍ ଓଡ଼ିଆ ଅଭିଲେଖର ଭାଷା ବିଷୟରେ ଆଲୋଚନା କରି ଏହାର କ୍ରମବିକାଶ କଥା ସଦୃଷ୍ଟାନ୍ତ ବୁଝାଇଛନ୍ତି । ଗଞ୍ଜାମ, ଜଉଗଡ଼ର ୫୬୯-୭୦ର ଧର୍ମରାଜ ତାମ୍ରପତ୍ର, ବାଲେଶ୍ୱର, ସୋରର ଶାମଭୂଷଣ ତାମ୍ରପତ୍ର (ଆନୁମାନିକ ସମୟ ୫୭୯-୮୦), ପୁରୀ, କଣାସର ୫୯୯ର ଭୋଜବିଗ୍ରହ ତାମ୍ରପତ୍ର, ଗଞ୍ଜାମର ୬୧୯-୨୦ ର ମହାସାମନ୍ତ ମାଧବରାଜ ତାମ୍ରପତ୍ର ସମେତ ୧୦୫୧ ରୁ ୧୫୬୮ ଖ୍ରୀଷ୍ଟାବ୍ଦ ମଧ୍ୟରେ ଗଙ୍ଗବଂଶ ଶାସନକାଳୀନ ୧୮ ଓ ସୂର୍ଯ୍ୟବଂଶ ଶାସନକାଳୀନ ୫୦ ଶିଳାଲେଖରେ ଆମ ଭାଷାର କ୍ରମବିକାଶ ଧାରାବାହିକ ଭାବେ କିଭଳି ହୋଇଛି ଏବଂ ଲିପି ଓ ଭାଷାର ଏହି ଉନ୍ମେଷ ଓ ବିକାଶ ଦେଖିଲେ ବିସ୍ମିତ ହେବାକୁ ହୁଏ । ଓଡ଼ିଆ ଅଭିଲେଖରେ ବ୍ୟବହାର ହୋଇଥିବା 'ପଛ' ଗୋଟିଏ ଦୃଷ୍ଟାନ୍ତ ଯାହାକି ଉଭୟ ପଛପଟ ଓ ପରେ, ଉଭୟ ଅର୍ଥରେ ବ୍ୟବହାର ହୋଇଛି । ଗଙ୍ଗବଂଶୀ ପଞ୍ଚମ ବଜ୍ରହସ୍ତଦେବ, ୧୦୭୦ ଖ୍ରୀଷ୍ଟାବ୍ଦରେ ମୁଖଲିଙ୍ଗ ଶିବମନ୍ଦିରରେ ଖୋଦିତ କରିଥିବା ଏକ ତ୍ରିଭାଷୀ ଶିଳାଲେଖରେ ସଂସ୍କୃତ ଓ ତେଲୁଗୁ ଭାଷା ସହ ଓଡ଼ିଆ ଗଦ୍ୟର ପ୍ରମାଣ ମିଳୁଥିବାବେଳେ ପ୍ରଥମ ନରସିଂହଦେବ, ୧୨୪୬ ଖ୍ରୀଷ୍ଟାବ୍ଦରେ କପିଳାସ ଦଧିନଉତି ଶିଳାଲେଖରେ ଦସ (ଦଶ), ସମର, କାରଣ, ରାଜା, ଗଜପ୍ତି (ଗଜପତି), ବିଜୟ, ନରକ, ତୁଳସୀ ଆଦି ଅନେକ ଓଡ଼ିଆ ଶବ୍ଦ ଖୋଦିତ କରିଛନ୍ତି । ସେହିଭଳି ଭୁବନେଶ୍ୱରର ଅନନ୍ତ ବାସୁଦେବ ମନ୍ଦିର ଶିଳାଲେଖ, ଯାହାକି ୧୨୭୮ ଖ୍ରୀଷ୍ଟାବ୍ଦରେ ଖୋଦିତ ହୋଇଥିଲା, ସେଥିରେ ଓଡ଼ିଆ ଶବ୍ଦ ଥିବା କଥା ଆଲୋଚନା ହୋଇଛି । ସୋମବଂଶୀ ଇନ୍ଦ୍ରରଥଙ୍କ ବାଣପୁର ତାମ୍ରଶାସନ, ଗଙ୍ଗବଂଶ କାଳୀନ ମେଘେଶ୍ୱର ମନ୍ଦିର ଶିଳାଲେଖ, ପ୍ରଥମ ଭାନୁଦେବଙ୍କ ଅମରେଶ୍ୱର ମନ୍ଦିର ଶିଳାଲେଖ, ଭୁବନେଶ୍ୱର ଲିଙ୍ଗରାଜ ମନ୍ଦିର ମଧ୍ୟରେ ଥିବା ପାର୍ବତୀ ମନ୍ଦିର ଶିଳାଲେଖ ଆଦି ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ ଆବିଷ୍କୃତ ଓ ପାଠୋଦ୍ଧାର ହୋଇଥିବା ଅଭିଲେଖାଗୁଡ଼ିକର ଭାଷାତାତ୍ତ୍ୱିକ ଅଧ୍ୟୟନରୁ ସ୍ପଷ୍ଟ ହୁଏ ଯେ, ଆମ ଭାଷା ପ୍ରାଚୀନ ଓ ସମୃଦ୍ଧ ଭାଷା । ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀର ଅଶୋକଙ୍କ ଧଉଳି ଓ ଜଉଗଡ଼

ଶିଳାଲେଖଠାରୁ ଆରମ୍ଭ କରି ୧୦୫୧ର ଉର୍ଜାମ ଶିଳାଲେଖ ଓ ପରବର୍ତ୍ତୀ କାଳରେ ଓଡ଼ିଆ ଲିପି ଓ ଭାଷାର ବିକାଶଧାରା ସମୟସ୍ରୋତରେ ଗତିଶୀଳ ଓ କ୍ରମବିକଶିତ ହୋଇ ପୂର୍ଣ୍ଣାଙ୍ଗ ହୋଇପାରିଛି । ଏହା ଆମ ଭୂମି, ଭାଷାର ସଂପଦ ଓ ଗୌରବ ।

**ଶିଳାଲେଖ ଶବ୍ଦାବଳୀ**

ଧଉଳି ଶିଳାଲେଖ, ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀ, ଭୁବନେଶ୍ୱର

କଳେ, ତିନି, ଦୁବେ, ପଛା, ପନି, ସେ, ହାନି, ଆଖି, ଦସ, ନିଲଠା, ମାଝି, ବାମନ, ମହାମାତ, ମନିସ, କିଟି, ପଟିକା, ବୁଢ଼, ପାଟିପରି, ଲହେତୁ, ଇସା ।

**ହାତୀଗୁମ୍ଫା ଶିଳାଲେଖ, ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀ, ଭୁବନେଶ୍ୱର**

ଲୁଠିତ, ସିରି, ପନ୍ଦରସା, ସୁଭ, ଲଖନେନ, ଗୁଣ, ଯୋବରାଜ, ମହାରାଜା, ଯୁଗେ, ବିହତ, ଗୋପୁର, ପଛିମ, ହୟ, ଗଜ, ନର, ଗଧ, ବହୁଳଂ, ପୁନ, ରତନ, ପାଦେ, ପଚମେ, ସତ, ବାଟ, କର, ବଣ, ଘରିସି, ସେନ, ବାହନ, ଅନେକ, ପୋର, ଅଠମେ, ମହତ, ମଧୁର, ସହ, ଅଠତିସାୟ, ଯୋଜନା, କାଳ, ଚତୁର, ପବେସା, ଦୁତିୟେ ।

ଉଭୟ ଶିଳାଲେଖର ଲିପି – ବ୍ରାହ୍ମୀଲିପି ଓ ଭାଷା–ପାଲିଭାଷା ତେବେ ବହୁ ପ୍ରନ୍ ଓଡ଼ିଆ (Proto Odia) ଶବ୍ଦ ଦେଖିବାକୁ ମିଳେ ।

**ଆମ ଶିଳାଲେଖ : ତିଥି ଓ ତାରିଖ**

ମଧୁକେଶ୍ୱର ମନ୍ଦିର ମୁଖଲିଙ୍ଗ ଶିଳାଲେଖ, ଜାନୁୟାରୀ ୨୩, ୧୨୦୦ ଖ୍ରୀଷ୍ଟାବ୍ଦ, ଶୁକ୍ରବାର ।

ହଟକେଶ୍ୱର ମନ୍ଦିର ସିଂହଭରମ୍ ଶିଳାଲେଖ, ମାର୍ଚ୍ଚ ୨୪, ୧୨୦୫ ଖ୍ରୀଷ୍ଟାବ୍ଦ, ଗୁରୁବାର ।

ପାଟଳେଶ୍ୱର ମନ୍ଦିର ଶିଳାଲେଖ, ପୁରୀ, ଜୁନ୍ ୧୪, ୧୨୨୫ ଖ୍ରୀଷ୍ଟାବ୍ଦ, ଗୁରୁବାର ।

ଲକ୍ଷ୍ମୀନୃସିଂହ ମନ୍ଦିର ଶିଳାଲେଖ, ସିଂହାଚଳମ୍, ଡିସେମ୍ବର ୧, ୧୨୨୫ ଖ୍ରୀଷ୍ଟାବ୍ଦ, ମଙ୍ଗଳବାର ।

ଲିଙ୍ଗରାଜ ମନ୍ଦିର ଶିଳାଲେଖ, ଭୁବନେଶ୍ୱର, ଅପ୍ରେଲ୍ ୧୭, ୧୨୫୭ ଖ୍ରୀଷ୍ଟାବ୍ଦ, ମଙ୍ଗଳବାର ।

**ସହାୟକ ସୂଚୀ**

ସତ୍ୟନାରାୟଣ ରାଜଗୁରୁ, ଉତ୍କଳୀୟ ଲିପିତତ୍ତ୍ୱ, 'ସହକାର' ଏକାଦଶ ଭାଗ, ଏକାଦଶ ସଂଖ୍ୟା, ଫାଲ୍‌ଗୁନ ୧୩୩୮, ପୃଷ୍ଠା–୪୮୩–୪୮୭ ।

ସତ୍ୟନାରାୟଣ ରାଜଗୁରୁ, ଓଡ଼ିଆ ଲିପିର କ୍ରମବିକାଶ, ଓଡ଼ିଶା ସାହିତ୍ୟ ଏକାଡେମୀ, ଭୁବନେଶ୍ୱର–୧୯୬୦ ।

କୁଞ୍ଜ ବିହାରୀ ତ୍ରିପାଠୀ, The Evolution of Oriya language and Script, Utkal University, ୧୯୬୨ ।

D.C. Sircar, Indian Epigraphy, Motilal

Baranasi Das, New Delhi, 1965

ବରିଷ୍ଠ ଗବେଷକ
ଶାସ୍ତ୍ରୀୟ ଓଡ଼ିଆ ଉତ୍କର୍ଷ ଅଧ୍ୟୟନ କେନ୍ଦ୍ର
ଶିକ୍ଷା ମନ୍ତ୍ରାଳୟ, ଭାରତ ସରକାର
ଭୁବନେଶ୍ୱର–୭୫୧୦୦୯



# ଶାବର ଶ୍ରୀକ୍ଷେତ୍ର

**ରବିନାରାୟଣ ପାଣି**

ଶାବର ଶ୍ରୀକ୍ଷେତ୍ରରେ ଶବରେଶ୍ୱର ପ୍ରତିଷ୍ଠା ଏକ ଅବିସ୍ମରଣୀୟ ଘଟଣା । ପ୍ରଭୁ ଜଗନ୍ନାଥ ରତ୍ନ ସିଂହାସନରେ ଭୈରବ ଚକ୍ର ଉପରେ ଅଧିଷ୍ଠିତ ହୋଇଛନ୍ତି । ଶ୍ରୀଜଗନ୍ନାଥଙ୍କୁ ଭୋଗ ସମର୍ପଣ ହେବା ପରେ, ତାହା ଦେବୀ ବିମଳାଙ୍କୁ ସର୍ମପଣ କରାଗଲେ, ମହାପ୍ରସାଦରେ ପରିଣତ ହୁଏ । ଶ୍ରୀଜଗନ୍ନାଥ ମନ୍ଦିର ପରିସରରେ ମା' ବିମଳା ଏବଂ ବିଭିନ୍ନ ପାର୍ଶ୍ୱ ଦେବାଦେବୀଙ୍କ ମନ୍ଦିର ନିର୍ମାଣ କରାଯାଇଛି । ଶ୍ରୀମନ୍ଦିରର ଆଗ୍ନେୟ କୋଣରେ ରୋଷଶାଳା ଓ ତା'ର ଦ୍ୱାରଦେଶରେ ହନୁମାନ, ନୈରତ କୋଣରେ ଦେବୀ ବିମଳାଙ୍କ ମନ୍ଦିର, ବାୟୁକୋଣରେ ଶ୍ରୀ ମହାଲକ୍ଷ୍ମୀଙ୍କ ମନ୍ଦିର, ରୋଷଶାଳା ପରେ ଆଗ୍ନେୟ ଦିଗ ମଧ୍ୟରେ ଯଥାକ୍ରମେ ଶ୍ରୀଗଣେଶ ଓ ସୂର୍ଯ୍ୟନାରାୟଣଙ୍କ ମନ୍ଦିର, ଏହା ପରେ ଦକ୍ଷିଣ ଦିଗରେ ଶ୍ରୀ ଲକ୍ଷ୍ମୀ ନୃସିଂହ ମନ୍ଦିର, ଉଭୟ ଦେବୀଙ୍କ ମନ୍ଦିର ମଧ୍ୟରେ ଅର୍ଥାତ୍ ପଶ୍ଚିମ ଦିଗରେ ଶ୍ରୀ ସରସ୍ୱତୀ ଓ ଦେବୀ ଗାୟତ୍ରୀ ଏବଂ ବାୟୁକୋଣରେ ଅର୍ଥାତ୍ ଶ୍ରୀ ମହାଲକ୍ଷ୍ମୀଙ୍କ ମନ୍ଦିର ନିକଟରେ ଶ୍ରୀନବଗ୍ରହ ମନ୍ଦିର ନିର୍ମାଣ କରିବାକୁ ହେବ । ବାଇଶି ପାହାଚ ଆରମ୍ଭରେ ଦେବ ଦେବ ମହାଦେବଙ୍କ ମନ୍ଦିର ସହ ଉତ୍ତରବାୟୁ ଦିଗରେ ସ୍ନାନ ମଣ୍ଡପ ଓ ଦୋଳ ମଣ୍ଡପ ଆଦି ନିର୍ମାଣ କାର୍ଯ୍ୟ ଅପରିହାର୍ଯ୍ୟ । ଏହା ବ୍ୟତୀତ ଅଷ୍ଟଶମ୍ଭୁଙ୍କୁ ସ୍ଥାପନ କରି କୋଇଲି ବୈକୁଣ୍ଠ ଆଦି ମଧ୍ୟ ନିର୍ମାଣ କରାଯିବା ଆବଶ୍ୟକ । ଏସବୁ ମନ୍ଦିର ନିର୍ମାଣ କରି ଦେବାଦେବୀଙ୍କୁ ବିଜେ କରାଇଲେ ହିଁ, ଏହା ଅନ୍ୟ ଏକ କ୍ଷେତ୍ର ଶାବର କ୍ଷେତ୍ର ନାମକୁ ସାର୍ଥକ କରିବ । କାଳକ୍ରମେ ଏହିସବୁ ମନ୍ଦିର ନିର୍ମାଣ କରାଗଲା । ମନ୍ଦିରର ମୁଖଶାଳା ବା ଜଗମୋହନ, ନାଟମଣ୍ଡପ ଓ ଭୋଗମଣ୍ଡପ କରାନଯାଇ, ଏହାକୁ ସଂଲଗ୍ନ କରି ଏକ ସୁରମ୍ୟ ମଣ୍ଡପ ନିର୍ମାଣ କରାଗଲା ଓ ଏହାର ମଧ୍ୟସ୍ଥଳରେ ବୃଷଭ ସ୍ଥାପିତ ହେଲେ । ମନ୍ଦିର ବାଡ଼ମାନଙ୍କରେ ଦକ୍ଷିଣରେ ଶ୍ରୀ ଗଣେଶ, ଉତ୍ତରରେ ମାତା ପାର୍ବତୀ, ପୂର୍ବରେ କାର୍ତ୍ତିକେୟ ସ୍ଥାପିତ ହେଲେ, ଦ୍ୱାରପାଳ ରୂପେ ଦ୍ୱାରବନ୍ଧର ଉଭୟ ଦିଗରେ ନନ୍ଦି, ଉଭୟ ଦ୍ୱାର ମଧ୍ୟରେ ଦକ୍ଷିଣରେ ଗଙ୍ଗା, ଉତ୍ତରରେ ଯମୁନା ଏବଂ ଏରୁଣ୍ଡିରେ କାଳରାତ୍ରି ସ୍ଥାପନ ହେଲା । ମନ୍ଦିରର ଭିତର ପଟ ପୂର୍ବବାଡ଼ରେ ଧ୍ୟାନରତ ବାମଦେବଙ୍କ ଏକ ସୌମ୍ୟ ସୁନ୍ଦର ପ୍ରତିମା ସ୍ଥାପନ କରାଗଲା । ଶାବର ଶ୍ରୀକ୍ଷେତ୍ରରେ ଅଧିଷ୍ଠିତ ଏହି ଶିବ 'ଶବରେଶ୍ୱର' ନାମରେ ନାମିତ ଓ ତାହାଙ୍କ ମନ୍ଦିର 'ଶବରେଶ୍ୱର' ନାମରେ ପ୍ରସିଦ୍ଧି ଲାଭ କଲା । ଏଥିପାଇଁ କାଶୀ ବିଶ୍ୱନାଥରୁ ବାଣଲିଙ୍ଗ ଅଣାଗଲା । ଏହି ସମୟରେ ସମସ୍ତ ପାର୍ଶ୍ୱ ମନ୍ଦିର ଯଥା ଶ୍ରୀ ଗଣେଶ, ଶ୍ରୀ ସୂର୍ଯ୍ୟନାରାୟଣ, ମହାଲକ୍ଷ୍ମୀ, ନୃସିଂହ, ଶ୍ରୀ ବିମଳାଦେବୀ, ଶ୍ରୀ ଗାୟତ୍ରୀ ଦେବୀ ଓ ନବଗ୍ରହ ମନ୍ଦିର ବିଦ୍ୟମାନ ।

ଶାବର ଶ୍ରୀକ୍ଷେତ୍ରରେ ପ୍ରଭୁ ବଳଭଦ୍ର, ସୁଭଦ୍ରା ଓ ଶ୍ରୀଜଗନ୍ନାଥ ଓ ପ୍ରଭୁ ସୁଦର୍ଶନ ବିଜେ ହେବାର ୨୫ ବର୍ଷ ଅତିକ୍ରାନ୍ତ ପରେ ଅବିଭାଜ୍ୟ କୋରାପୁଟ ବାସୀଙ୍କୁ ନୀଳଶୈଳରେ ଏକାଦିକ୍ରମେ ଚାରିଧାମର, ଓଡ଼ିଶାର ତଥା ଭାରତବର୍ଷର ପ୍ରମୁଖ ଦେବାଦେବୀଙ୍କୁ ଦର୍ଶନ କରାଇବା ପାଇଁ ଉତ୍କଳ ଖଣ୍ଡପୀଠ ଓ ଭାରତ ଖଣ୍ଡପୀଠ ନିର୍ମାଣ କରାଗଲା । ଉତ୍କଳ ଖଣ୍ଡପୀଠରେ ଯଥାକ୍ରମେ (୧) ଶ୍ରୀକ୍ଷେତ୍ରର ସିଦ୍ଧ ମହାବୀର, (୨) କେନ୍ଦ୍ରାପଡ଼ାର ଶ୍ରୀବଳଦେବ ଜୀଉ, (୩) କଂଟିଲୋର ନୀଳମାଧବ, (୪) ବ୍ରହ୍ମଗିରିର ଶ୍ରୀଅଲାର ନାଥ,

(୫) ଓଡ଼ଗାଁର ଶ୍ରୀ ରଘୁନାଥ, (୬) ଭୁବନେଶ୍ୱରର ଅନନ୍ତ ବାସୁଦେବ, (୭) ଯାଜପୁରର ଶ୍ରୀ ବରାହନାଥ, (୮) ପାଇକମାଳର ଶ୍ରୀ ମାର୍ଜାର କେଶରୀ ନୃସିଂହ ନାଥ, (୯) ବୁଗୁଡ଼ାର ଶ୍ରୀ ବିରଂଚି ନାରାୟଣ, (୧୦) ରେମୁଣାର କ୍ଷୀରଚୋରା ଗୋପିନାଥ, (୧୧) ଚଣ୍ଡିଖୋଲର ମହାବିନାୟକ, (୧୨) ଶରଣକୁଳର ଶ୍ରୀ ଲଡ଼ୁବାବା, (୧୩) ଭଦ୍ରକର ଶ୍ରୀ ଆଖଣ୍ଡଳମଣି, (୧୪) ମହେନ୍ଦ୍ରଗିରିର ଗୋକର୍ଣ୍ଣେଶ୍ୱର, (୧୫) କୋରାପୁଟର ଶ୍ରୀଗୁପ୍ତେଶ୍ୱର, (୧୬) ଚକାପାଦର ଶ୍ରୀ ବିରୁପାକ୍ଷ, (୧୭) ଭୁବନେଶ୍ୱରର ଶ୍ରୀ ଲିଙ୍ଗରାଜ, (୧୮) ହିରାପୁରର ଚୌଷଠୀ ଯୋଗିନୀ, (୧୯) ଗଂଜାମ ଜିଲ୍ଲାର ତାରାତାରିଣୀ, (୨୦) ଖଲିକୋଟର ନାରାୟଣୀ, (୨୧) ଝଙ୍କଡ଼ର ଶାରଳା, (୨୨) ମନ୍ତ୍ରୀଡ଼ିର ସିଦ୍ଧ ଭୈରବୀ, (୨୩) ତାଳଚେରର ହିଙ୍ଗୁଳା, (୨୪) ଘଟଗାଁର ତାରିଣୀ, (୨୫) ଖିଚିଙ୍ଗର କିଚକେଶ୍ୱରୀ, (୨୬) ବାଣପୁରର ଭଗବତୀ, (୨୭) କାକଟପୁରର ମଙ୍ଗଳା, (୨୮) ବାଙ୍କିର ଚର୍ଚ୍ଚିକା, (୨୯) କଟକର କଟକ ଚଣ୍ଡୀ, (୩୦) ଗଞ୍ଜାମ କୁଲାଡ଼ର ବ୍ୟାଘ୍ରଦେବୀ, (୩୧) ଭବାନୀପାଟଣାର ମାଣିକେଶ୍ୱରୀ, (୩୨) ସୋନପୁରର ସୁବର୍ଣ୍ଣମେରୁ, (୩୩) କପିଳାସର ଶ୍ରୀଚନ୍ଦ୍ରଶେଖର (ଢେଙ୍କାନାଳ ଜିଲ୍ଲା), (୩୪) ବଲାଙ୍ଗିରର ପାଟଣେଶ୍ୱରୀ, (୩୫) ପୁରୀର ଅର୍ଦ୍ଧ ଶୋଷଣୀ ଆଲାମ ଚଣ୍ଡି, (୩୬) ସୁବର୍ଣ୍ଣପୁର ଜିଲ୍ଲାର ମେରୁ ପୂଜିତ ହେଉଛନ୍ତି ।

ଦ୍ୱିତୀୟ ବେଢ଼ା ବା ଭାରତ ଖଣ୍ଡପୀଠ ଦର୍ଶନ ବେଢ଼ାରେ ଯଥାକ୍ରମେ (୧) କାଶ୍ମୀର ହିମାଳୟରେ ଥିବା ଅମରନାଥ, (୨) ଉତ୍ତରାଞ୍ଚଳ ହିମାଳୟରେ ଥିବା (ପର୍ବତାଞ୍ଚଳ ଉପରେ) ଶ୍ରୀ କେଦାରନାଥ, (୩) କାଶ୍ମୀରର ବୈଷ୍ଣୋଦେବୀ, (୪) ନେପାଳର ପଶୁପତିନାଥ, (୫) ହରିଦ୍ୱାରର ବ୍ରହ୍ମକାଣ୍ଡ ଓ ନାରାୟଣ ଶୀଳା, (୬) କୁରୁକ୍ଷେତ୍ରର ପୃଥିଶ୍ୱର, (୭) ବୃନ୍ଦାବନର ଗୋବିନ୍ଦ ଜୀଉ, (୮) ମଥୁରାର କୃଷ୍ଣ ଜନ୍ମଭୂମି, (୯) ପ୍ରୟାଗର ପ୍ରୟୋଗାଶ୍ୱର, (୧୦) ଆଦିଗୟାର ବ୍ରହ୍ମଶାଳା, (୧୧) କାଶୀର ବିଶ୍ୱନାଥ, (୧୨) ଯାଜପୁରର ବିରଜା, (୧୩) କଲିକତାର କାଳୀ, (୧୪) ଆସାମ ରାଜ୍ୟର କାମାକ୍ଷାଦେବୀ, (୧୫) ଉତ୍ତରାଞ୍ଚଳର ବଦ୍ରିନାଥ, (୧୬) ପଶ୍ଚିମାଞ୍ଚଳର ଶ୍ରୀ ଦ୍ୱାରିକାନାଥ, (୧୭) ଦକ୍ଷିଣ ଭାରତର ଶ୍ରୀ ରାମେଶ୍ୱର, (୧୮) ଗୁଜରାଟର ଶ୍ରୀ ସୋମନାଥ, (୧୯) ରାଜସ୍ଥାନର ପୁଷ୍କର, (୨୦) ନାଥଦ୍ୱାରର ଶ୍ରୀନାଥ, (୨୧) ଉଜ୍ଜୟିନୀର ମହାକାଳେଶ୍ୱର, (୨୨) ପଣ୍ଡୁପୁରର ବିଠଲ୍‌ଜୀ, (୨୩) କଳିଙ୍ଗାଞ୍ଚଳର ମୁଖଲିଙ୍ଗମ, (୨୪) କୁର୍ମାଞ୍ଚଳର ଶ୍ରୀକୂର୍ମ, (୨୫) ସୀମାଞ୍ଚଳର ଶ୍ରୀବରାହ ନୃସିଂହ, (୨୬) ତିରୁପତିର ବାଲାଜୀ, (୨୭) ମଦୁରାଇର ମିନାକ୍ଷୀ, (୨୮) ସାବରମାଳାର ଆୟପ୍ପା ଓ (୨୯) ଟିରାଚର ପଲ୍ଲୀର ଶ୍ରୀରଙ୍ଗମ ବିରାଜମାନ କରିଛନ୍ତି ।

ଏହିସବୁ ପାର୍ଶ୍ୱ ଦେବାଦେବୀ ମନ୍ଦିର ନିର୍ମାଣ ପୂର୍ବରୁ ସଂପୃକ୍ତ ପୀଠ/ମନ୍ଦିରରୁ ମାଟି ସଂଗ୍ରହ କରାଯାଇଥିଲା ।

ଶ୍ରୀକ୍ଷେତ୍ର ପୁରୀରେ ଯାତ୍ରା ଓ ପର୍ବପର୍ବାଣି ଯେଉଁଭଳି ଭାବରେ ପାଳନ ହୁଏ, ଶାବର ଶ୍ରୀକ୍ଷେତ୍ରରେ ଠିକ୍ ସେହିଭଳି ପର୍ବପର୍ବାଣି ପାଳନ କରାଯାଇଥାଏ । ଅର୍ଥାତ୍ ଦେବସ୍ନାନ ପୂର୍ଣ୍ଣିମା, ଗୁଣ୍ଡିଚା ଯାତ୍ରା, ହେରାପଞ୍ଚମୀ, ସୁନାବେଶ, ଅଧରପଣା ଓ ଗରୁଡ଼ ଶୟନ, ନୀଳାଦ୍ରି ବିଜେ, କର୍କଟ ସଂକ୍ରାନ୍ତି ଓ ଦକ୍ଷିଣାୟନ ବନ୍ଦାପନା, ଚିତାଲାଗି ଅମାବାସ୍ୟା, ଝୁଲଣ ଯାତ୍ରା, ଛେରା ପଂଚମୀ, ନନ୍ଦୋତ୍ସବ ଓ କୃଷ୍ଣଲୀଳା, ଗଣେଶ ପୂଜା, କୁମ୍ଭାଭିଷେକ, ଦଶହରା, କୁମାର ପୂର୍ଣ୍ଣିମା, ଦୀପଦାନ ଓ ପିଣ୍ଡଶ୍ରାଦ୍ଧ, ବକୁଳ ଅମାବାସ୍ୟା, ପୁଷ୍ୟାଭିଷେକ (ପୌଷପୂର୍ଣ୍ଣିମା), ମକର ସଂକ୍ରାନ୍ତି, ବସନ୍ତ ପଂଚମୀ, ଶିବରାତ୍ରୀ, ଦୋଳଯାତ୍ରା, ହୋଲି, ଅଶୋକାଷ୍ଟମୀ, ଶ୍ରୀରାମ ନବମୀ, ଦମନକ ଚତୁର୍ଦ୍ଦଶୀ, ମହାବିଷୁବ ସଂକ୍ରାନ୍ତି, ଚନ୍ଦନ ଯାତ୍ରା, ନୃସିଂହ ଜନ୍ମ, ଶୀତଳ ଷଷ୍ଠୀ, ରୁକ୍ମିଣୀ ହରଣ ଏକାଦଶୀ, ବିବାହ ଓ ଚମ୍ପକ ଦ୍ୱାଦଶୀ ଧାର୍ମିକ ପରମ୍ପରା ଓ ଉଲ୍ଲାସ ମଧ୍ୟରେ ପାଳନ କରାଯାଇଥାଏ । ବେଶ ମଧ୍ୟ ଶ୍ରୀକ୍ଷେତ୍ର ଅନୁରୂପ କରାଯାଏ । ଏକ ଆଦିବାସୀ ଗାଁର ମୁଖିଆ ଶ୍ରୀଜଗନ୍ନାଥଙ୍କ ରଥରେ, ଜିଲ୍ଲାପାଳ ଶ୍ରୀ ବଳଭଦ୍ରଙ୍କ ରଥ ଉପରେ ଓ ମା' ସୁଭଦ୍ରାଙ୍କ ରଥ ଉପରେ ଜିଲ୍ଲା ପରିଷଦ ଅଧ୍ୟକ୍ଷ ଛେରା ପହଁରା କରିଥାନ୍ତି । ରଥ ଉପରେ ଆଦିବାସୀମାନଙ୍କର ଫଳମୂଳ ଭୋଗ ଲଗାଯାଇଥାଏ । ମନ୍ଦିର ଦ୍ୱାରଦେଶରୁ ରାଜ୍ୟର ସର୍ବୋଚ୍ଚ ଉଚ୍ଚତାରେ ଥିବା ତଥା ପ୍ରାକୃତିକ ସୌନ୍ଦର୍ଯ୍ୟରେ ଭରା ଦେଓମାଳୀ ପର୍ବତମାଳା ଦୃଶ୍ୟମାନ ହୁଏ । ଶାବର ଶ୍ରୀକ୍ଷେତ୍ର ପ୍ରକୃତରେ ଏକ ନିଆରା ଦେବ ପୀଠ ।

---

ଏଚ୍.ଆଇ.ଜି–୨୬, କଳିଙ୍ଗ ବିହାର, ଭୁବନେଶ୍ୱର

# ଆମ ପରମ୍ପରାରେ ହୋଲି

ଡକ୍ଟର ସୁଷମା ମିଶ୍ର

ପରମ୍ପରା ହେଉଛି ଗତିଶୀଳ ସମୟର ପୃଷ୍ଠଭୂମି ଓ ମାନବ ସଭ୍ୟତାର ଅତୀତ । ଏହା ଗୋଟିଏ ଜାତିର ପରିଚୟ । ମାଟି ତଳେ ଥିବା ଚେର ଯେମିତି ଗଛକୁ ପୁଷ୍ଟ କରେ ସେହିପରି ପରମ୍ପରାର ଚେର ଆମ ଜୀବନକୁ କରେ ପଲ୍ଲବିତ । ମନୁଷ୍ୟର ମରଦେହ ମାଟିରେ ମିଶିଯାଏ କିନ୍ତୁ ମନୁଷ୍ୟକୃତ ରୀତିନୀତି, ଚାଲିଚଳଣି, ଚିନ୍ତା ଓ ଚେତନାରୁ ଜନ୍ମ ନେଇଥିବା ପରମ୍ପରା ମାଟିର ଅସ୍ମିତାକୁ ପୁନର୍ଜୀବିତ କରୁଥାଏ । ସମାଜକୁ ସୁସଂହତ ଓ ଜୀବନକୁ ଶୃଙ୍ଖଳିତ ତଥା ଅର୍ଥପୂର୍ଣ୍ଣ କରିବା ପାଇଁ ସମାଜର ଚିନ୍ତାନାୟକମାନେ ଯେଉଁ ମାର୍ଗ ଦର୍ଶନ କରାଇଛନ୍ତି, ତାହା ହିଁ ପରମ୍ପରା ଭାବରେ ଗଡି ଆସୁଛି ।



ଆମ ପରମ୍ପରାରେ ହୋଲି ପର୍ବ ଅତି ପ୍ରାଚୀନ । ହୋଲି ହେଉଛି ଫଗୁ ବା ଅବିରର ଖେଳ । ଏହି ଖେଳ ଆବାଳବୃଦ୍ଧବନିତା ସମସ୍ତଙ୍କ ପାଇଁ । ହୋଲି ଖେଳରେ ବଡସାନ, ପରିଚିତ ଅପରିଚିତ, ମାଲିକ ଅଧସ୍ତନ ଆଦିର ଭେଦଭାବ ନଥାଏ । ରଙ୍ଗ ବୋଳାବୋଳି ହୋଇ ସମସ୍ତେ ଏକାପରି ଦେଖାଯାନ୍ତି । ତେଣୁ କୁହାଯାଇପାରେ ହୋଲି ସାମ୍ୟ, ମୈତ୍ରୀ ଓ ଆନନ୍ଦର ପର୍ବ ।

ସାରା ଭାରତବର୍ଷରେ ପାଳିତ ହୋଲି ଏକ ସାର୍ବଜନୀନ ପର୍ବ । ଆମର ଉତ୍କଳୀୟ ପରମ୍ପରାନୁସାରେ ଦୋଳ ଯାତ୍ରା ସହିତ ହୋଲି ପର୍ବ ଅଙ୍ଗାଙ୍ଗୀ ଭାବରେ ଜଡିତ । ଫାଲଗୁନ ମାସ ଶୁକ୍ଳପକ୍ଷ ଦଶମୀ ତିଥିରୁ ଏହି ପର୍ବ ଆରମ୍ଭ ହୋଇ ପଞ୍ଚୁଦୋଳରେ ଶେଷ ହୁଏ । ନଇକେ ବାଙ୍କ ଦେଶକେ ଫାଙ୍କ ଅନୁଯାୟୀ ଦ୍ୱିଦୋଳ, ପଞ୍ଚୁଦୋଳ, ଦଶଦୋଳ ବା ବାରଦୋଳ ଭାବରେ ଗ୍ରାମ ବିଶେଷରେ ପାଳନ କରନ୍ତି । କଥାରେ ଅଛି 'କହ୍ନେଇ ଲାଗି ଦୋଳଯାତ' । ପ୍ରେମର ଦେବତା, ଶ୍ରୀକୃଷ୍ଣ ଓ ଶ୍ରୀରାଧାଙ୍କ ଯୁଗଳମୂର୍ତ୍ତି ସୁସଜ୍ଜିତ ବିମାନରେ ବସାଇ ଗ୍ରାମ ଓ ନଗର ପରିକ୍ରମଣ କରାଯାଏ ଗାଁ ଗହଳିରୁ ସହରର ଗଳିକନ୍ଦି ଯାଏଁ । ଦୋଳୋତ୍ସବର ଏହି ପାରମ୍ପରିକ ରୀତି ଦେଖିବାକୁ ମିଳେ । ଭକ୍ତମାନେ ଛତି ତ୍ରାସ ଆଲଟ ଚାମର ଧରି ଆଗମନ କରନ୍ତି । କୀର୍ତ୍ତନ ବାଦ୍ୟ କାହାଳୀର ମିଶ୍ରିତ ଶବ୍ଦରେ ରାତିର ବିଳମ୍ବିତ ପ୍ରହର ନିନାଦିତ ହୋଇଥାଏ । ଠାକୁର ଘରଘର ବୁଲି ଭୋଗ ଖାଆନ୍ତି । ଏହି ଭୋଗକୁ ଦୁଆରୀ ଭୋଗ କୁହାଯାଏ । ଘରର ଦୁଆର ମୁହଁ ପରିଷ୍କାର କରାଯାଇ ଦୀପଧୂପ ନୈବେଦ୍ୟ ଅର୍ପଣ

କରାଯାଏ । ଶଂଖ ନାଦ ଓ ହୁଳହୁଳି ଧ୍ୱନିରେ ଗଗନ ପବନ ତରଙ୍ଗାୟିତ ହୁଏ । ଦିଅଁଙ୍କର ବିମାନଭ୍ରମଣ ଚାଚେରୀ ନାମରେ ବିଦିତ । ଦୋଳବେଦୀରେ ରାଧାକୃଷ୍ଣଙ୍କୁ ଝୁଲାହୁଏ । ବହୁ ଗ୍ରାମରେ ସ୍ଥାୟୀ ଦୋଳବେଦୀ ପ୍ରତିଷ୍ଠା କରାଯାଇଛି । ରାଧାକୃଷ୍ଣଙ୍କ ପୂଜାର୍ଚ୍ଚନାରେ ମୂଳବିଧି ସ୍ୱରୂପ ଫଗୁଲାଗି କରାଯାଏ । ସମବେତ ଲୋକେ ମଧ୍ୟ ଦିଅଁଙ୍କ ଅବିର ନେଇ ପରସ୍ପରକୁ ଲଗାଇ ଦିଅନ୍ତି । ତେବେ କଥିତ ଅଛି, ଦୋଳ ଦିନ ଦେବତାମାନେ ରଙ୍ଗ ଖେଳନ୍ତି ଓ ପରଦିନ ମର୍ତ୍ତ୍ୟବାସୀ ହୋଲି ଖେଳନ୍ତି । ଫଗୁଣ ମାସର ଦଶମୀକୁ ଫଗୁଦଶମୀ, ଏକାଦଶୀକୁ ଦୋଳ ଏକାଦଶୀ ଓ ପୂର୍ଣ୍ଣମୀକୁ ଦୋଳପୂର୍ଣ୍ଣମୀ କୁହନ୍ତି । ଦୋଳପୂର୍ଣ୍ଣମୀ ଦିନ ମେଳଣ ହୁଏ । ସ୍ଥଳବିଶେଷରେ ପାଖାପାଖି ଗାଁଗୁଡିକର ସାଜସଜ୍ଜାବିଶିଷ୍ଟ ବିମାନଗୁଡିକ ମେଳଣ ପଡିଆରେ ଖୁଣ୍ଟିଲାଗି ହୁଅନ୍ତି । ଠାକୁରମାନଙ୍କର ମହାମିଳନ ଘଟେ । ସେହି ସ୍ଥାନ ମୁଖରିତ ହୋଇଯାଏ ଘଣ୍ଟ ଘଣ୍ଟା ବାଦନରେ । ପରମାତ୍ମାଙ୍କ ଅନନ୍ତ ସତ୍ତାରେ ମଗ୍ନ ହୁଏ ଉପସ୍ଥିତ ଜନତାଙ୍କ ଅନ୍ତର । ନାନା ପ୍ରକାର ବିପଣି ବସି ଗହଳଚହଳ ଲାଗିରହେ । ଆଖପାଖର ଗ୍ରାମବାସୀମାନେ ଦିଅଁଦର୍ଶନ ସହ ଦୋଳଯାତ୍ରାର ହର୍ଷ ଉଲ୍ଲାସରେ ସାମିଲ ହୁଅନ୍ତି । ଆମ ପରମ୍ପରାରେ ଦୋଳପୂର୍ଣ୍ଣିମା ଦିନ ନୂତନ ପଞ୍ଜିକା ଅନୁକୂଳ କରାଯାଏ । ଦୋଳ ପରଦିନ ଅନୁଷ୍ଠିତ ହୁଏ ରଙ୍ଗର ପର୍ବ ହୋଲି । ଏହି ଦିନଟିର ସ୍ୱାତନ୍ତ୍ର୍ୟ ହେଲା ସବୁପର୍ବରେ ଦେବ ସଂଯୋଗ ଥିଲାବେଳେ ଏଥିରେ ରହିଛି ମାନବ ସଂଯୋଗ । ଲୋକେ ଦଳ ଦଳ ହୋଇ ହୋଲି ଖେଳରେ ମାତି ଉଠନ୍ତି । କେତେକ ଦଳଦଳ ହୋଇ ବାଜା ବଜାଇ ରଙ୍ଗ ଖେଳନ୍ତି । ସେଇ ରଙ୍ଗ ବୋଳା ହାତରେ ଓ ମୁହଁରେ ବି ଚର୍ଚ୍ଚା ହୋଇଥିବା ବ୍ୟଞ୍ଜନ ଗ୍ରହଣ କରନ୍ତି । ସର୍ବତ, ଲସି, ଫଳରସ ଆଦି ପାନୀୟରେ ଆପ୍ୟାୟିତ ହୁଅନ୍ତି । ସ୍ତ୍ରୀ ଲୋକମାନଙ୍କର କାମ ଏହିଦିନରେ ବଢ଼ିଯାଏ । ପର୍ବ ଦିନରେ  ଘରଲୋକ ଓ ପିଲାଙ୍କ ପାଇଁ ବିଶେଷ ଦୃଷ୍ଟି ରଖନ୍ତି ମା'ମାନେ । ହୋଲି ଆଗରୁ ବିଭିନ୍ନ ପ୍ରକାର ଅବିର, ପିଚକାରୀ, ପୋଷାକ ଆଦି ସେମାନେ



ସଜାଡି ରଖନ୍ତି । ପ୍ରକୃତ ପକ୍ଷରେ ମା'ମାନେ ହିଁ ଆମ ପରିବାରର ସମସ୍ତ ବିଧିରକ୍ଷା କରନ୍ତି । ଘର ରୋଷେଇ ସାରିଦେଇ ସକାଳୁ ସବୁ ବୟସର ମହିଳାମାନେ ଘରୁ ବାହାରକୁ ଯାଇ ହୋଲି ଖେଳର ମଜା ନିଅନ୍ତି । ସାଙ୍ଗସାଥୀ, ବନ୍ଧୁବାନ୍ଧବ, ସାଇପଡିଶା ଏକାଠି ହୋଇ ପରସ୍ପରକୁ ଅବିରରେ ରଙ୍ଗୀନ କଲାବେଳେ ଭାବବନ୍ଧନ ଆଉଟିକେ ଦୃଢ଼ ହୋଇଯାଏ । ଝରିଆସେ ସ୍ନେହ ସୌହାର୍ଦ୍ଦ୍ୟର ରଙ୍ଗ, ଯାହା ରଙ୍ଗାୟିତ କରିଦିଏ ନିସ୍ତରଙ୍ଗ ଜୀବନ ସ୍ରୋତକୁ । ହୋଲି ବନ୍ଧୁତାର ପ୍ରତୀକ । ବନ୍ଧୁ ବିନା ଜୀବନ ଦୁର୍ବିସହ । ଆଜିର ଯାନ୍ତ୍ରିକ ଯୁଗରେ ମଣିଷ ଧୀରେ ଧୀରେ ଯନ୍ତ୍ର ପରି ହୋଇଯାଉଛି, ଭଲରେ ମନ୍ଦରେ ବନ୍ଧୁମାନଙ୍କୁ ଲୋଡିବାର ପ୍ରବଣତା ଥମି ଗଲାଣି । ସ୍ୱାର୍ଥସର୍ବସ୍ୱ ବସ୍ତୁବାଦୀ ମଣିଷ ନିଜସ୍ୱ  ମୁଲକରେ ମତ୍ତ ହୋଇ ପାଶୋରି ଯାଉଛି ପାଖ ପଡୋଶୀ ଓ ସମ୍ପର୍କୀୟମାନଙ୍କୁ । ଏପରିସ୍ଥଳେ ପର୍ବପର୍ବାଣିର ଗଙ୍ଗାଳିକା ଧାରାରେ ଅବଗାହନ କଲେ ମଣିଷ ସମାଜ ଜଡତ୍ୱ ଓ ନିଃସଙ୍ଗତାରୁ ମୁକ୍ତ ହୁଏ । ବିଶେଷତଃ ଆମ ପରମ୍ପରାରେ ହୋଲି ସବୁ ବର୍ଗର ଲୋକ ସାଧାରଣଙ୍କୁ ଏକତ୍ରିତ ହେବାର ସୁଯୋଗ ଦିଏ । ପୂର୍ବ ଶତ୍ରୁତାକୁ ଭୁଲି ମିତ୍ରତାକୁ ସାଉଁଟି ନେବାର ଆହ୍ୱାନ ରହିଛି ହୋଲିର ରଙ୍ଗ ଖେଳରେ । ଧର୍ମ, ବୟସ, ଶିକ୍ଷା, ଯୋଗ୍ୟତା ନିର୍ବିଶେଷରେ

ସମସ୍ତେ ସମସ୍ତଙ୍କ ସହିତ ହୋଲି ଖେଳିବା ମହତ୍ତର ମାନବିକତାର ପରିଚାୟକ । ହୋଲି ଉତ୍ସବର ସାମାଜିକ ମୂଲ୍ୟ ରହିଛି ।

ହୋଲି ଖେଳୁଥିବା ବ୍ୟକ୍ତି ସାମାଜିକ ପ୍ରତିଷ୍ଠା ଭୁଲି, ପଦପଦବୀର ଅହଙ୍କାର ତ୍ୟାଗ କରି ଜନସାଧାରଣଙ୍କ ଭିତରେ ଜଣେ ଭାବରେ ମିଶିଯିବାରେ ସମତାକୁ ପ୍ରାଧାନ୍ୟ ଦିଆଯାଇଛି । ଏହାଦ୍ୱାରା ଭାଇଚାରା ବଜାୟ ରହେ ଓ ସଦ୍‌ଭାବ ବିସ୍ତାରିତ ହୁଏ । ଆମର ପରମ୍ପରାରେ ହୋଲି ଆମକୁ ଏକ ଉଦ୍ଦେଶ୍ୟରେ ଏକତ୍ରିତ ହେବା ପାଇଁ ଶିକ୍ଷା ଦିଏ । ଦୈନନ୍ଦିନ ରୁଟିନବନ୍ଧା ଜୀବନରୁ ମୁକୁଳି ଏକ ସରସ ରଙ୍ଗଭରା ସମୟରେ ହଜିଯିବା ପାଇଁ ହୋଲି ହେଉଛି ଏକ ଅପୂର୍ବ ଅବସର । ଦେହ ଓ ମନ ଉପରେ ହୋଲିର ପ୍ରଭାବ ରହିଛି । ବିଭିନ୍ନ ପ୍ରକାର ରଙ୍ଗ ଆମ ଦେହକୁ ବିଭିନ୍ନ ରୋଗରୁ ରକ୍ଷା କରେ ଓ ଆମର ମନୋଭାବକୁ ସକାରାତ୍ମକ କରିଥାଏ । ପୂର୍ବକାଳରେ ରଙ୍ଗର ଉତ୍ସ ଥିଲା ପ୍ରାକୃତିକ ଉପାଦାନ । ପଳାଶଫୁଲର ରଙ୍ଗ ଆମ ଦେହକୁ ଗରମ ଦାଉରୁ ରକ୍ଷା କରେ । ହଳଦୀ, ଚନ୍ଦନ, ଗାଜର, ବିଟ, ଟମାଟୋ, ମୁଲତାନି ମାଟି ଭଳି ପ୍ରକୃତିଜାତ ଦ୍ରବ୍ୟରୁ ଯେଉଁ ରଙ୍ଗ ତିଆରି ହୁଏ ତାହା ସ୍ୱାସ୍ଥ୍ୟପ୍ରଦ । ପ୍ରାକୃତିକ ରଙ୍ଗ ବ୍ୟବହାର ଚର୍ମକୁ ସୁରକ୍ଷା ଦିଏ ଏବଂ ରୋଗପ୍ରତିରୋଧକ ଶକ୍ତି ବୃଦ୍ଧି କରାଏ । ଆଜିର କୃତ୍ରିମ ମୁଣ୍ଡଫଟା ରଙ୍ଗ, ବାର୍ଣ୍ଣିସ ଆଦି ହାନିକାରକ ଅଟେ । ବିଭିନ୍ନ ରାସାୟନିକ ଜିନିଷରୁ ତିଆରି ହେଉଥିବା ରଙ୍ଗଗୁଡିକ ଅନ୍ଧତ୍ୱ, ଆଲର୍ଜି, ଚର୍ମରୋଗ, କିଡ୍‌ନୀ ରୋଗ ଓ ପକ୍ଷାଘାତର କାରଣ ହୁଏ । ରଙ୍ଗ ଖେଳରେ ସାବଧାନତା ଅବଲମ୍ବନ କରିବା ନିହାତି ଜରୁରୀ । ରଙ୍ଗର ଅପପ୍ରୟୋଗରେ ଆନନ୍ଦ ହୋଇଯାଏ ନିରାନନ୍ଦ । ଗୁରୁତ୍ୱପୂର୍ଣ୍ଣ ଉଦ୍ଦେଶ୍ୟରେ ଯାଉଥିବା ଲୋକମାନଙ୍କୁ ଅଟକାଇ ରଙ୍ଗ ଦେବାରେ ଅସୁବିଧା ଉପୁଜେ । ହୋଲିଖେଳରେ ଯେଉଁମାନେ ନିଶାକୁ ମିଶାନ୍ତି ସେମାନେ ବାତାବରଣକୁ ନଷ୍ଟ କରିଦିଅନ୍ତି । ହୋଲିଖେଳ ପରେ ପରେ ନଈ ପୋଖରୀରେ ସ୍ନାନ କରି କେହିକେହି ମୃତ୍ୟୁବରଣ ବି କରନ୍ତି । ରଙ୍ଗ ଖେଳ ଯେ ମଧୁର ସମ୍ପର୍କର ଖେଳ ହୋଲିର ଏହି ମର୍ମକୁ କେହି ଭୁଲିବା ଉଚିତ ନୁହେଁ । ପ୍ରାୟ ସକାଳୁ ଖେଳିବା ଆରମ୍ଭ ହୋଇ ମଧ୍ୟାହ୍ନରେ ସରେ । ରଙ୍ଗମଖା ବିଚିତ୍ର ମୁହଁ ଓ ପୋଷାକ ହେଉଛି ହୋଲିର ପରିଣତି । ଏହି ଖେଳ ଆମୋଦଦାୟକ । ହୋଲି ଦିନରେ ସ୍ନାନ ଏକ ସମୟସାପେକ୍ଷ କାର୍ଯ୍ୟ । ଦେହ ମୁଣ୍ଡରୁ ରଙ୍ଗ ଛଡେଇ ସମସ୍ତେ ପରିଷ୍କାର ପରିଛନ୍ନ ହୁଅନ୍ତି । ହୋଲିର ରଙ୍ଗ ଦେହରୁ ଛାଡିଯାଏ କିନ୍ତୁ ମନରେ ଲାଗିଯାଇଥିବା ସ୍ନେହ ମମତାର ରଙ୍ଗ ଆସନ୍ତା ହୋଲିଯାଏ ଅକ୍ଷୁଣ୍ଣ ରହେ । ଅନେକତ୍ର ହୋଲିଖେଳ ପରେ ଭୋଜିଭାତ ନାଚଗୀତ ଆଦି କରାଯାଇ ଏହି ଦିନଟିକୁ ଅଧିକ ସ୍ମରଣୀୟ କରାଯାଇଥାଏ ।

ଆମ ପରମ୍ପରାରେ ପର୍ବଗୁଡିକ ପ୍ରକୃତି ସହିତ ସଂଯୁକ୍ତ । ମନୁଷ୍ୟ ପ୍ରକୃତିର ସନ୍ତାନ । ବସନ୍ତ ଉତ୍ସବ ହୋଲିର ଅଙ୍ଗ । ବସନ୍ତ ଋତୁ ଆଗମନରେ ପ୍ରକୃତିରାଣୀ ଅପରୂପ ଶୋଭା ଧାରଣ କରେ । ବୃକ୍ଷରାଜି ନବ ପଲ୍ଲବରେ ବିଭୂଷିତ ହୁଏ, ପତ୍ରଗହଳ ଡାଳରେ ଥାଇ କୋଇଲି ଝରାଇଦିଏ କୁହୁ କୁହୁର ମଧୁର ସ୍ୱର ।

ଆମ୍ବବଉଳ, ଗଙ୍ଗଶିଉଳି ଓ ମଲ୍ଲୀ ଫୁଲର ବାସ୍ନା ଚହଟିଯାଏ ଚତୁର୍ଦ୍ଦିଗରେ । ଆମ୍ବ, ଲଙ୍କାଆମ୍ବ, ପଣସ ଆଦି ନାନା ଫଳ ସମ୍ଭାରରେ ଭରିଯାଏ ବୃକ୍ଷରାଜି । ବସନ୍ତର ବର୍ଣ୍ଣନା, 'ବସନ୍ତ ବିଜୟ ବାରତା ପ୍ରଚରିଲା ଭୁବନେ । ପାଦପ ଆନୀତ ପତର ପରଭୃତ ପଠନେ, ଗ୍ରହରାଜା କର୍ଣ୍ଣେ ପଡ଼ିଲା ଋତୁସମ୍ରାଟ୍ ଭାଷା, ଗମିବେ ସରଳ ପଥରେ ତେଜି ଦକ୍ଷିଣ ଆଶା ।' ଏହି ବସନ୍ତ ବିଭୋର ସମୟକୁ ହୋଲିର ଅବିର ଖେଳ ବର୍ଣ୍ଣିଳ କରିବା ସହିତ ସ୍ୱାଗତ କରେ । ଓଡ଼ିଆ ପରମ୍ପରାରେ ଦୋଳ ଓ ହୋଲିରେ ଥାଏ ବସନ୍ତ ଋତୁର ସ୍ୱାଗତିକା । ପୁରାଣ କୁହେ, ବୃନ୍ଦାବନର ଯମୁନା ନଦୀ କୂଳରେ ଦୋଳପୂର୍ଣ୍ଣମୀ ଦିନ ଗୋପନାରୀମାନେ ସେମାନଙ୍କ ପ୍ରାଣପ୍ରିୟ ଶ୍ରୀକୃଷ୍ଣଙ୍କୁ ଦୋଳିରେ ବସାଇ ଦୋଳାଉଥିଲେ । ତେଣୁ ଏହା ବସନ୍ତରାସ ବା ବାସନ୍ତିକ ରାସ ଭାବରେ ବିଦିତ । ରାଧା ଏହିଦିନ ଗୋପାଙ୍ଗନାବେଷ୍ଟିତ ହୋଇ ଶ୍ରୀକୃଷ୍ଣଙ୍କ ସହ ଫଗୁ ଖେଳିଥିଲେ । ଏହାକୁ ଫଲଗୁ ଉତ୍ସବ କୁହାଯାଏ ।

ଦ୍ୱାପର ଯୁଗର ଏହି ପରମ୍ପରା ଆଜିବି ବଞ୍ଚି ରହିଛି । ଓଡିଶାର ଗାଁ ଗହଳିରେ ଆଜି ମଧ୍ୟ ରାଧାକୃଷ୍ଣଙ୍କ ରାସଲୀଳା ହୁଏ । ମଧୁମାସର ମାଧୁର୍ଯ୍ୟକୁ ସାଉଁଟିବା ପାଇଁ ହୋଲି ଏକ ମାଧ୍ୟମ ।

ଶ୍ରୀକୃଷ୍ଣ ଓ ଶ୍ରୀରାଧାଙ୍କୁ ନେଇ ଯେଉଁ ଦୋଳଯାତ ଓ ଅବିରଖେଳ ପ୍ରଚଳିତ, ତାହା ବହୁ କିମ୍ବଦନ୍ତୀରେ ପରିପୂର୍ଣ୍ଣ । ପୌରାଣିକ କଥାନୁସାରେ, ଶ୍ରୀରାଧାଙ୍କ ହଜିଯାଇଥିବା ଅଳଙ୍କାର ଶ୍ରୀକୃଷ୍ଣଙ୍କର ହସ୍ତଗତ ହେବା ପରେ ସେ ରାଧାଙ୍କୁ ଭେଟିବା ପାଇଁ ମନସ୍ଥ କଲେ । ତାଙ୍କରି ଇଚ୍ଛାରେ ଆୟୋଜିତ ହେଲା ଦୋଳଯାତ୍ରା । ମାଦଳା ପାଞ୍ଜିରୁ ଜଣାପଡେ ବ୍ରହ୍ମାଙ୍କର ଆଦେଶକ୍ରମେ ଇନ୍ଦ୍ରଦ୍ୟୁମ୍ନଙ୍କ ଦ୍ୱାରା ଏହି ଉତ୍ସବ ଅନୁଷ୍ଠିତ ହୋଇଥିଲା । ଆମ ହିନ୍ଦୁ ଶାସ୍ତ୍ରରେ ଦୋଳ ପୂର୍ଣ୍ଣିମା ହେଉଛି ଗୋମାତାଙ୍କ ଜନ୍ମଦିବସ । ଶ୍ରୀକୃଷ୍ଣ ପ୍ରିୟ ଗୋବତ୍ସମାନଙ୍କୁ ଏହିଦିନ ପୂଜାର୍ଚ୍ଚନା କରାଯାଏ । ଗୋପାଳ ବା ଯାଦବମାନଙ୍କ ପାଇଁ ଏହା ଏକ ମୁଖ୍ୟ ପର୍ବ । ସେମାନେ ଏହି ସମୟରେ ବାଡିରେ ତାଳ ପକାଇ ଗୀତ ଗାଇ ଗାଇ ଲଉଡି ଖେଳନ୍ତି । ସେହିପରି ଦହିହାଣ୍ଡି ଭଙ୍ଗା ଖେଳ ପଶ୍ଚିମ ଭାରତରୁ ଆରମ୍ଭ ହୋଇଥିଲେ ମଧ୍ୟ ଓଡିଶାରେ ଏହା ବ୍ୟାପ୍ତ ହୋଇଗଲାଣି । ରଙ୍ଗ ପିଚକାରୀରେ ଭିଜିଥିବା କିଶୋର ବା ଯୁବକମାନେ ଜଣଙ୍କ ଉପରେ ଜଣେ ଗୋଲାକାର ଆକୃତିରେ ଛିଡା ହୋଇ ଉଚ୍ଚରୁ ଝୁଲିଥିବା ଦହିହାଣ୍ଡିକୁ ଭାଙ୍ଗିଦିଅନ୍ତି । ପରସ୍ପର ସଂଯୁକ୍ତ ଦୋଳଯାତ ଓ ହୋଲି ଏକ ଗଣପର୍ବ ଅଟେ ।

ଆମ ପରମ୍ପରାର ମୂଳକେନ୍ଦ୍ର ହେଉଛନ୍ତି ପ୍ରଭୁ ଶ୍ରୀଜଗନ୍ନାଥ । ତାଙ୍କୁଇ କେନ୍ଦ୍ରକରି ଗଢ଼ି ଉଠିଛି ଆମର ପର୍ବପର୍ବାଣି । ପ୍ରତିଟି ପର୍ବର ସ୍ୱାତନ୍ତ୍ର୍ୟ ରହିଛି । ଶ୍ରୀକ୍ଷେତ୍ରରେ ସଂଘଟିତ ଦ୍ୱାଦଶଯାତ୍ରାକୁ ଲକ୍ଷ୍ୟ କରି ଲୋକନାଥ ବିଦ୍ୟାଧର ଲେଖିଛନ୍ତି, 'ସ୍ନାନଗୁଣ୍ଡିଚା ଶୟନ ଯାତ୍ରା ଅନନ୍ତ ଅୟନ / ପାରୁଶ ପରିବର୍ତ୍ତନ ଉତ୍ଥାପନ ଓଢ଼ଣ ମକର ଅଭିଷେକ ଦୋଳଦମନକ ଚନ୍ଦନ/ଯାତ୍ରା ରୂପେ ଦ୍ୱାଦଶ ଉତ୍ସବ ଯେକେ ସଘନ' । ଦଶମୀରୁ ତ୍ରୟୋଦଶୀ ଯାଏଁ ଷୋଡଶ ଉପଚାର ପୂଜା ସହ ଫଗୁ ଅଞ୍ଜଳି କରାଯାଏ । ଦୋଳ ପୂର୍ଣ୍ଣିମାଦିନ ମହାପ୍ରଭୁ ରାଜାଧିରାଜ ବେଶ ହୁଅନ୍ତି । ଦୋଳ ପୂର୍ବ ଦିନ ଶ୍ରୀମନ୍ଦିରରେ ମେଣ୍ଢାପୋଡି ନୀତି (ଘସିରୁ ପ୍ରସ୍ତୁତ ମେଣ୍ଢା) ପାଳିତ ହୁଏ । ତିନି ଦେବତା (ଶ୍ରୀଦେବୀ, ଭୂଦେବୀ, ଦୋଳଗୋବିନ୍ଦ)ଙ୍କ ପ୍ରତିମାଙ୍କୁ ବିମାନ ଯୋଗେ ଦୋଳବେଦୀ ନିକଟକୁ ନିଆଯାଏ । ମେଣ୍ଢାରେ ଅଗ୍ନିସଂଯୋଗ କରାଯାଇ ସାତଥର ପ୍ରଦକ୍ଷିଣ ପରେ ଶ୍ରୀମନ୍ଦିରକୁ ଠାକୁରମାନଙ୍କର ପ୍ରତ୍ୟାବର୍ତ୍ତନ ହୁଏ । ଏହି ଅଗ୍ନିକୁ ରାଜାଗ୍ନି କୁହାଯାଏ । ବିଶ୍ୱାସ ରହିଛି ଏହି ଉତ୍ସବ ଦର୍ଶନରେ ଭକ୍ତ ସ୍ୱଦେହରେ ସ୍ୱର୍ଗ ଗମନ କରେ । ଭାରତ ବର୍ଷର କୋଣଅନୁକୋଣରେ ମେଣ୍ଢାକୁଡିଆ ପୋଡାଯାଏ । ପୁରାଣରେ ଉଲ୍ଲେଖ ଅଛି, ଦ୍ୱାପର ଯୁଗରେ ମେଣ୍ଢା ନାମକ ଏକ ରାକ୍ଷସର ଦୌରାତ୍ମ୍ୟ ବୃନ୍ଦାବନବାସୀଙ୍କୁ ଅତିଷ୍ଠ କରୁଥିଲା । ଶ୍ରୀକୃଷ୍ଣ ସେହି ରାକ୍ଷସକୁ ବିନାଶ କରିଥିଲେ । ଜନସାଧାରଣ ଶୋଭାଯାତ୍ରାରେ ଯାଇ ମେଣ୍ଢାରାକ୍ଷସର ଘରକୁ ଭସ୍ମୀଭୂତ କଲେ । ଆମ ପରମ୍ପରାରେ ହୋଲି ପର୍ବ ହେଉଛି ଅସତ୍ୟ ଉପରେ ସତ୍ୟର ବିଜୟ । ବିଷ୍ଣୁପୁରାଣରେ ଏହି ସମ୍ବନ୍ଧୀୟ କାରଣ ରହିଛି । ଅତ୍ୟାଚାରୀ ହିରଣ୍ୟକଶ୍ୟପୁର ଭଉଣୀ ହୋଲିକା, ମୁନିଋଷି ଓ ଦେବତାଙ୍କୁ ଅକଥନୀୟ ଯନ୍ତ୍ରଣା ଦେଇ ଗର୍ବରେ ଉନ୍ମତ୍ତ ହେଉଥିଲା । ଭାଇର ଇଚ୍ଛାକୁ ରୂପ ଦେବାକୁ ଯାଇ ବିଷ୍ଣୁ ଭକ୍ତ ପ୍ରହ୍ଲାଦକୁ ଧରି ଅଗ୍ନିକୁଣ୍ଡକୁ କୁଦି ପଡିଲା । ମନ୍ତ୍ରଶକ୍ତି ବଳରେ ସେ ଜୀବିତ ରହିବ ଓ ପ୍ରହ୍ଲାଦ ମୃତ୍ୟୁବରଣ କରିବ ବୋଲି ସେ ଥିଲା ଦୃଢ଼ନିଶ୍ଚିତ । କିନ୍ତୁ ପ୍ରହ୍ଲାଦ ବଂଚିଗଲା ଓ ଅଗ୍ନିରେ ହୋଲିକା ଜଳିପୋଡି ନିଶ୍ଚିହ୍ନ ହୋଇଗଲା । ଏହି ହୋଲିକା ଦହନର ଆନନ୍ଦ ମନାଇବା ପାଇଁ ହୋଲି ପର୍ବ ସଂରଚନା କରାଯାଇଛି । ହୋଲିର ଅଭିପ୍ରାୟ ହେଉଛି ମନୁଷ୍ୟ ନିଜର ମନ୍ଦଗୁଣଗୁଡିକୁ ଦାହ କରି ଶୁଦ୍ଧତାକୁ ବରିନେଉ ।

ଫାଲଗୁନ ମାସର ଶେଷ ଦିନ ଦୋଳ ଓ ଚଇତ ମାସର ଆରମ୍ଭ ଦିନ ହୋଲି ପାଳନ କରି ଶୀତ ଋତୁର ମେଲାଣି ଓ ବସନ୍ତ ଋତୁର ଆଗମନକୁ ଆମେ ଗଭୀର ଭାବରେ ଅନୁଭବ କରୁ । ଦୋଳରେ ରାଧାକୃଷ୍ଣଙ୍କ

ଯୁଗଳମୂର୍ତ୍ତିକୁ ଆରାଧନା କରି ଆମେ ଆଧ୍ୟାତ୍ମିକ ଭାବରେ ନିମଜ୍ଜିତ ହେଉ । ଆମ ଶାସ୍ତ୍ରରେ ଶ୍ରୀରାଧାଙ୍କୁ ଜୀବାତ୍ମା ଓ ଶ୍ରୀକୃଷ୍ଣଙ୍କୁ ପରମାତ୍ମା ଭାବରେ ପରିକଳ୍ପନା କରାଯାଇଛି । ସେହିପରି ରାଧାଙ୍କୁ ପ୍ରକୃତି ଏବଂ କୃଷ୍ଣଙ୍କୁ ପୁରୁଷ ଭାବରେ ଗ୍ରହଣ କରାଯାଏ । ତେଣୁ ହୋଲି ପର୍ବ ହେଉଛି ଜୀବାତ୍ମା ସହ ପରମାତ୍ମାଙ୍କର କିମ୍ବା ପ୍ରକୃତି ସହ ପୁରୁଷର ମିଳନ । ଆମ ପରମ୍ପରାରେ ହୋଲି ସାଧାରଣ ମଣିଷ ଓ ଅକଳ୍ପନୀୟ ଈଶ୍ୱରଙ୍କ ମଧ୍ୟରେ ଏକ ସେତୁବନ୍ଧ ସଦୃଶ । ରଙ୍ଗମୟ ସର୍ଜନାର ଆଦି ଉତ୍ସ ଭଗବାନ କୃଷ୍ଣଙ୍କୁ ଅବିର ରଙ୍ଗ ଲାଗିକରି ଆମ ଭିତରେ ପରିପୂର୍ଣ୍ଣତାର ରଙ୍ଗ ଭରିଦେବା ପାଇଁ ଆମେ ତାଙ୍କ ପାଖରେ ଅଳି କରୁ । ସେହିପରି ଦିଅଁଙ୍କୁ ଆତ୍ମକଷି ଦେଇ ତାଙ୍କ ଦାନ ପାଖରେ ଆମେ କୃତଜ୍ଞତା ଜଣାଉ । ଚଣା, ସାକର ଭୋଗ ଲଗାଇ ଆମେ ହୁଏତ ଆମ ଭୋଜନରେ ପୌଷ୍ଟିକ ସୁମିଷ୍ଟ ଆହାର ପ୍ରତି ସଚେତନ ହେଉ । ଆମ ପରମ୍ପରାରେ ହୋଲି ଯେତିକି ଈଶ୍ୱରୀୟ ସେତିକି ମାନବଧର୍ମୀ । ହୋଲି ଖେଳକୁ ଭିତ୍ତିକରି ମଣିଷ ମଣିଷ ଭିତରେ ଗହନ ଆତ୍ମୀୟତା ରୋପିଦେବା ପାଇଁ ପ୍ରଚେଷ୍ଟା କରାଯାଇଛି । ହୋଲିରେ ବ୍ୟବହୃତ ବିଭିନ୍ନ ରଙ୍ଗ ମଣିଷର ଭାବନାକୁ ପ୍ରଭାବିତ କରେ । ନୀଳ ରଙ୍ଗରେ କୃଷ୍ଣଙ୍କ ସତ୍ତା ଅନୁଭବିତ ହୁଏ । ସେହପରି ନାଲିରଙ୍ଗରେ ପ୍ରେମ, ହଳଦିଆ ରଙ୍ଗରେ ବନ୍ଧୁତା, ସବୁଜ ରଙ୍ଗରେ ସମ୍ଭାବନା ଓ ବାଇଗଣି ରଙ୍ଗରେ ବିଶ୍ୱାସ ପ୍ରତୀକାୟିତ ହୁଏ । ହୋଲି ଖେଳି ଅନୁଭବ କରିହୁଏ ଜୀବନର ଅସରନ୍ତି ରଙ୍ଗକୁ । ହୋଲି ସାମାଜିକ ଜୀବନ ତଥା ଧର୍ମୀୟ ଭାବଧାରାକୁ ପୁଷ୍ଟ କରେ । ଦୋଳବେଦୀରେ ଦୋଳଗୋବିନ୍ଦଙ୍କୁ ଝୁଲାଇ ସାଧାରଣ ଭାବରେ ଆମେ ତାଙ୍କ ସାନ୍ନିଧ ଲାଭ କରୁ । ତେବେ କୃଷ୍ଣଚେତନାରେ ଏକାତ୍ମ ହୋଇ ଆଧ୍ୟାତ୍ମିକ ଉତ୍ତରଣରେ ବ୍ରତୀ ହୁଅନ୍ତି ଭକ୍ତଗଣ । ପଦ୍ମପୁରାଣରେ କୁହାଯାଇଛି, ଦୋଳରେ ଦୋଳଗୋବିନ୍ଦ, ଚାପରେ ମଧୁସୂଦନ, ରଥରେ ବାମନରୂପୀ ଜଗନ୍ନାଥଙ୍କୁ ଦର୍ଶନ କଲେ ପୁନର୍ଜନ୍ମରୁ ମୁକ୍ତି ମିଳେ । ଯଥା 'ଦୋଳେଚ ଦୋଳଗୋବିନ୍ଦଂ ଚାପେଚ ମଧୁସୂଦନଂ/ରଥେ ତୁ ବାମନଂ ଦୃଷ୍ଟ୍ୱା ପୁନର୍ଜନ୍ମ ନ ଲଭ୍ୟତେ ।'

ବସନ୍ତ ଋତୁରେ ବୃକ୍ଷ ଯେପରି ନବପଲ୍ଲବିତ ଶୋଭାରେ ସୁଶୋଭିତ ହୁଏ ସେହିପରି ହୋଲି ଖେଳ ମନୁଷ୍ୟର ହୃଦୟରେ ନୂତନ ହର୍ଷ ଉଲ୍ଲାସର ରଙ୍ଗ ସଂଚାରିତ କରେ । ଆମ ପରମ୍ପରାରେ ହୋଲି ପର୍ବ ହେଉଛି ଈଶ୍ୱର, ପ୍ରକୃତି ଓ ମାନବ ଏହି ତ୍ରିଧାରାର ଏକ ସମ୍ମିଳିତ ଅଭିବ୍ୟକ୍ତି ।

''ସ୍ପନ୍ଦନ''
ଏମ୍.ଆଇ.ଜି-୩୯, ୧ମ ପର୍ଯ୍ୟାୟ
ଖଣ୍ଡଗିରି ହାଉସିଂ ବୋର୍ଡ଼ କଲୋନୀ
ଭୁବନେଶ୍ୱର-୩୦



# ଉତ୍କଳଗୌରବ ମଧୁସୂଦନ ଦାସ

ଉତ୍କଳଗୌରବ ମଧୁସୂଦନ ଦାସ ଥିଲେ ଓଡ଼ିଆ ଜାତିର ଗର୍ବ ଓ ଗୌରବର ପ୍ରତୀକ । ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନରେ ସେ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ । ଓଡ଼ିଶାରେ ନୂତନ ରାଜନୈତିକ ଚେତନା ସୃଷ୍ଟି କରି ଓଡ଼ିଶାର ଏବଂ ଓଡ଼ିଆ ଜାତିର ଉନ୍ନତି ଓ ସ୍ୱାର୍ଥରକ୍ଷା ତଥା ସ୍ୱାଭିମାନ ବଜାୟ ରଖିବା ପାଇଁ ମଧୁବାବୁ ସର୍ବସ୍ୱ ତ୍ୟାଗ କରିଥିଲେ । ଛାତ୍ର ଜୀବନଠାରୁ ମୃତ୍ୟୁ ପର୍ଯ୍ୟନ୍ତ ତାଙ୍କର ଜୀବନ ଥିଲା ସଂଘର୍ଷମୟ । ସେ ସାରାଜୀବନ ଦେଶ ଓ ଜାତି ପାଇଁ ସଂଘର୍ଷ କରି ଭାରତବର୍ଷରେ ଓଡ଼ିଆ ଜାତିର ଏକ ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିପାରିଥିଲେ । ଯାହାଫଳରେ ଓଡ଼ିଆ ଜାତି ଆଜି ଭାରତବର୍ଷରେ ଏକ ସ୍ୱତନ୍ତ୍ର ମର୍ଯ୍ୟାଦାପୂର୍ଣ୍ଣ ଆସନ ହାସଲ କରିପାରିଛି ।



ମଧୁସୂଦନ ଦାସ ୧୮୪୮ ମସିହା ଏପ୍ରିଲ ୨୮ ତାରିଖ ଦିନ କଟକ ଜିଲ୍ଲାର ସତ୍ୟଭାମାପୁର ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତାଙ୍କ ନାମ ଚୌଧୁରୀ ରଘୁନାଥ ଦାସ ଓ ମାତାଙ୍କ ନାମ ପାର୍ବତୀ ଦେବୀ । ଶୈଶବାବସ୍ଥାରୁ ମଧୁସୂଦନ ମାତା ପାର୍ବତୀ ଦେବୀଙ୍କର ଧର୍ମପୂତ ଜୀବନଶୈଳୀରେ ପ୍ରଭାବିତ ହୋଇଥିଲେ । ସେ ତାଙ୍କ ମା'ଙ୍କଠାରୁ ଶିଖିଥିଲେ ''ଆଲୋ ସଖୀ ଆପଣା ମହତ ଆପେ ରଖି ।'' ଯାହାକୁ ପାଥେୟ କରି ଉତ୍ତର ଜୀବନରେ ସେ ବହୁ ଉର୍ଦ୍ଧ୍ୱକୁ ଉଠି ପାରିଥିଲେ । ଚାଟଶାଳୀ ପାଠ ଶେଷ କରିବା ପରେ ମଧୁସୂଦନ ସତ୍ୟଭାମାପୁର ନିକଟବର୍ତ୍ତୀ ମହାସିଙ୍ଗପୁର ଭର୍ଣ୍ଣାକୁଲାର ସ୍କୁଲରେ ପଢ଼ିଥିଲେ । ତା'ପରେ ହାଇସ୍କୁଲରେ ପଢ଼ିବା ପାଇଁ କଟକ ଯାଇ ଜିଲ୍ଲା ସ୍କୁଲରେ ନାମ ଲେଖାଇଲେ ଏବଂ ୧୮୬୪ ମସିହାରେ ୧୬ ବର୍ଷ ବୟସରେ ଏଣ୍ଟ୍ରାନ୍ସ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ । ଏଣ୍ଟ୍ରାନ୍ସ ପାଶ୍ ପରେ ବାପାଙ୍କର ଇଚ୍ଛା ଥାଏ ସେ ଚାକିରି କରନ୍ତୁ କିନ୍ତୁ ମଧୁବାବୁଙ୍କ ଇଚ୍ଛା ଥାଏ ସେ ଉଚ୍ଚଶିକ୍ଷା ଲାଭ କରି ଓଡ଼ିଶାର ପ୍ରଥମ ଗ୍ରାଜୁଏଟ୍ ହେବେ । ବାପାଙ୍କର ତୀବ୍ର ବିରୋଧ ସତ୍ତ୍ୱେ ମଧୁବାବୁ ଉଚ୍ଚଶିକ୍ଷା ଲାଭ କରିବା ପାଇଁ ଦୃଢ଼ ସଂକଳ୍ପ ନେଇ କିଛି ଦିନ ପାଇଁ ବାଲେଶ୍ୱର ଜିଲ୍ଲା ସ୍କୁଲରେ ଶିକ୍ଷକତା କରିଥିଲେ ଓ ତତ୍‌ପରେ ଉଚ୍ଚଶିକ୍ଷା ପାଇଁ କଲିକତା ଯାଇ ୧୮୭୦ ମସିହାରେ ଓଡ଼ିଶାର ପ୍ରଥମ ଗ୍ରାଜୁଏଟ୍ ଭାବେ ବି.ଏ. ପାଶ୍ କଲେ । ସେ ୧୮୭୩ ମସିହାରେ ଏମ୍.ଏ. ଓ ତତ୍‌ପରେ ବି.ଏଲ୍. ପାଶ୍ କରିଥିଲେ । ଇତ୍ୟବସରରେ ତାଙ୍କର ବିବାହ ସରିଥାଏ ।

ପତ୍ନୀ ସୌଦାମିନୀ ଥିଲେ ବଙ୍ଗୀୟ ଖ୍ରୀଷ୍ଟିୟାନ୍ ସଂପ୍ରଦାୟର । କଲିକତା ଆସିବା ପରଠାରୁ ମଧୁବାବୁ ମଧ ଖ୍ରୀଷ୍ଟିୟାନ୍ ଧର୍ମରେ ଦୀକ୍ଷିତ ହୋଇ ସାରିଥିଲେ ଏବଂ ପିତାଙ୍କ ଦ୍ୱାରା ତେଜ୍ୟପୁତ୍ର ଭାବେ ଘୋଷିତ ହୋଇଥିଲେ ।

ଓକିଲାତି ପାଶ୍ କରିବା ପରେ ମଧୁବାବୁ ପ୍ରଥମେ କିଛି ବର୍ଷ ପାଇଁ କଲିକତା ହାଇକୋର୍ଟରେ ଓଡ଼ିଆ ଅନୁବାଦକ ଭାବେ କାର୍ଯ୍ୟ କରିଥିଲେ । ସେହି ସମୟରେ ପତ୍ନୀ ସୌଦାମିନୀଙ୍କର ବିୟୋଗ ଘଟିଥିଲା ଏବଂ ଏହା ତାଙ୍କୁ ଏତେ ବ୍ୟଥିତ କରିଥିଲା ଯେ, ସେ ଆଉ ପୁନର୍ବାର ବିବାହ କରି ନଥିଲେ । ତତ୍‌ପରେ କଲିକତାର ଆଲିପୁର କୋର୍ଟରେ ସେ ତାଙ୍କର ଓକିଲାତି ଜୀବନ ଆରମ୍ଭ କରିଥିଲେ । କଲିକତାରେ ସେ ଥିଲେ ପ୍ରଥମ ଓଡ଼ିଆ ଓକିଲ । କିଛିଦିନ ପରେ କେତେଜଣ ବନ୍ଧୁଙ୍କ ଅନୁରୋଧକ୍ରମେ ମଧୁବାବୁ ୧୮୮୧ ମସିହାରୁ କଟକରେ ଓକିଲାତି ଆରମ୍ଭ କଲେ । ମଧୁବାବୁଙ୍କ ତୀକ୍ଷ୍ଣ ବୁଦ୍ଧି ହେତୁ ସେ ଓକିଲାତିରେ ପାରଦର୍ଶିତା ହାସଲ କରିଥିଲେ । ଓଡ଼ିଆ ଡିଗ୍ରୀଧାରୀ ଆଇନଜୀବୀ ଭାବେ ସେ ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଜମିଦାର ଓ ରାଜାମାନଙ୍କ ନିକଟରେ ପରିଚିତ ହେଲେ ।

ଓକିଲାତି ଜୀବନରେ ସେ ବହୁ ଦରିଦ୍ର ଲୋକଙ୍କ ପାଇଁ ବିନା ଫିସ୍‌ରେ ଲଢ଼ି ସେମାନଙ୍କୁ ଅତ୍ୟାଚାରୀ ଧନୀକମାନଙ୍କ କବଳରୁ ରକ୍ଷା କରିଥିଲେ । ତେଣୁ ତାଙ୍କର ଅସାଧାରଣ ଧୀଶକ୍ତି ପାଇଁ ପରମ ସମ୍ମାନ ସ୍ୱରୂପ ଲୋକେ ତାଙ୍କୁ 'ମଧୁ ବାରିଷ୍ଟର' ବୋଲି କହୁଥିଲେ । ସେତେବେଳେ ଇଂରେଜ ସରକାର ଓଡ଼ିଶାର ଗଜପତି ରାଜାଙ୍କ ହାତରୁ ଚକ୍ରାନ୍ତ କରି ଜଗନ୍ନାଥ ମନ୍ଦିର ପରିଚାଳନା ଭାର କାଢ଼ି ନେବା ପାଇଁ ଆଇନ କରିବାରୁ ମଧୁବାବୁ ସେହି ଆଇନ ରଦ୍ଦ ହେବା ପର୍ଯ୍ୟନ୍ତ ଲଢ଼େଇ କରି ଓଡ଼ିଶାର ସମ୍ମାନ ରକ୍ଷା କରିଥିଲେ । କେନ୍ଦୁଝର ରାଜାଙ୍କୁ ତାଙ୍କ ରାଜଗାଦି ଫେରାଇ ଦେବା ପାଇଁ ସେ ସାର୍ ଚାର୍ଲସ୍ ଇଲିଅଟ୍‌ଙ୍କୁ ସାକ୍ଷାତ୍ କରି ଏପରି ଭାବେ ପ୍ରଭାବିତ କରିଥିଲେ ଯେ, ଶେଷରେ ସେ କେନ୍ଦୁଝର ରାଜାଙ୍କୁ ତାଙ୍କ ରାଜ୍ୟ ଫେରାଇ ଦେଲେ । ଏହିପରି ଭାବେ ଆଇନ ବ୍ୟବସାୟରେ ତାଙ୍କର ଖ୍ୟାତି ଓ ପ୍ରତିଷ୍ଠା ବୃଦ୍ଧି ପାଇଲା ।

ଓଡ଼ିଶା ଓ ଓଡ଼ିଆଙ୍କ ପାଇଁ ମଧୁବାବୁଙ୍କ ମନ ଭିତରେ ସର୍ବଦା ଦରଦ ଭରି ରହିଥିଲା । ଓଡ଼ିଆ ଭାଷାଭାଷୀ ଅଞ୍ଚଳଗୁଡ଼ିକ ଅବହେଳିତ ଅବସ୍ଥାରେ ଥିବା ସେ ଉପଲବ୍ଧି କଲେ । ମଧୁବାବୁଙ୍କ ପ୍ରଚେଷ୍ଟାରେ ୧୯୦୩ ମସିହାରେ ଆହୂତ ହେଲା ଉତ୍କଳ ସମ୍ମିଳନୀ, ଯାହାକି ଓଡ଼ିଶାକୁ ଏକ ସ୍ୱତନ୍ତ୍ର ପ୍ରଦେଶ ଭାବେ ଗଢ଼ି ତୋଳିବାରେ ମୁଖ୍ୟ ଭୂମିକା ଗ୍ରହଣ କରିଥିଲା । ତାଙ୍କର ନିଷ୍ଠାପର ଉଦ୍ୟମ ଫଳରେ ତତ୍କାଳୀନ ବଡ଼ଲାଟ୍ ଲର୍ଡ଼ କର୍ଜନ ସମ୍ବଲପୁର ଅଞ୍ଚଳକୁ ମଧ୍ୟପ୍ରଦେଶରୁ ଅଲଗା କରି ଓଡ଼ିଶାରେ ମିଶାଇ ଥିଲେ । ମଧୁବାବୁଙ୍କର ଲର୍ଡ଼ କର୍ଜନଙ୍କୁ ସାକ୍ଷାତର ଫଳସ୍ୱରୂପ ତତ୍କାଳୀନ ସରକାରଙ୍କ ପକ୍ଷରୁ 'ରିସେଲ୍ ସର୍କୁଲାର' ପ୍ରକାଶ ପାଇଲା । ସେଥିରେ ମଧ୍ୟପ୍ରଦେଶ, ବଙ୍ଗଳା ଏବଂ ମାନ୍ଦ୍ରାଜ ଅଧୀନରେ ଥିବା ଓଡ଼ିଆ ଅଞ୍ଚଳଗୁଡ଼ିକୁ ଓଡ଼ିଶା ଡିଭିଜନ୍‌ରେ ମିଶ୍ରଣ ପାଇଁ ସୁପାରିସ୍ କରାଯାଇଥିଲା । ମଧୁବାବୁ ୧୯୧୭ ମସିହାରେ ମଣ୍ଟେଗୁ-ଚେମସ୍‌ଫୋର୍ଡ଼ଙ୍କୁ ସାକ୍ଷାତ କରି ଓଡ଼ିଆ ଭାଷାଭାଷୀ ଅଞ୍ଚଳର ମିଶ୍ରଣ ଓ ସ୍ୱତନ୍ତ୍ର ପ୍ରଦେଶ ଗଠନ ନିମନ୍ତେ ଦାବି ଉପସ୍ଥାପନ କରିଥିଲେ । ପୁନର୍ବାର ୧୯୩୧ ମସିହାରେ ଓଡନେଲ୍ କମିଟି ଆଗରେ ମଧ ଏହି ଦାବିର ପୁନରାବୃତ୍ତି କରିଥିଲେ । ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଏକତ୍ରୀକରଣ ଓ ସ୍ୱତନ୍ତ୍ର ପ୍ରଦେଶ ଗଠନ ତାଙ୍କ ଜୀବନର ମୂଳ ଲକ୍ଷ୍ୟ ଥିଲା । ଏପରିକି ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ନିମନ୍ତେ ମଧୁବାବୁ ଏକାଧିକବାର ଲଣ୍ଡନ ଯାତ୍ରା କରି ସେଠାରେ ସ୍ୱତନ୍ତ୍ର ପ୍ରଦେଶ ଗଠନର ଯଥାର୍ଥତା ସଂପର୍କରେ ବିଲାତ ସରକାରଙ୍କ ନିକଟରେ ବଳିଷ୍ଠ ଯୁକ୍ତି ଉପସ୍ଥାପନ କରିଥିଲେ ।

ବିଚ୍ଛିନ୍ନାଞ୍ଚଳ ସମେତ ସମସ୍ତ ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଏକତ୍ରୀକରଣ ଏବଂ ଓଡ଼ିଶାରେ କୁଟୀର ଶିଳ୍ପର ବିକାଶ ସହିତ କୃଷି, ବାଣିଜ୍ୟ, ଶିକ୍ଷା ଓ ସଂସ୍କୃତି କ୍ଷେତ୍ରରେ ଏକ ନୂତନ ଜାଗରଣ ସୃଷ୍ଟି କରିବା ସକାଶେ ଉତ୍କଳ

ସମ୍ମିଳନୀ ମାଧ୍ୟମରେ ମଧୁବାବୁ ସର୍ବଦା ଉଦ୍ୟମରତ ଥିଲେ । ତାଙ୍କର ଜୀବନକାଳ ମଧ୍ୟରେ ସେ ଦୁଇଥର ଉତ୍କଳ ସମ୍ମିଳନୀର ସଭାପତି ଭାବେ ମନୋନୀତ ହୋଇଥିଲେ- ପ୍ରଥମେ ୧୯୧୩ ମସିହାରେ ପୁରୀଠାରେ ହୋଇଥିବା ନବମ ଅଧିବେଶନ ପାଇଁ ଏବଂ ୧୯୧୮ ମସିହାରେ କଟକଠାରେ ଅନୁଷ୍ଠିତ ହୋଇଥିବା ସ୍ୱତନ୍ତ୍ର ଅଧିବେଶନ ପାଇଁ ।

୧୯୧୩ ମସିହା ଜାନୁଆରୀ ୨୦ ତାରିଖରେ ମଧୁବାବୁ ଓଡ଼ିଶାର ପ୍ରଜା ପ୍ରତିନିଧି ଭାବେ ବିହାର-ଓଡ଼ିଶା ବ୍ୟବସ୍ଥାପକ ସଭାର ସଦସ୍ୟ ଭାବେ ମନୋନୀତ ହୋଇଥିଲେ ଏବଂ ସେହିବର୍ଷ ସେ ଭାରତୀୟ ବିଧାନ ପରିଷଦ (Imperial Council)କୁ ସର୍ବପ୍ରଥମ ଓଡ଼ିଆ ସଭ୍ୟ ଭାବେ ମଧ୍ୟ ମନୋନୀତ ହୋଇଥିଲେ । ୧୯୨୦ ମସିହା ନଭେମ୍ବର ୩୦ ତାରିଖରେ ମଧୁସୂଦନ ଦାସ ବିହାର-ଓଡ଼ିଶା ବ୍ୟବସ୍ଥାପକ ସଭାକୁ ନିର୍ବାଚିତ ହୋଇ ୧୯୨୧ ମସିହା ଏପ୍ରିଲ ୨୨ ତାରିଖରେ ବିହାର-ଓଡ଼ିଶା ସରକାରରେ ସ୍ୱାୟତ୍ତ ଶାସନ ମନ୍ତ୍ରୀ ଭାବେ ଦାୟିତ୍ୱ ଗ୍ରହଣ କରିଥିଲେ । ମଧୁବାବୁଙ୍କ ମତରେ ''ମନ୍ତ୍ରୀମାନେ ହେଲେ ଜନସାଧାରଣଙ୍କର ସେବକ, ଜନସେବା ପାଇଁ ମନ୍ତ୍ରୀମାନେ ଦରମା ନେବା ଅନୁଚିତ ।'' ସରକାର ମଧୁବାବୁଙ୍କର ଏହି ମତ ଗ୍ରହଣ ନ କରିବାରୁ ସେ ମନ୍ତ୍ରୀ ପଦରୁ ଇସ୍ତଫା ଦେଇଥିଲେ ।

ମଧୁବାବୁ କହୁଥିଲେ ''ଶିଳ୍ପର ଉନ୍ନତି ବିନା ଜାତିର ଅର୍ଥନୈତିକ ବିକାଶ ଅସମ୍ଭବ ।'' ସେଥିପାଇଁ ସେ ପ୍ରତିଷ୍ଠା କରିଥିଲେ 'ଉତ୍କଳ ଟ୍ୟାନେରୀ', ଯେଉଁଥିରୁ ଉତ୍ପାଦିତ ଜୋତାର ସେତେବେଳେ ସମଗ୍ର ଦେଶରେ ଚାହିଦା ଥିଲା । ଆଉ ମଧ୍ୟ କଟକର ସୁନା-ରୁପା ତାରକସି କାମର ବିକାଶ ଘଟାଇବା ପାଇଁ ସେ କଟକଠାରେ ପ୍ରତିଷ୍ଠା କରିଥିଲେ 'ଓଡ଼ିଶା ଆର୍ଟୱୟାର୍', ଯାହାର ଉତ୍ପାଦିତ ସାମଗ୍ରୀକୁ ନେଇ ସେ ବିଲାତଠାରେ ଏକ ପ୍ରଦର୍ଶନୀ ଆୟୋଜନ କରିଥିଲେ ଏବଂ ଇଂରେଜମାନଙ୍କୁ ବୁଝାଇ ଦେଇଥିଲେ ଯେ ଓଡ଼ିଆ ବଣିଆମାନେ କିଭଳି ବିନା ଯନ୍ତ୍ରପାତିରେ ଧାତୁଦ୍ରବ୍ୟର ଗୁଣ ଜାଣନ୍ତି । ଏହିସବୁ ଅନୁଷ୍ଠାନ ତାଙ୍କ ନିଜ ପ୍ରଚେଷ୍ଟା ତଥା ସ୍ୱ-ଅର୍ଥରେ ପରିଚାଳିତ ହେଉଥିଲା । ଉତ୍କଳ ଟ୍ୟାନେରୀ ପାଇଁ ସେ କରିଥିବା ଋଣ ପରିଶୋଧ କରି ନ ପାରି ନିଜର କଟକ ଓ ପୁରୀଠାରେ ଥିବା ଜମି ଓ ଘର ବନ୍ଧକ ତଥା ବିକ୍ରି କରି ଦେଇଥିଲେ । ତଥାପି ସେ ଭାଙ୍ଗିପଡ଼ି ନଥିଲେ । ଓଡ଼ିଆ ଜାତିର ଉନ୍ନତି ତଥା ସ୍ୱାଭିମାନ ପ୍ରତିଷ୍ଠା ପାଇଁ ଅକୁଣ୍ଠିତ ଚିତ୍ତରେ ସେ ନିଜର ସର୍ବସ୍ୱ ଦାନ କରିଯାଇଛନ୍ତି । ଓଡ଼ିଆ ଜାତି କିପରି ଦେଶ ବିଦେଶରେ ସମ୍ମାନିତ ହେବ, ଏହାଥିଲା ତାଙ୍କର ଏକମାତ୍ର ଧ୍ୟେୟ ।

ଓଡ଼ିଆ ସାହିତ୍ୟର ନବଜାଗରଣରେ ମଧୁବାବୁଙ୍କର ଭୂମିକା ଥିଲା ଅନବଦ୍ୟ । ମଧୁବାବୁଙ୍କ ରଚିତ କାବ୍ୟକବିତା ଓଡ଼ିଆ ଜାତିକୁ ନୂତନ ଦିଗନ୍ତର ସନ୍ଧାନ ଦେବା ସଂଗେସଂଗେ ପ୍ରତ୍ୟେକ ଓଡ଼ିଆଙ୍କ ପ୍ରାଣରେ ଭରି ଦେଇଥିଲା ଜାତୀୟତାର ପ୍ରେମ ବହ୍ନି । ତାଙ୍କ ରଚିତ 'ଉତ୍କଳ ସନ୍ତାନ' ହେଉ ଅଥବା 'ସନ୍ତାନର ଉକ୍ତି' ହେଉ, 'ଜାତି ଇତିହାସ' ହେଉ କିମ୍ବା 'ଜନନୀର ଉକ୍ତି' ହେଉ ସବୁ କବିତାରେ ଭରି ରହିଛି ଜନନୀ ଜନ୍ମଭୂମି ପାଇଁ ଏକ ଆବେଗପୂର୍ଣ୍ଣ ଜାତୀୟତା ଭାବ, ଯାହାକି ଆଜି ମଧ୍ୟ ପ୍ରତ୍ୟେକ ସ୍ୱାଭିମାନୀ ଓଡ଼ିଆ ପ୍ରାଣରେ ସ୍ପନ୍ଦନ ସୃଷ୍ଟି କରୁଛି ।

ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ତଥା ଓଡ଼ିଆ ଜାତିର ସାମଗ୍ରିକ ବିକାଶ ମଧୁବାବୁଙ୍କର ସ୍ୱପ୍ନ ଓ ସଂକଳ୍ପ ଥିଲା । ବିଧିର ବିଧାନ କେ କରିବ ଆନ, ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନର ଦୁଇବର୍ଷ ପୂର୍ବରୁ ୧୯୩୪ ମସିହା ଫେବୃଆରୀ ମାସ ୪ ତାରିଖ ଦିନ ଉତ୍କଳ ଜନନୀର ଏହି ମହାନ୍ ବରପୁତ୍ରଙ୍କର ଜୀବନ ଦୀପ ଲିଭି ଯାଇଥିଲା । ଓଡ଼ିଆ ଜାତିର ଉତ୍ଥାନ ପାଇଁ ସେ ସର୍ବଦା ଚେଷ୍ଟିତ ଥିଲେ । ଓଡ଼ିଆ ଜାତି ପାଇଁ ତାଙ୍କର ଆତ୍ମୀୟତାର ପଟାନ୍ତର ନାହିଁ । ମୃତ୍ୟୁଶଯ୍ୟାରେ ଥାଇ ସେ କହିଥିଲେ, ''ମୁଁ ଅକିଞ୍ଚନ ଚାଲିଯାଏ କିନ୍ତୁ ଓଡ଼ିଆ ଜାତି ବଞ୍ଚି ରହିଥାଉ ।'' ପ୍ରକୃତରେ ସେ ଥିଲେ ଉତ୍କଳ ଜନନୀର ଯୋଗ୍ୟତମ ସନ୍ତାନ ।



# ଗ୍ରାମୀଣ ଆବାସ ଯୋଜନାରେ ଗ୍ରାମାଞ୍ଚଳରେ ରହୁଥିବା ପରିବାରଙ୍କୁ ପକ୍କା ଘର ଯୋଗାଇବାରେ ଓଡ଼ିଶା ଏକ ଅଗ୍ରଣୀ ରାଜ୍ୟ

ଗ୍ରାମାଞ୍ଚଳର ସମସ୍ତ ଗୃହହୀନ ଓ କଚ୍ଚା ଘରେ ବସବାସ କରୁଥିବା ପରିବାରବର୍ଗଙ୍କୁ ପକ୍କାଘର ଯୋଗାଇ ଦେବା ପାଇଁ ରାଜ୍ୟ ସରକାର ପ୍ରତିଶ୍ରୁତିବଦ୍ଧ ।

କେନ୍ଦ୍ରୀୟ ଅନୁଦାନପ୍ରାପ୍ତ ପ୍ରଧାନମନ୍ତ୍ରୀ ଆବାସ ଯୋଜନା(ଗ୍ରାମୀଣ)କୁ ରାଜ୍ୟ ସରକାର ନିଜ ଅଂଶ ଧନ ବାବଦରେ ୪୦% ପ୍ରଦାନ କରି ସଫଳତାର ସହ କାର୍ଯ୍ୟକାରୀ କରୁଛନ୍ତି । ଏତଦ ବ୍ୟତୀତ, ରାଜ୍ୟ ସରକାର ବିଜୁ ପକ୍କାଘର ଯୋଜନା, ବିଜୁ ପକ୍କାଘର ଯୋଜନା (ତିତିଲି), ପକ୍କା ଘର ଯୋଜନା (ଖଣି) ଏବଂ ନିର୍ମାଣ ଶ୍ରମିକ ପକ୍କା ଘର ଯୋଜନା ଭଳି ଅନେକ ଯୋଜନା ପ୍ରଚଳନ କରି ପ୍ରତ୍ୟେକଙ୍କ ମୁଣ୍ଡ ଉପରେ ଛାତଟିଏ ଗଢି ତୋଳିବା ପାଇଁ ଅହରହ ଉଦ୍ୟମରତ ।

ଆର୍ଥିକ ବର୍ଷ ୨୦୧୪-୧୫ ଠାରୁ ଅଦ୍ୟାବଧି ୩୧,୪୪,୧୦୯ଟି ପକ୍କା ଘର ନିର୍ମାଣ କରି ଗ୍ରାମାଣ ଗୃହ ନିର୍ମାଣ କ୍ଷେତ୍ରରେ ଆମ ରାଜ୍ୟ ସାରା ଦେଶରେ ଏକ ଅଗ୍ରଣୀ ରାଜ୍ୟ ରୂପେ ପରିଗଣିତ ହୋଇପାରିଛି ।

ପ୍ରଧାନମନ୍ତ୍ରୀ ଆବାସ ଯୋଜନା (ଗ୍ରାମୀଣ) ଅଧୀନରେ ଗୃହ ମଞ୍ଜୁର ପାଇଁ ରାଜ୍ୟ ୯.୫୯ ଲକ୍ଷ ସମ୍ଭାବ୍ୟ ହିତାଧିକାରୀଙ୍କୁ ଚିହ୍ନଟ କରିଛି । ଏହି ହିତାଧିକାରୀଙ୍କ ଯୋଗ୍ୟତା ଯାଞ୍ଚ ପ୍ରକ୍ରିୟା ଜାରି ରହିଛି ।

ଗୃହ ନିର୍ମାଣ କାର୍ଯ୍ୟକୁ ସହଜ ଓ ସୁଗମ କରିବା ଉଦ୍ଦେଶ୍ୟରେ ପ୍ରତ୍ୟେକ ହିତାଧିକାରୀଙ୍କ ସହିତ ନିର୍ଦ୍ଦିଷ୍ଟ କ୍ଷେତ୍ର କର୍ମଚାରୀଙ୍କୁ ସଂଲଗ୍ନ କରିବାର ଅଭିନବ ପ୍ରୟାସକୁ ସଂସଦୀୟ ଷ୍ଟାଣ୍ଡିଂ କମିଟି ଦ୍ୱାରା ଉଚ୍ଚ ପ୍ରଶଂସା କରାଯାଇଛି । ସମସ୍ତ ଗ୍ରାମୀଣ ଗୃହ ଯୋଜନାର ହିତାଧିକାରୀଙ୍କୁ ସେମାନଙ୍କ ଘର ଶୀଘ୍ର ସମାପ୍ତ କରିବା ପାଇଁ ରାଜ୍ୟ ସରକାର ବିଜୁ ପକ୍କାଘର ଯୋଜନାରୁ ସେମାନଙ୍କୁ ପ୍ରୋତ୍ସାହନ ରାଶି ପ୍ରଦାନ କରୁଛନ୍ତି, ଯାହା ଅନ୍ୟ ରାଜ୍ୟମାନଙ୍କ ପାଇଁ ଏକ ଉଦାହରଣ ସୃଷ୍ଟି କରିଛି । ରାଜ୍ୟ ସରକାର ୮.୨୦ ଲକ୍ଷ ହିତାଧିକାରୀଙ୍କୁ ପ୍ରୋତ୍ସାହନ ରାଶି ବାବଦରେ ୧୩୪୩ କୋଟି ଟଙ୍କା ପ୍ରଦାନ କରିଛନ୍ତି ।

ବିଭିନ୍ନ ଗ୍ରାମୀଣ ଗୃହ ନିର୍ମାଣ ଯୋଜନାରେ ଘର ତିଆରି ସମ୍ପୂର୍ଣ୍ଣ କରିଥିବା ୨୭.୨୭ ଲକ୍ଷ ପରିବାରଙ୍କୁ ବିଜୁ ପକ୍କା ଘର ଯୋଜନା ପାଣ୍ଠିରୁ ଗୃହ ମରାମତି ଅନୁଦାନ ବାବଦରେ ପ୍ରତି ପରିବାର ପିଛା ଟ. ୩୦୦୦/- ହିସାବରେ ମୋଟ ୮୧୮ କୋଟି ଟଙ୍କା ରାଜ୍ୟ ସରକାର ପ୍ରଦାନ କରିଛନ୍ତି । ଏହା ନିର୍ମିତ ପକ୍କା ଘରଗୁଡ଼ିକର ସ୍ଥାୟିତ୍ୱ ବଜାୟ ରଖିବାରେ ସହାୟକ ହେବ ।

ରାଜ୍ୟ ସରକାର ୨୬,୭୭୫ ଯୋଗ୍ୟ PVTG ପରିବାର ଏବଂ ସ୍ୱାଭିମାନ ଅଞ୍ଚଳରେ ୧୮, ୧୬୦ ଯୋଗ୍ୟ ପରିବାର ବର୍ଗଙ୍କୁ ଗୃହ ନିର୍ମାଣ ସହାୟତା ରାଶି ପ୍ରଦାନ କରିବା ପାଇଁ ଚିହ୍ନଟ କରିଛନ୍ତି । ଚିହ୍ନଟ ପରିବାର ବର୍ଗଙ୍କୁ ପ୍ରଧାନମନ୍ତ୍ରୀ ଆବାସ ଯୋଜନା (ଗ୍ରାମୀଣ)ର ସ୍ଥାୟୀ ପ୍ରତୀକ୍ଷା ତାଲିକାରେ ଅନ୍ତର୍ଭୁକ୍ତ କରିବା ପାଇଁ ରାଜ୍ୟ ସରକାର ଭାରତ ସରକାରଙ୍କ ଗ୍ରାମ୍ୟ ଉନ୍ନୟନ ମନ୍ତ୍ରାଳୟକୁ ଅନୁରୋଧ କରିଛନ୍ତି ।

ଆର୍ଥିକ ବର୍ଷ ୨୦୧୪-୧୫ ଠାରୁ ସମୁଦାୟ ୩୧,୪୪,୧୦୯ ଘର ସମାପ୍ତ ହୋଇଛି ଓ ତନ୍ମଧ୍ୟରୁ ଚଳିତ ଆର୍ଥିକ ବର୍ଷରେ ଏ ଯାବତ୍ ୨୬,୬୯୨ ଘର ସମ୍ପୂର୍ଣ୍ଣ ହୋଇଛି ।

ଆର୍ଥିକ ବର୍ଷ ୨୦୧୪-୧୫ ଠାରୁ ସମସ୍ତ ଗ୍ରାମୀଣ ଗୃହ ନିର୍ମାଣ ଯୋଜନାରେ ୩୨,୪୩୩ କୋଟି ଟଙ୍କା ବିନିଯୋଗ ହୋଇଛି, ସେଥିମଧ୍ୟରୁ ଆର୍ଥିକ ବର୍ଷ ୨୦୨୨-୨୩ ରେ ୫୩୨.୨୪ କୋଟି ଟଙ୍କା ଖର୍ଚ୍ଚ ହୋଇଛି ।

## ସଫଳ କାହାଣୀ

# ବି-ଟେକ୍ ପାଠରୁ ହାଇଟେକ୍ ଚାଷୀ
# ଯୁବ ଚାଷୀଙ୍କ ପାଇଁ ପ୍ରେରଣା ସାଜିଛନ୍ତି ମହେଶ୍ୱର

କୃଷି ହିଁ ଆମ ସମାଜ ଓ ସଭ୍ୟତାର ମୂଳପିଣ୍ଡ । ପ୍ରକୃତି ଓ ମନୁଷ୍ୟର ଚିର ନିବିଡ଼ ସମ୍ପର୍କକୁ ସଜାଡ଼ି ରଖିବା, ନିଜ ତଥା ସମାଜର ମୁଖରେ ଆହାର ଯୋଗାଇବା, ଜୀବନ ଜୀବିକା ସୁଦୃଢ଼ୀକରଣ କରିବାରେ ଏହି କୃଷିକୁ ହିଁ ଯିଏ ମୂଳମନ୍ତ୍ର କରିଥାଏ ସେ ଆମର ଅନ୍ନଦାତା, ସେ ଆଉ କେହି ନୁହେଁ ଆମ ସଭ୍ୟତାର ମାପକାଠି, ଏ ସମାଜର ମଙ୍ଗୁଆଳ ଚାଷୀ । ତାରି ପାଇଁ ଜୀବନ ଜିଇଁବାର ଆଶା ଦେଖେ ମନୁଷ୍ୟ । ମାଟି ମା'ର ସେ କୁଶଳୀ କାରିଗର । ଶ୍ୟାମଳ ଜମିରୁ ସୁବର୍ଣ୍ଣ ଫସଲ ଫଳେଇବାରେ ସେ ମାହିର । ମାଟି ସହିତ ତା'ର ସମ୍ପର୍କ ସତରେ ଏକ ଅଭିନବ ପରିକଳ୍ପନା । ମୁଖର ଶବ୍ଦକୁ ହାତର ଯାଦୁଗରୀରେ ବାସ୍ତବତାର ରୂପ ଦେବାକୁ ସେ ଧୁରନ୍ଧର । ଖରା, ବର୍ଷା ଅଥବା ହାଡ଼ ଭାଙ୍ଗା ଶୀତ ହେଉ କର୍ତ୍ତବ୍ୟର ପରିଧିରୁ ସେ ବିଚ୍ୟୁତି ହୁଏ ନାହିଁ । ତାହାର ସେହି ଅବିରତ ପରିଶ୍ରମ, ଅନୁଭୂତିରୁ ଜ୍ଞାନ ଆହରଣ, ନୂଆ କିଛି କରିବାର ଜିଦ୍ ତାକୁ ସଫଳତାର ଶୀର୍ଷ ସୋପାନକୁ ପହଞ୍ଚାଇଥାଏ । ସେହି ପରି ଏକ ଜିଜ୍ଞାସୁ ଓ ସଫଳ ଚାଷୀ ହେଉଛନ୍ତି ମହେଶ୍ୱର ନାଏକ ।




ମହେଶ୍ୱର ନାଏକ, ବୟସ- ୩୨ବର୍ଷ, ସୁନ୍ଦରଗଡ଼ ଜିଲ୍ଲା ଟାଙ୍ଗରପାଲି ପଞ୍ଚାୟତ ସମିତି ଅନ୍ତର୍ଗତ ସାନପତ୍ରାପାଲି ରାଜସ୍ୱ ଗ୍ରାମର ଏକ ସଫଳ ଚାଷୀ । ଶ୍ରୀମତୀ ଶ୍ରୀୟା ନାଏକ ଓ ସ୍ୱର୍ଗତ ଶୁକ୍ରୁ ନାଏକଙ୍କ ମଝିଆ ପୁଅ ମହେଶ୍ୱର ଏକ ଯୁଗ୍ମ ପରିବାରରେ ଦୁଇ ଭାଇ, ଭଉଣୀ, ଭାଉଜ ଓ ଝିଆରୀଙ୍କ ସହିତ ବସବାସ କରନ୍ତି । ପିଲାଟି ଦିନରୁ ପାଠ ପଢ଼ାରେ ଭାରି ଆଗ୍ରହ । ପିଲାଟି ଦିନରୁ ବାପାଙ୍କୁ ହରାଇଥିବା ମହେଶ୍ୱର ବଡ଼ଭାଇଙ୍କ ସହିତ ଖାଲି ସମୟରେ ଚାଷକାର୍ଯ୍ୟରେ ମଧ୍ୟ ମନୋନିବେଶ କରିବାକୁ ଭଲପାଆନ୍ତି । ପରିବାର ସଦସ୍ୟଙ୍କ ଉତ୍ସାହ ଦ୍ୱାରା ବାରିପଦାରେ ଡିପ୍ଲୋମା ପଢ଼ିବା ପରେ ମହେଶ୍ୱର ପରବର୍ତ୍ତୀ ସମୟରେ ୨୦୧୯ରେ ବି-ଟେକ ପାଠ ସଂପୂର୍ଣ୍ଣ କରନ୍ତି ।

ଡିସେମ୍ବର ୧,୨୦୧୭ରୁ ଉଜ୍ଜ୍ୱଳପୁର ବନାଞ୍ଚଳରେ ଓଡ଼ିଶା ବନାଞ୍ଚଳ ଉନ୍ନୟନ ପ୍ରକଳ୍ପର ଦ୍ୱିତୀୟ ପର୍ଯ୍ୟାୟ କାମ ଆରମ୍ଭ ହୋଇଥିଲା । ଏଥିରେ ମହେଶ୍ୱରଙ୍କ ନିଜ ଗ୍ରାମ ମାନପତ୍ରାପାଲି ବନ ସୁରକ୍ଷା ସମିତିକୁ ସାମିଲ କରାଯାଇ ଜଙ୍ଗଲ ସୁରକ୍ଷା ସହିତ ଜୀବନ ଜୀବିକାର ବିକାଶ ନିମନ୍ତେ ବିଭିନ୍ନ କାର୍ଯ୍ୟକ୍ରମର ଆୟୋଜନ କରାଗଲା । ଉଜ୍ଜ୍ୱଳପୁର

ବନାଞ୍ଚଳ ତଥା ସହଯୋଗୀ ଅନୁଷ୍ଠାନ ସେବକର ମିଳିତ ଉଦ୍ୟମରେ ବିଭିନ୍ନ ଏକାଭିମୁଖୀତା କାର୍ଯ୍ୟକ୍ରମ ଅଧୀନରେ ସାନପତ୍ରାପାଲି ବନ ସୁରକ୍ଷା ସମିତି କାର୍ଯ୍ୟାଳୟରେ କୃଷି ବିଭାଗ, ଉଦ୍ୟାନ ବିଭାଗ ତଥା ଆଇ.ଟି.ଡି.ଏ. ତରଫରୁ ବିଭିନ୍ନ କୃଷିଭିତ୍ତିକ ତାଲିମ କାର୍ଯ୍ୟକ୍ରମର ଆୟୋଜନ କରାଯାଏ । ପ୍ରତ୍ୟେକଟି ତାଲିମ କାର୍ଯ୍ୟକ୍ରମ ତଥା ବନ ସୁରକ୍ଷା ସମିତିର ସଭାରେ ସକ୍ରିୟ ଅଂଶଗ୍ରହଣ କରିଥିବାରୁ ମହେଶ୍ୱରଙ୍କୁ ତାଲିମ ସଙ୍ଗେ ସଙ୍ଗେ ବଭିନ୍ନ ହାଇବ୍ରିଡ୍ ମଞ୍ଜି ଯଥା- ବିଲାତି,ବାଇଗଣ,କାକୁଡ଼ି, ଝୁଡ଼ଙ୍ଗ ଓ ସୋରିଷ ଇତ୍ୟାଦି ନିଃଶୁଳ୍କ ବଣ୍ଟନ କରାଯାଇଥିଲା । ସହଯୋଗୀ ଅନୁଷ୍ଠାନ ସେବକର କର୍ମକର୍ତ୍ତାମାନେ ସମନ୍ୱିତ କୃଷି ଯୋଜନା ପ୍ରସ୍ତୁତ କରିବାରେ ସହଯୋଗ କରି ମହେଶ୍ୱରଙ୍କୁ ପ୍ରତ୍ୟେକ ସମୟରେ ବିଭିନ୍ନ ପନିପରିବା ଚାଷ କରିବା ନିମନ୍ତେ ପ୍ରବର୍ତ୍ତାଉ ଥିଲେ । ଏଥିରେ ଅନୁପ୍ରାଣିତ ହୋଇ ନିଜର ବି-ଟେକ୍ ପାଠ ସମ୍ପୂର୍ଣ୍ଣ କରିବା ପରେ ନିଜର ୬ ଏକର ପରିମିତ ମିଶ୍ରିତ କିସମର ଚାଷ ଜମିରେ ପ୍ରତ୍ୟେକ ଋତୁରେ ଚାଷ କରିବା ନିମନ୍ତେ ଅଣ୍ଟା ଭିଡ଼ନ୍ତି ମହେଶ୍ୱର । ବିଗତ ଦୁଇ ବର୍ଷ ହେଲା ଧାନ ସଙ୍ଗେ ସଙ୍ଗେ ଖରାଦିନରେ ବିଲାତି, ବାଇଗଣ, କାକୁଡ଼ି, ମାଖନ, ଲାଉ, ଝୁଡ଼ଙ୍ଗ ଓ ବର୍ଷାଦିନରେ ଝୁଡଙ୍ଗ, କଲରା, କାକୁଡ଼ି, ଜହ୍ନି ତଥା ଶୀତଦିନରେ ବିଲାତି, ବାଇଗଣ, ଆଳୁ, ଗାଜର, ବନ୍ଧାକୋବି, ଫୁଲକୋବି, ମକା, ମୁଗ, ବିରି, ସୋରିଷ ଇତ୍ୟାଦି ଚାଷ କରି ଲକ୍ଷାଧିକ ଟଙ୍କା ରୋଜଗାର କରୁଛନ୍ତି ମହେଶ୍ୱର । ଓଡ଼ିଶା ବନାଞ୍ଚଳ ଉନ୍ନୟନ ପ୍ରକଳ୍ପ ତଥା ଆଇ.ଟି.ଡି.ଏ.ର ସହାୟତାରେ ପାଇଥିବା ମଞ୍ଜିରୁ ଚାଷ କରି ୨୦୨୧ ମସିହାର ବିଗତ ଚାରି ମାସରେ ବାଇଗଣ ୨୮କ୍ୱିଣ୍ଟାଲ୍ , ବିଲାତି ୧୮ କ୍ୱିଣ୍ଟାଲ୍, କାକୁଡ଼ି ୨୧ କ୍ୱିଣ୍ଟାଲ୍, ଝୁଡ଼ଙ୍ଗ ୬ କ୍ୱିଣ୍ଟାଲ୍, ସୋରିଷ ୧୮ କ୍ୱିଣ୍ଟାଲ୍ ଉତ୍ପାଦନ କରି ୨ ଲକ୍ଷ ୧୦ ହଜାର ଟଙ୍କା ରୋଜଗାର କରିପାରିଛନ୍ତି । ମହେଶ୍ୱରଙ୍କ ଚାଷ କରିବାର ଶୈଳୀ ଗାଁର ତଥା ଆଖପାଖ ଅଞ୍ଚଳର ଅନେକ ଯୁବଚାଷୀଙ୍କୁ ପ୍ରେରଣା ଯୋଗାଉଛି । ତାଙ୍କର ଏହି ସଫଳତା ସମ୍ବନ୍ଧରେ ଜ୍ଞାନ ଆହରଣ କରିବା



ନିମନ୍ତେ ଲେଫ୍ରିପଡ଼ା ଓ ସୁନ୍ଦରଗଡ଼ ବନାଞ୍ଚଳର ୨୪ଟି ଗ୍ରାମର ୭୨ ଜଣ ଚାଷୀ କ୍ଷେତ୍ର ପରିଦର୍ଶନରେ ଆସି ମହେଶ୍ୱରଙ୍କଠାରୁ ତାଲିମ ନେଇଥିଲେ ।

ମହେଶ୍ୱରଙ୍କ ସଫଳତା ସମ୍ବନ୍ଧରେ ସାନପତ୍ରାପାଲି ବନ ସୁରକ୍ଷା ସମିତିର କୋଷାଧ୍ୟକ୍ଷ ତଥା ବରିଷ୍ଠ ଚାଷୀ ପୀତାମ୍ବର ନାଏକ କହନ୍ତି- ସ୍ଥାନୀୟ ଜଳବାୟୁ-ସାମାଜିକ-ଅର୍ଥନୈତିକ ସ୍ଥିତିକୁ ଲକ୍ଷ୍ୟ କରି ପୁରାତନ ଓ ନୂତନ କୃଷି ଜ୍ଞାନ କୌଶଳର ଉପଯୋଗ ସାଙ୍ଗକୁ କୃଷି ବିବିଧତା ଅଧୁନା କୃଷି ଅଭିବୃଦ୍ଧିର ଆଭିମୁଖ୍ୟ କହିଲେ ଚଳେ । ଏହାକୁ ପ୍ରମାଣିତ କରିପାରିଛନ୍ତି ମହେଶ୍ୱର । ନିଜର ପରିଶ୍ରମ ଓ ଅଭିନବୀକରଣ ଦ୍ୱାରା ସେ ଆଜି ଲକ୍ଷାଧିକ ଟଙ୍କା ରୋଜଗାର କରି ସମସ୍ତ ଯୁବ ଚାଷୀଙ୍କ ପାଇଁ ଆଦର୍ଶ ସାଜିଛନ୍ତି । ପ୍ରକୃତରେ ସେ ଆଜି ବି-ଟେକ୍ ପାଠରୁ ହାଇଟେକ୍ ଚାଷୀ ହୋଇପାରିଛନ୍ତି ।

ଡି.ଏଫ୍.ଓ
ସୁନ୍ଦରଗଡ଼ ଡିଭିଜନ

## ସଫଳ କାହାଣୀ

# 'ବିଜୁ ସ୍ମାର୍ଟ ସ୍ୱାସ୍ଥ୍ୟ କାର୍ଡ଼' : ନୂଆ ଜୀବନ ପାଇଲେ ମହେନ୍ଦ୍ର

ବରଗଡ଼ ଜିଲ୍ଲାର ଭଟଲି ବ୍ଲକ ଅନ୍ତର୍ଗତ 'ଦେଚୁଆଁ' ଏକ ଜଙ୍ଗଲ ଘେରା ଗ୍ରାମ । ଦେବ୍ରୀଗଡ଼ ଅଭୟାରଣ୍ୟର ଠିକ୍ ସୀମାନ୍ତରେ ଭଟଲି ରେଞ୍ଜ ଅଧିନରେ ଆସୁଥିବା ଏହି ଗାଁ' ଟି ଏକ ଫରେଷ୍ଟ ଭିଲେଜ ହୋଇଥିବାରୁ ଏଠାକାର ଅଧିବାସୀଙ୍କର କୌଣସି ରାଜସ୍ୱ ଅଧିକାର ନାହିଁ । ଗାଁରେ ରହୁଥିବା ସମସ୍ତ ୫୬ଟି ପରିବାର ଅର୍ଥନୈତିକ ଦୃଷ୍ଟିରୁ ଦୁର୍ବଳ । ଜଙ୍ଗଲଜାତ ଦ୍ରବ୍ୟ ଓ ଚାଷ ସେମାନଙ୍କ ଆୟର ଏକମାତ୍ର ପନ୍ଥା । ତେବେ ଏହି ଗ୍ରାମଟି ଦେବ୍ରୀଗଡ଼ ଅଭୟାରଣ୍ୟ ସୀମାନ୍ତରେ ଥିବାରୁ ଗାଁରେ ସବୁବେଳେ ବନ୍ୟଜନ୍ତୁଙ୍କ ଉତ୍ପାତ ଲାଗି ରହିଥାଏ । ଏଭଳି ଏକ ଗାଁରେ ରହୁଥିବା ସୁରେନ୍ଦ୍ର ବାଗଙ୍କ ଭାଇ ମହେନ୍ଦ୍ର ବାଗଙ୍କ ଦେହ ହଠାତ ଅସୁସ୍ଥ ହେବାରୁ ତାଙ୍କୁ ସ୍ଥାନୀୟ ଡାକ୍ତରଖାନାକୁ ନିଆଯାଇଥିଲା । ସେଠାରେ ତାଙ୍କୁ କ୍ୟାନ୍ସର ହୋଇଥିବା ଜଣାପଡ଼ିଥିଲା । ଏହା ଜାଣିବା ପରେ ସୁରେନ୍ଦ୍ର ବାଗ ଅତ୍ୟନ୍ତ ନିରାଶ ହୋଇପଡ଼ିଥିଲେ । ଖବର ପାଇ ଭଟଲି ବିଧାୟକ ତା' ତତ୍କାଳୀନ ମନ୍ତ୍ରୀ ସୁଶାନ୍ତ ସିଂ ତାଙ୍କୁ ଭୁବନେଶ୍ୱର ସ୍ଥିତ ଏମ୍ସକୁ ନେବାର ବ୍ୟବସ୍ଥା କରିଥିଲେ । ସେଠାରେ ଓଡ଼ିଶା ସରକାରଙ୍କ 'ବିଜୁ ସ୍ମାର୍ଟ ସ୍ୱାସ୍ଥ୍ୟ କାର୍ଡ' ସହାୟତାରେ ମାଗଣାରେ ତାଙ୍କର ଚିକିତ୍ସା କରାଯାଇଥିଲା । ଦୀର୍ଘ ଛଅ ମାସର ଚିକିତ୍ସା ପରେ ସେ ଏବେ ସଂପୂର୍ଣ୍ଣ ସୁସ୍ଥ ହୋଇ 'ଦେଚୁଆଁ' ଗ୍ରାମକୁ ଫେରିଛନ୍ତି ।




ଏହି ଅବସରରେ ତାଙ୍କ ସହିତ ହୋଇଥିବା ଏକ ସାକ୍ଷାତକାରରେ ସେ କହିଥିଲେ ଯେ, ''ଆଜି ସେ ଯଦି ବଞ୍ଚିଛନ୍ତି ତାହା କେବଳ ମୁଖ୍ୟମନ୍ତ୍ରୀଙ୍କ 'ବିଜୁ ସ୍ମାର୍ଟ ସ୍ୱାସ୍ଥ୍ୟ କାର୍ଡ' ପାଇଁ ସମ୍ଭବ ହୋଇପାରିଛି । ତାଙ୍କ ପରି ଏକ ନିସ୍ୱ ବ୍ୟକ୍ତି ଏମ୍ସରେ ଛଅ ମାସ ଧରି ଚିକିତ୍ସିତ ହେବା ଏକ ସ୍ୱପ୍ନ । ମାତ୍ର ମୁଖ୍ୟମନ୍ତ୍ରୀଙ୍କ ବିଜୁ ସ୍ୱାସ୍ଥ୍ୟ କାର୍ଡ ଏହି ସ୍ୱପ୍ନକୁ ବାସ୍ତବରେ ପରିଣତ କରିଛି । ମୁଖ୍ୟମନ୍ତ୍ରୀଙ୍କ ଯୋଗୁଁ ତାଙ୍କ ଜୀବନ ରକ୍ଷା ହୋଇଥିବାରୁ ମହେନ୍ଦ୍ର ବାଗ ଓ ତାଙ୍କ ଭାଇ ସୁରେନ୍ଦ୍ର ବାଗ ମୁଖ୍ୟମନ୍ତ୍ରୀଙ୍କୁ କୃତଜ୍ଞତା ଜ୍ଞାପନ କରିଛନ୍ତି ।

ଜିଲ୍ଲା ସୂଚନା ଓ ଲୋକ ସମ୍ପର୍କ ଅଧିକାରୀ
ବରଗଡ଼

## ସଫଳ କାହାଣୀ

# ଛତୁ ଚାଷ : ନୂତନ ଆଲୋକ ଦେଖାଇଛି ମିଶନ ଶକ୍ତି

''ଆମ ପରିବାର ଓ ଅନ୍ୟାନ୍ୟ ସଦସ୍ୟଙ୍କ ପରିବାର ପୂର୍ବରୁ ଚାଷବାସ ଓ ମୂଲ ମଜୁରିରେ ପ୍ରତିପୋଷଣ ହେଉଥିଲୁ । ଅଭାବ ତ ଆମର ଚିର ସହଚର ଥିଲା ।



ଏତିକିବେଳେ ଆମ ଦୁର୍ଭାଗ୍ୟକୁ ଦୂର କରିବାକୁ ଆଶ୍ରା ହେଲା ସ୍ୱୟଂ ସହାୟକ ଗୋଷ୍ଠୀ । ମିଶନ ଶକ୍ତି, ଓଡ଼ିଶା ଜୀବିକା ମିଶନ ସହାୟତାରେ ଆମେ ୧୨ଟି ସ୍ୱୟଂ ସହାୟକ ଗୋଷ୍ଠୀର ୩୪ ଜଣ ମହିଳା 'ମା' ସାଥି ଭଉଣୀ' ନାମରେ ଗୋଟିଏ କ୍ଲଷ୍ଟର ଗଠନ କରି ଛତୁଚାଷ କରିବାକୁ ଆଗ୍ରହ କଲୁ । ଯାହାର ଫଳ ଆମର ବେଶ୍ ଭଲ ରୋଜଗାର ବୋଲି କହନ୍ତି ପୁରୀ ଜିଲ୍ଲା ବ୍ରହ୍ମଗିରି ବ୍ଲକ୍ ରେବଣା ନୂଆ ଗାଁର 'ମା' ସାଥୀ ଭଉଣୀ' ଛତୁ ଉତ୍ପାଦନ ଗୋଷ୍ଠୀର ସମ୍ପାଦିକା ଶ୍ରୀମତୀ କାଦମ୍ବିନୀ ପ୍ରଧାନ । ଏହି ଗୋଷ୍ଠୀ ୨୦.୦୯.୨୦୨୦ରେ ବିଭିନ୍ନ ମହିଳା ସ୍ୱୟଂ ସହାୟକ ଗୋଷ୍ଠୀର ୩୪ ଜଣ ସଦସ୍ୟାଙ୍କୁ ନେଇ ଗଠିତ ହୋଇଥିଲା । ପୂର୍ବରୁ ଆମେ ଏକକ ଗୋଷ୍ଠୀ ମାଧ୍ୟମରେ ଛୋଟ ଛୋଟ କାର୍ଯ୍ୟ କରୁଥିଲେ ମଧ୍ୟ ପରେ ଛତୁ ଚାଷ ପାଇଁ ଆଗ୍ରହ କଲୁ । ଉଦ୍ୟାନ ବିଭାଗ ପକ୍ଷରୁ ବୈଷୟିକ ତାଲିମ ହାସଲ କରିବା ପରେ ଆମେ ପ୍ରାୟ ୫୦୦୦ ବେଡ୍ ପକାଇ ଛତୁ ଉତ୍ପାଦନ କଲୁ ବୋଲି ସୂଚନା ଦିଅନ୍ତି ସଭାପତି ହରପ୍ରିୟା ଜେନା । ସ୍ୱୟଂ ସହାୟକ ଗୋଷ୍ଠୀ ବ୍ୟାଙ୍କ୍ ଲିଙ୍କେଜ୍ ମାଧ୍ୟମରେ ୩୦ ଲକ୍ଷ ୫୦ ହଜାର ଟଙ୍କା ରାଶି ସଂଗ୍ରହ କରି ଏହି ଗୋଷ୍ଠୀ ଯେଉଁ ଛତୁ ଉତ୍ପାଦନ କରିଛନ୍ତି, ତାହା ଆଜି ତାଙ୍କୁ ନୂଆ ଆଲୋକ ଦେଖାଇଛି । ପାଖ ବଜାରରେ ଏହି ଛତୁର ଚାହିଦା ଯୋଗୁଁ ଭଲ ଦି' ପଇସା ରୋଜଗାର କରିପାରୁଛୁ ବୋଲି ସଭାପତି ହରପ୍ରିୟା କହିଛନ୍ତି । ମିଶନ ଶକ୍ତିର ଆମ ପ୍ରତି ସାହାଯ୍ୟ ଭରସା ଏବଂ ଆମ ନିଷ୍ଠା ଓ ପରଶ୍ରମର ଫଳ ଆମେ ପାଇଛୁ । ଆମକୁ ଅନୁକରଣ କରି ଏବେ ଅନେକ ଗୋଷ୍ଠୀ ବିବିଧ କାର୍ଯ୍ୟକ୍ରମରେ ସାମିଲ ହେଲେଣି, ଯାହା ସମସ୍ତଙ୍କ ପାରିବାରିକ ଅର୍ଥନୀତିକୁ ସାହାଯ୍ୟ ଓ ସୁଦୃଢ଼ କରୁଛି ବୋଲି ସଦସ୍ୟାମାନେ କହିବା ସହ ମିଶନ ଶକ୍ତିକୁ ଧନ୍ୟବାଦ ଦିଅନ୍ତି ।

ଜିଲ୍ଲା ସୂଚନା ଓ ଲୋକସମ୍ପର୍କ ଅଧିକାରୀ
ପୁରୀ

**ସଫଳ କାହାଣୀ**

# ଫସଲ ବିବିଧିକରଣ ଦ୍ୱାରା ଗଞ୍ଜାମ ଜିଲ୍ଲାର ଚାଷୀମାନଙ୍କର ଆର୍ଥିକ ଅଭିବୃଦ୍ଧି

**ପଠାଣି ରାଉତ**

**ପାଣି ପଞ୍ଚାୟତର ସଫଳତା**

କ୍ଷେତ୍ର ନାଳୀଗୁଡ଼ିକର ରକ୍ଷଣାବେକ୍ଷଣ ଓ ସୁପରିଚାଳନା କରି ଜଳସେଚନ ପ୍ରଣାଳୀର ଶେଷମୁଣ୍ଡକୁ ପାଣି ପହଞ୍ଚାଇବା ଲକ୍ଷ୍ୟରେ ରାଜ୍ୟ ସରକାର ପାଣି ପଞ୍ଚାୟତମାନ ଗଠନ କରିଛନ୍ତି ।

ଗଞ୍ଜାମ ଜିଲ୍ଲାର ଦିଗପହଣ୍ଡି ବ୍ଲକ ଅନ୍ତର୍ଗତ ଭ୍ରମରପୁର, ସାମସିଙ୍ଗି, ବାଙ୍କପୁର, ବିଦ୍ୟାଧରପୁର, ଗୁମ୍ଫା, ତେନ୍ତୁଳିଆ, ଲିମିଗାଁଓ ନୂଆଗଡ଼ ଗ୍ରାମର ୫୬୦ ହେକ୍ଟର ଚାଷ ଜମିକୁ ନେଇ ଶ୍ରୀଗୋପିନାଥ ଜୀଉ ପାଣି ପଞ୍ଚାୟତ ନଂ-୪, ୨୦୧୫ ମସିହାରେ ଗଠନ କରାଯାଇଥିଲା । ଏହି ପାଣି ପଞ୍ଚାୟତର ସମସ୍ତ ଚାଷ ଉପଯୋଗୀ ଜମି ବାଘଲଟି ଜଳସେଚନ ପ୍ରକଳ୍ପର ଭ୍ରମରପୁର ଡିଷ୍ଟ୍ରିବ୍ୟୁଟାରୀ ନଂ-୨ର ବାମ, ମୁଖ୍ୟକେନାଲ ଦ୍ୱାରା ଜଳସେଚିତ ହୋଇଥାଏ ।

ଧାନ ଚାଷ ଏହି ପାଣି ପଞ୍ଚାୟତର ଏକ ପ୍ରମୁଖ ବେଉସା । ଦିଗପହଣ୍ଡି ବ୍ଲକ୍‌ରୁ କିଣାଯାଉଥିବା ଧାନ, ଗଞ୍ଜାମ ଜିଲ୍ଲାର ସମସ୍ତ ଧାନ ସଂଗ୍ରହରେ ଏକ ପ୍ରମୁଖ ଅଂଶ । ଭ୍ରମରପୁର ଗ୍ରାମର ଗୋପିନାଥ ଜୀଉ ପାଣି ପଞ୍ଚାୟତ ୩୨୦ ହେକ୍ଟର ଚାଷ ଜମିକୁ ନେଇ ଗଠିତ । ମଝିରେ ଏକ ନିଷ୍କାସନ ନାଳୀ ଯାଇଥିବାରୁ ଏହି ଅଞ୍ଚଳର ମଝି ଓ ଶେଷ ମୁଣ୍ଡକୁ ପାଣି ପହଞ୍ଚିବା କଷ୍ଟକର ହୋଇଥାଏ, ସେଥିପାଇଁ ଏମାନେ ଖରିଫ୍ ଋତୁରେ ବର୍ଷା ଜଳ ଉପରେ ନିର୍ଭର କରିଥାନ୍ତି । ୨୦୧୯ରୁ ୨୦୨୧ ମସିହା ମଧ୍ୟରେ ସେଚାଞ୍ଚଳ ଉନ୍ନୟନ ଡିଭିଜନ, ଆସ୍କା ଦ୍ୱାରା ଶ୍ରୀଗୋପିନାଥ ଜୀଉ ପାଣି ପଞ୍ଚାୟତ ଅନ୍ତର୍ଗତ ବିଭିନ୍ନ ଗ୍ରାମରେ କ୍ଷେତ୍ର ନାଳୀମାନ ନିର୍ମାଣ କରାଯିବା ସହିତ ନିଷ୍କାସନ ନାଳୀ ମଧ୍ୟ କରାଯାଇଥିଲା । ଯାହା ଫଳରେ ଜଳ ସେଚନରୁ ବଞ୍ଚିତ ହୋଇଥିବା ଅଞ୍ଚଳବାସୀ ଏବେ ବିନା କୌଣସି ପ୍ରତିବନ୍ଧକରେ ପାଣି ପାଇପାରୁଛନ୍ତି ।

ଏହି ପରିପ୍ରେକ୍ଷୀରେ ଏହି ଅଞ୍ଚଳର ପ୍ରମୁଖ ଚାଷୀ ତଥା ଶ୍ରୀଗୋପିନାଥ ଜୀଉ ପାଣି ପଞ୍ଚାୟତର ସଭାପତି କୁହନ୍ତି, 'ଖରିଫରେ ଅତ୍ୟଧିକ ଜଳ ଏବଂ  ରବି ଋତୁରେ ଜଳାଭାବ, ଧାନ ଫସଲକୁ ବିଶେଷ ଭାବରେ ପ୍ରଭାବିତ କରୁଥିଲା, ଯାହାକି କ୍ଷେତ୍ର ନାଳୀ ନିର୍ମାଣ ଦ୍ୱାରା ଏହି ସମସ୍ୟାର ସମାଧାନ ହୋଇପାରିଛି । ଏଥିପାଇଁ ମୁଁ ସେଚାଞ୍ଚଳ ଉନ୍ନୟନ ଡିଭିଜନ, ଆସ୍କା ତଥା ରାଜ୍ୟ ସରକାରଙ୍କ ପ୍ରତି କୃତଜ୍ଞ ।

ବର୍ତ୍ତମାନ ଏହି ଅଞ୍ଚଳର ଚାଷୀମାନେ ଧାନ ସହିତ ଚିନାବାଦାମ, ସୂର୍ଯ୍ୟମୁଖୀ, ମକା ଆଦି ବିଭିନ୍ନ ପ୍ରକାର ଅର୍ଥ ଉପାର୍ଜନକାରୀ ଫସଲ କରି ସେମାନଙ୍କର ଆର୍ଥିକ ଉନ୍ନତି କରିପାରିଛନ୍ତି । ସେଚାଞ୍ଚଳ ଉନ୍ନୟନ  ଅଧିକାରୀ, ଗଞ୍ଜାମ ସଂଗ୍ରହ  କରିଥିବା ତଥ୍ୟ ପ୍ରମାଣିତ କରିଛି ଯେ, କମାଣ୍ଡ ଏରିଆ ଉନ୍ନୟନ କାର୍ଯ୍ୟକ୍ରମ ଦ୍ୱାରା ୨୦୨୦-୨୧ ବର୍ଷରେ ବାଘଲଟି ସେଚାଞ୍ଚଳରେ ଚାଷ କାର୍ଯ୍ୟ ଓ ଚାଷୀମାନଙ୍କ ସଫଳତାରେ ଆଶାତୀତ ଉନ୍ନତି ଘଟିଛି ।

ସୂଚନା ଅଧିକାରୀ
ଜଳ ସମ୍ପଦ ବିଭାଗ, ଭୁବନେଶ୍ୱର

# ଜିଲ୍ଲା ସ୍ତରରେ ଥିବା ଉତ୍କଳ ପ୍ରସଙ୍ଗ ଏବଂ ଓଡ଼ିଶା ରିଭ୍ୟୁ ପୁସ୍ତକର ବିକ୍ରୟ କେନ୍ଦ୍ର

| କ୍ରମିକ ସଂଖ୍ୟା | ଜିଲ୍ଲାର ନାମ | ପୁସ୍ତକ ବିକ୍ରୟ କେନ୍ଦ୍ର |
|---|---|---|
| ୧. | ଅନୁଗୋଳ | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, ଅନୁଗୋଳ<br>ଯୋଗାଯୋଗ ନଂ-୯୯୩୭୨୩୫୯୯୫ |
| ୨. | ବାଲେଶ୍ୱର | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, କଚେରିହତା, ବାଲେଶ୍ୱର<br>ଯୋଗାଯୋଗ ନଂ-୯୮୬୧୧୫୩୩୯୯ |
| ୩. | ବରଗଡ଼ | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ,ଗାନ୍ଧୀ ଛକ ପାଖ, ବରଗଡ଼<br>ଯୋଗାଯୋଗ ନଂ-୯୪୩୭୨୪୦୫୩୦ |
| ୪. | ଭଦ୍ରକ | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, ଆପାଟବିନ୍ଧ ଛକ, ବାଲେଶ୍ୱର<br>ଯୋଗାଯୋଗ ନଂ-୯୪୩୭୩୨୦୭୬୨ |
| ୫. | ବଲାଙ୍ଗିର | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, ବଲାଙ୍ଗିର ମନୋହରପୁର ରୋଡ଼<br>ଯୋଗାଯୋଗ ନଂ-୯୪୩୭୦୮୩୨୫୯/ ୭୦୦୮୮୬୯୬୭୫ |
| ୬. | ବୌଦ୍ଧ | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, ବୌଦ୍ଧ<br>ଯୋଗାଯୋଗ ନଂ-୯୯୩୮୦୪୮୫୦୦ |
| ୭. | କଟକ | ପଢ଼ିଆରି ପାଠାଗାର, ଚୌଧୁରୀ ବଜାର, କଟକ<br>ଯୋଗାଯୋଗ ନଂ-୯୮୨୭୯୬୧୨୪୧ |
| ୮. | ଦେବଗଡ଼ | ସୂଚନା କେନ୍ଦ୍ର ଓ ପାଠାଗାର, ଦେବଗଡ଼<br>ଯୋଗାଯୋଗ ନଂ-୯୪୩୭୮୩୨୯୫୦ |
| ୯. | ଢେଙ୍କାନାଳ | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, ଢେଙ୍କାନାଳ<br>ଯୋଗାଯୋଗ ନଂ-୮୫୯୬୦୬୦୪୦୯ |
| ୧୦. | ଗଜପତି | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, ପାରଳାଖେମୁଣ୍ଡି<br>ଯୋଗାଯୋଗ ନଂ- ୯୪୩୮୭୬୫୭୨୭ |

